# ସାର୍ବଜନୀନ ଗୀତା

( ତୃତୀୟ ଖଣ୍ଡ )

ଲେଖକ !

ଡକ୍ଟର ମାୟାଧର ମାନସିଂହ

ପ୍ରଥମ ମୁଦ୍ରଣ-୧୯୮୬

ପ୍ରକାଶକ :

ଜେ. ମହାପାତ୍ର ଏଣ୍ଡ କୋ.

ଗ୍ରନ୍ଥସାଗର ଅଫିସ

ନିମଚଉଡ଼ି, କଟକ—୨

ମୂଲ୍ୟ ଟ ୨୦-୦୦

# ସାର୍ବଜନୀନ ଗୀତା

# SARBAJANIN GITA

ଲେଖକ :
ଡକ୍ଟର ମାୟାଧର ମାନସିଂହ

Written by :
Dr. Mayadhar Mansinha

ପ୍ରକାଶକ :
ଜେ. ମହାପାତ୍ର ଏଣ୍ଡ କୋ.
ନିମଚଉଡ଼ି,
କଟକ-୨

Published by :
J. Mohapatra & Co.
Nimchouri,
Cuttack-2

ମୁଦ୍ରାକର :
ଗ୍ରାମପଞ୍ଚାୟତ ପ୍ରେସ
କାଳୀଗଳି,
କଟକ-୨

Printed by :
Grampanchayat Press.
Kaligali,
Cuttack-2

ମୂଲ୍ୟ- ଟ ୨୦.୦୦

Price Rs. 20.00.

# ସୂଚୀପତ୍ର

( ପ୍ରତ୍ୟେକ ଶ୍ଳୋକର ଅଧ୍ୟାୟ ଦୀପିକା, ଅନୁବାଦ ଓ ବିଶେଷ ଲକ୍ଷ୍ୟ ଦିଆଯାଇଛି । )





# ତ୍ରୟୋଦଶ ଅଧ୍ୟାୟ

## କ୍ଷେତ୍ର କ୍ଷେତ୍ରଜ୍ଞ ବିଭାଗ ଯୋଗ

**ଅଧ୍ୟାୟ ଦୀପିକା—**

ପୂର୍ବେ କୁହାଯାଇଛି ଯେ, ଗୀତାକୁ ମୋଟାମୋଟି ତିନୋଟି ତାତ୍ତ୍ୱିକ ବିଭାଗରେ ବିଭକ୍ତ କରାଯାଇଥାଏ । କୁହାଯାଇଥାଏ ଯେ, ପ୍ରଥମ ଛ ଅଧ୍ୟାୟ କର୍ମଯୋଗ, ଦ୍ୱିତୀୟ ଛ ଅଧ୍ୟାୟ ଭକ୍ତିଯୋଗ ଓ ତୃତୀୟ ଛ ଅଧ୍ୟାୟ ଜ୍ଞାନଯୋଗ । ତୃତୀୟ ବା ଜ୍ଞାନଯୋଗ ବିଭାଗଟି ଏହି ତ୍ରୟୋଦଶ ଅଧ୍ୟାୟରୁ ଆରମ୍ଭ ହେଲା ; ଏବଂ ଦେହ ଓ ଆତ୍ମା ବା ପୁରୁଷ ଓ ପ୍ରକୃତି ପ୍ରଭୃତିର ବିଚାର ହିଁ ହେଲା ତଥାକଥିତ ଜ୍ଞାନଯୋଗର ମୂଳ ଭିତ୍ତି । ଏ ସବୁ ଗୀତାର ଆରମ୍ଭରୁ ପୂର୍ବ ପୂର୍ବ ଅଧ୍ୟାୟମାନଙ୍କରେ ଚର୍ଚ୍ଚା ହୋଇ ଆସିଥିଲେ ହେଁ ଗୀତାର ଏହି ତୃତୀୟାଂଶର ସ୍ୱତନ୍ତ୍ର ଭୂମିକାକୁ ସ୍ମରଣ କରି ଗୀତାକାର ତାହାକୁ 'କ୍ଷେତ୍ର ଓ କ୍ଷେତ୍ରଜ୍ଞ' ବୋଲି ଏକ ନୂଆ ନାମରେ ଏଠାରେ ହୁଏତ ତାର ବିସ୍ତୃତତର ଆଲୋଚନା ଆରମ୍ଭ କରିବାକୁ ଯାଇଛନ୍ତି । ତେଣୁ, ଗୀତାର ଏହି ତୃତୀୟ ବା ଶେଷାଂଶର ବିଶେଷତ୍ୱକୁ ଆଖିରେ ରଖି, ପାଠକ ପାଠିକା 'ଜ୍ଞାନଯୋଗ' କ'ଣ, ତାହା ସାମାନ୍ୟ ଅଥଚ ସ୍ପଷ୍ଟଭାବରେ ଜାଣିରଖିବା ଉଚିତ ବୋଲି ମନେକରୁ । ପୁଣି ମନେରଖିବାକୁ ହେବ ଯେ, ସମଗ୍ର ଗୀତା ହିଁ ଏକ ଜ୍ଞାନଯୋଗ । ମାନବାତ୍ମାର ସନାତନ ଜିଜ୍ଞାସାହିଁ 'ଜ୍ଞାନଯୋଗର ଭିତ୍ତି ଏବଂ ସମଗ୍ର ଗୀତା ମାନବ-ଚେତନାର ଏକ ମୁକ୍ତ-ଉଦାର ଜିଜ୍ଞାସା ।

ପାଠକେ ଅବାଧରେ ସ୍ୱୀକାର କରିବେ ଯେ, ଆମର ସମଗ୍ର ଚେତନାଟା ସାଧାରଣତଃ ଏକାନ୍ତରେ ଦେହକେନ୍ଦ୍ରିକ । ଦେହର ଚାହିଦା ମେଣ୍ଟାଇବା ହିଁ ଆମର ତଥାକଥିତ 'ଜୀବନ' । ଆମର ଉତ୍ତମ ଖାଇବା, ଉତ୍ତମ ପିନ୍ଧିବା, ନିଜକୁ ସୁନ୍ଦର ଦେଖେଇବା ଏବଂ ଆମର ବିବାହ ଓ ସଂସାର—ଏ ସବୁ ହିଁ କେବଳ ଦେହର-ଚାହିଁଦା-ମେଣ୍ଟାଇବା ବ୍ୟାପାର । ଆମେ ଯେ 'ମୁଁ' ଶବ୍ଦ ବ୍ୟବହାର କରିଥାଉ, ତାହା ସାଧାରଣତଃ କେବଳ ଏହି ଦେହ ଅର୍ଥରେ । କିନ୍ତୁ ଦେହ ପରିବର୍ତ୍ତନଶୀଳ ଓ ନାଶଶୀଳ । ସେ ପରିବର୍ତ୍ତନ ଓ ବିନାଶ ଆମେ ନ ଚାହିଁଲେ ମଧ୍ୟ ଘଟିଯାଉଛି । ଶେଷରେ ଆମେ ନ ଚାହିଁଲେ ବି ମରୁ । ଯେଉଁ ଦେହଟାକୁ କେନ୍ଦ୍ର କରି ଆମେ ଏଯାବତ୍ 'ମୁଁ' ବା 'ମୋର' ହେଉଥିଲୁ, ସେ ଦେହଟା

କବରର ଭିତରେ ପୋକ ଜୋକଙ୍କ ଖାଦ୍ୟ ହୁଏ ବା ପୋଡ଼ କେତେ ମୁଠା ପାଉଁଶରେ ହିଁ ଶେଷ ହୁଏ ।

କିନ୍ତୁ ଏହି କଣ ପ୍ରକୃତ ମନୁଷ୍ୟ ଜୀବନ ? ଅର୍ଜୁନ, ପ୍ରଥମେ ଏହି ଦେହ—ଭିତ୍ତିକ ଦୃଷ୍ଟିକୋଣରୁ ଜୀବନକୁ ବିଚାର କରିହିଁ, ଭାଇ-ବନ୍ଧୁ-କୁଟୁମ୍ବଙ୍କ ହତ୍ୟାରୂପକ ପାପ-ଭୟରେ ଏକ ଧର୍ମ-ଯୁଦ୍ଧରୁ ପଛଘୁଞ୍ଚା ଦେଇଥିଲେ ।

ଗୀତା ଲେଖାଯାଇଥିଲା ଭାରତୀୟ ଦର୍ଶନର ଚରମ ସତ୍ୟକୁ ପ୍ରତିଷ୍ଠିତ କରିବା ପାଇଁ । ପୁଣି ବୌଦ୍ଧ ନୈରାତ୍ମ୍ୟ ଓ ନିରୀଶ୍ୱରତାର ଶକ୍ତିଶାଳୀ ପ୍ରତିବାଦ, ଏହି ଗୀତା । ଶ୍ରୀକୃଷ୍ଣଙ୍କ ମୁଖରେ ଗୀତାକାର ତେଣୁ ପ୍ରଥମରେ ହିଁ ଅର୍ଜୁନଙ୍କୁ ବୁଝେଇବାକୁ ଯାଇଛନ୍ତି ଯେ ଦେହଟା 'ଜୀବନ' ନୁହେଁ । ଦେହ ଶାଶ୍ୱତ ଆତ୍ମାର ଏକ ଅଳ୍ପ କ୍ଷଣସ୍ଥାୟୀ ଆଧାର ମାତ୍ର । ଦେହର ନିୟୁତବାର ବିନାଶ ଘଟିଲେ ମଧ୍ୟ ଅନ୍ତଃସ୍ଥ ସେହି ଆଧେୟର ବିନାଶ ନାହିଁ, କାରଣ ତାହା ନିତ୍ୟ-ସନାତନ ବିଶ୍ୱ-ବ୍ୟାପ୍ତ ପରମାତ୍ମାରହିଁ ଅଂଶ । ଉପନିଷଦ୍‌ମାନଙ୍କରେ ଏହି ପରମାତ୍ମାର ଅନ୍ୟନାମ ହିଁ 'ବ୍ରହ୍ମ' । କିନ୍ତୁ ସେ ବ୍ରହ୍ମ ନିରାକାର ଓ ନିର୍ଗୁଣ । ଗୀତା ପ୍ରଚାର କଲେ ଯେ, ସେହି ବିଶ୍ୱବ୍ୟାପ୍ତ ଚେତନା ଉଭୟ ନିର୍ଗୁଣ ଓ ଗୁଣବାନ୍, ଅବ୍ୟକ୍ତ ଓ ବ୍ୟକ୍ତ, ଦୂରସ୍ଥ ଓ ଅନ୍ତଃସ୍ଥ । ଅଧିକନ୍ତୁ ମନୁଷ୍ୟର ସୁଖ-ଦୁଃଖରେ ସମ-ବେଦନାଶୀଳ ହେବା ଯୋଗୁ, ଆବଶ୍ୟକତା ଅନୁସାରେ, ଅଧର୍ମର ବିନାଶ ଓ ଧର୍ମର ସଂସ୍ଥାପନା ପାଇଁ ବେଳେ ବେଳେ ସେହି 'ଅବ୍ୟକ୍ତ', ମନୁଷ୍ୟ ରୂପରେ ମଧ୍ୟ 'ବ୍ୟକ୍ତ' ହୋଇ ଏହି ଧରାପୃଷ୍ଠରେ 'ଅବତାର' ଗ୍ରହଣ କରଥାନ୍ତି ।

ପରିବର୍ତ୍ତନ ଓ ନାଶଶୀଳ ଦେହରୁ ଆମର ଚେତନାକୁ ଆସ୍ତେ ଆସ୍ତେ ଉପରକୁ ଉଠାଇ ନେଇ, କ୍ରମେ ଆତ୍ମା ଓ ପରମାତ୍ମା ରୂପକ ପ୍ରକୃତ ସତ୍ୟର ଅନୁଭବ ଓ ତାହି ପ୍ରତି ଗଭୀର ଅନୁରାଗହିଁ ଜ୍ଞାନ ଯୋଗ । ଏହା ଅବଶ୍ୟ ସହଜ ନୁହେଁ । ଅତି କଠିନ ସାଧନା । ସେଥିପାଇଁ ଗୀତା ନିରବଚ୍ଛିନ୍ନ ଭାବରେ "ଅଭ୍ୟାସ ଯୋଗ" (୧୨।୯,୬ । ୩୫, ୧୨।୧୨ )ର ବାରମ୍ବାର ପରାମର୍ଶ ଦେଇଛନ୍ତି । ଏହି 'ଅଭ୍ୟାସ' ପୁଣି ହେଲା ଦ୍ୱିବିଧ—ମାନସିକ ଓ ଶାରୀରିକ । ଶାରୀରିକ ସ୍ତରରେ ଆସନ, ପ୍ରାଣାୟାମ ପ୍ରଭୃତି ଅଷ୍ଟାଙ୍ଗ ରାଜ-ଯୋଗର ବ୍ୟବସ୍ଥା ଶାସ୍ତ୍ରକାରମାନେ କରିଯାଇଛନ୍ତି ; କିନ୍ତୁ ମାନସିକ ଅଭ୍ୟାସହିଁ ମୁଖ୍ୟପନ୍ଥା । ଏ ହେଲା (୧) ବିବେକ, ( ଏ ଜଗତରେ ସତ୍ୟ କ'ଣ ଅସତ୍ୟ କ'ଣ, ବାସ୍ତବ କ'ଣ, ଅବାସ୍ତବ କ'ଣ, ଏହାର ଗଭୀର ଓ କ୍ରମାଗତ ବିଚାର ) ( ୨ ) ବୈରାଗ୍ୟ ( ଇନ୍ଦ୍ରିୟଜ ସୁଖମାନଙ୍କ ଆଡୁ କ୍ରମେ କ୍ରମେ ଆସକ୍ତି ସବୁକୁ ଓଟାରି ଆଣିବା ), (୩) ଷଡ଼ସଂପଦ ଅର୍ଥାତ୍ ଶମ ( ଚିତ୍ତର ସ୍ଥିରତା ) ଦମ ( ଇନ୍ଦ୍ରିୟମାନଙ୍କୁ ସ୍ୱଆୟତ୍ତରେ ରଖିବା ) ଉପରତି ( ଆସ୍ତେ ଆସ୍ତେ

ସଂସାରିକ କର୍ମମାନଙ୍କରୁ ନିଜକୁ ଅଲଗା ରଖିବା ) ତିତିକ୍ଷା ( ଦୁଃଖ-ଦୁର୍ଦ୍ଦଶା-ଅପମାନ ଆଦିକୁ ଧୀର ସ୍ଥିର ହୋଇ ସହିଯିବା ) ଶ୍ରଦ୍ଧା ( ଶାସ୍ତ୍ର ବା ଗୁରୁଙ୍କ ଉପରେ ବିଶ୍ୱାସ ), ସମାଧାନ ( ମନର ଏକାଗ୍ରତା ଯାହା କ୍ରମେ ତାକୁ 'ସମାଧି' ଆଡକୁ ନେଇଯାଏ )—ଏହି ଯେଉଁ ମାନସିକ 'ଷଡସଂପଦ', ତାର ଆହରଣ କରିବା ଏବଂ (୪) ହେଲା 'ମୁମୁକ୍ଷା' ବା ଜନ୍ମ-ମରଣ-ରୂପକ-ଆବର୍ତ୍ତନରୁ ମୁକ୍ତି ପାଇବା ପାଇଁ ତୀବ୍ର ଇଚ୍ଛା ।

କିନ୍ତୁ ଏସବୁ ପଢ଼ିଲା ପରେ ମନେ ହେବ ନାହିଁକି ଯେ, (ଏହି ଜ୍ଞାନ ଯୋଗ ବା ଜ୍ଞାନମାର୍ଗ ଏକ ଶୁଷ୍କ କଠିନ ଓ ନୀରସ ପନ୍ଥା ? ଏହା କେବଳ ନଡାଂତ୍ମକ । କିନ୍ତୁ ପ୍ରକୃତରେ ଏହା ତାହା ନୁହେଁ । ଆମେ କେବଳ ମୋହ ଓ ଅଜ୍ଞତାବଶତଃ ହିଁ , ଯାହା କ୍ଷଣସ୍ଥାୟୀ, ନଶ୍ୱର ଓ ଚିର-ପରିବର୍ତ୍ତନଶୀଳ ତାକୁଇ ନିତ୍ୟ, ସନାତନ ଓ ସତ୍ୟ ମନେକରି ସେହିଥିରୁ ସୁଖ ଓ ଆନନ୍ଦ ପାଇବା ପାଇଁ ଦିଗବିଦିଗ ଧାଉଁଛୁ । କିନ୍ତୁ ଯେତେ ଧାଇଁଲେ ମଧ୍ୟ ଯାହା କ୍ଷଣସ୍ଥାୟୀ ତାହା ଚିରସ୍ଥାୟୀ ଆନନ୍ଦ କିପରି ଦେଇ ପାରିବ ? ଅଥଚ ଏ ଜଗତରେ, କ୍ଷଣସ୍ଥାୟୀ ହେଉ ପଛେ, ଯାହାକିଛି ଆନନ୍ଦ ଆମେ ପାଉଁ ତାହାର ଉତ୍ସ ଦେହ ବା ସେହି ପ୍ରକାର ଅନ୍ୟ କୌଣସି ପଦାର୍ଥ ନୁହେଁ । ସେ ହେଉଛି ସେମାନଙ୍କ ପଛରେ ଥିବା ଆତ୍ମା ବା ପରମାତ୍ମା । ବେଦାନ୍ତ ତାଙ୍କୁ ବର୍ଣ୍ଣନା କରିଛନ୍ତି ସତ୍-ଚିତ୍-ଆନନ୍ଦ ବୋଲି । ସେହି ହିଁ କେବଳ ସତ୍ୟ, ପୁଣି ଆମେ ଯେଉଁ ଚେତନା-ଶକ୍ତି ଯୋଗୁଁ ସୁଖ ବା ଆନନ୍ଦ ଅନୁଭବ କରୁ, ସେ ପୁରାପୁରି କେବଳ ସେହି ଚିତ୍ ଏବଂ ସେ ଚେତନା ପୁଣି କେବଳ ବିଶୁଦ୍ଧ ଆନନ୍ଦମୟ—ଜାଗତିକ ସକଳ ଆନନ୍ଦର ଉତ୍ସ ।

ଉପନିଷଦ୍‌ମାନଙ୍କରେ ସର୍ବତ୍ର ଧର୍ମ-ସାଧନାର ଶେଷରୂପେ ଏହି 'ପରମ ଆନନ୍ଦ'ର କଥାହିଁ କୁହାଯାଇଛି । ବାରମ୍ବାର କୁହାଯାଇଛି ଯେ, ବ୍ରହ୍ମହିଁ ଆନନ୍ଦ । ଯଥା—

ଆନନ୍ଦୋ ବ୍ରହ୍ମେତି ବ୍ୟଜାନାତ୍
ଆନନ୍ଦାଦ୍ଧ୍ୟେବ ଖଲ୍ୱିମାନି ଭୂତାନି ଜାୟନ୍ତେ,

ଆନନ୍ଦେନ ଜାତାନି ଜୀବନ୍ତି
ଆନନ୍ଦଂ ପ୍ରଯନ୍ତ୍ୟଭି ସଂବିଶନ୍ତୀତି ।

ତୈତ୍ତିରୀୟ ଉପନିଷଦ (୩/୬)

( ଆନନ୍ଦ ହିଁ ବ୍ରହ୍ମ ବୋଲି ଜାଣିବ, କାରଣ ଆନନ୍ଦରୁ ହିଁ ଜୀବ ସକଳର ଜନ୍ମ । ଜାତହେଲା ପରେ ଆନନ୍ଦ ଦ୍ୱାରାହିଁ ସେମାନେ ବର୍ଦ୍ଧିତ ହୋଇଥାନ୍ତି ।

ଏବଂ ଅବଶେଷରେ ସେମାନେ ଆନନ୍ଦ ଅଭିମୁଖରେ ଯାତ୍ରାକରି ଆନନ୍ଦରେ ହିଁ ବିଲୀନ ହୁଅନ୍ତି) ।

ପୁଣି

ରସୋ ବୈସଃ । ରସଂ ହ୍ୟେବାୟଂ ଲବ୍ଧ୍ୱାନନ୍ଦୀ ଭବତି ।

(ସେହି ବ୍ରହ୍ମ ବା ସ୍ରଷ୍ଟା ରସସ୍ୱରୂପ । ସେହି ରସର ଅନ୍ୱେଷଣରେ ହିଁ ଜୀବ ଆନନ୍ଦଲାଭ କରିଥାଏ) ।

ତୈତ୍ତିରୀୟ (୨/୭)

ପୁଣି

ତଦ୍ୱିଜ୍ଞାନେନ ପରିପଶ୍ୟନ୍ତି ଧୀରା<br>ଆନନ୍ଦରୂପ ମମୃତଂ ଯଦ୍ୱିଭାତି ।

ମୁଣ୍ଡକୋପନିଷତ୍(୨/୨/୭)

(ସଂଯମୀ ସାଧକ ଜ୍ଞାନଯୋଗ ବଳରେ ଶେଷରେ ତାଙ୍କୁ ନିଜ ଆତ୍ମାରେ ମୃତ୍ୟୁହୀନ ଆନନ୍ଦ ରୂପରେ ବିଭସିତ ହିବାର ଦେଖନ୍ତି)

ଗୀତା ଅତ ସ୍ପଷ୍ଟ ବାଣୀରେ ଏହି "ଆନନ୍ଦର" ବାର୍ତ୍ତା ହିଁ ବାରଂବାର ପ୍ରଚାର କରିଛନ୍ତି । ଗୀତା କହନ୍ତି ଯେ, "ଯୋଗଃ ଭବତି ଦୁଃଖହା ।" (ଯୋଗ ଆମର ଦୁଃଖନାଶନ କରିଥାଏ) । ପୁଣି ଯୋଗୀ ବା ସାଧକ 'ସୁଖେନ ବ୍ରହ୍ମ-ସଂସ୍ପର୍ଶ ମତ୍ୟନ୍ତଂ ସୁଖମଶ୍ନୁତେ'(ବ୍ରହ୍ମ ସଂସ୍ପର୍ଶରେ ଆସି ଅଶେଷ ସୁଖ ଲାଭ କରେ) ଏବଂ 'ଯଂ ଲବ୍ଧ୍ୱା ଚାପରଂ ଲାଭଂ ମନ୍ୟତେ ନାଧିଙ୍କ ତତଃ' (ଯେଉଁ ସୁଖକୁ ପାଇଲା ପରେ ତା'ଠୁ ଅଧିକ କିଛି ସୁଖ ନ ଥାଇପାରେ ବୋଲି ସାଧକ ମନେ କରିବ) ।

ତେଣୁ ଜ୍ଞାନମାର୍ଗ ନୀରସ ବା ଶୁଷ୍କ ନୁହେଁ । ଏହା ସାଧକକୁ ଅନିତ୍ୟ ସୁଖରୁ ନିତ୍ୟ ସୁଖକୁ ନିଏ , ଅ ସତ୍ୟରୁ ସତ୍ୟକୁ ନିଏ; ନାଶପ୍ରବଣ ବସ୍ତୁରୁ ମନୁଷ୍ୟର ଆକର୍ଷଣକୁ ଅଭିମୁଖୀ କରାଏ ପୁରୁଷୋତ୍ତମ, ସଚ୍ଚିଦାନନ୍ଦଂକ ଆଡକୁ ।

ଅନ୍ୟ କଥାରେ ଆମର ଦେହକୁ ମନେ କରିବାକୁ ହେବ ଯେ, ତାହା କେବଳ ଏକ 'କ୍ଷେତ୍ର' । ସେହି କ୍ଷେତ୍ରଟିକୁ କିପରି ବ୍ୟବହାର କରି, ସେଥିରେ

କିପରି ସର୍ବୋତ୍ତମ ଫସଲ ଉଠେଇବାକୁ ହେବ, ତା କେବଳ ଜାଣେ, ଜଣେ ଅଦୃଶ୍ୟ ଋଷୀ ବା 'କ୍ଷେତ୍ରଜ୍ଞ' । ଆମର ପ୍ରତ୍ୟେକ ଜନ୍ମ ଏକ ଏକ ଋତୁ । କେଉଁ ଋତୁରେ କେଉଁ ଶସ୍ୟ ଏ କ୍ଷେତ୍ରରେ ଉଠେଇବାକୁ ହେବ ତାହାମଧ୍ୟ ଜଣା କେବଳ ସେହି 'କ୍ଷେତ୍ରଜ୍ଞ'ଙ୍କୁ । ଆମର ସୀମିତ କ୍ଷେତ୍ରମାନଙ୍କରେ ବିରାଟ ସେହି କ୍ଷେତ୍ରଜ୍ଞର ଫସଲ ପରୀକ୍ଷା ହିଁ, ଏହି ସୃଷ୍ଟିର ଅପୂର୍ବ ଲୀଳା । ସସୀମରେ ହିଁ ଅସୀମର କ୍ରୀଡା ଚାଲିଛି, ଏବଂ ସେହି ସସୀମ ଅସୀମର ବା କ୍ଷେତ୍ର-କ୍ଷେତ୍ରଜ୍ଞର ଘନିଷ୍ଠ ସମ୍ପର୍କ ନେଇ ସର୍ବଦା ଅବହିତ ରହିବା ହିଁ ଜ୍ଞାନଯୋଗ ।

ବର୍ତ୍ତମାନ ଅଧ୍ୟାୟ ଆରମ୍ଭ କରିବା ।

ଅର୍ଜ୍ଜୁନ ଉବାଚ

ପ୍ରକୃତିଂ ପୁରୁଷଂ ଚୈବ କ୍ଷେତ୍ରଂ କ୍ଷେତ୍ରଜ୍ଞମେ-ବଚ,
ଏତଦ୍ ବେଦିତୁମିଚ୍ଛାମି ଜ୍ଞାନଂ ଜ୍ଞେୟଂ ଚ କେଶବ ।

ହେ କେଶବ ( ଶ୍ରୀକୃଷ୍ଣ ) ପ୍ରକୃତିଂ ପୁରୁଷଂଚ ( ପ୍ରକୃତି ଓ ପୁରୁଷ ) କ୍ଷେତ୍ରଂ କ୍ଷେତ୍ରଜ୍ଞଂ ଚ (ଏବଂ କ୍ଷେତ୍ର ଓ କ୍ଷେତ୍ରଜ୍ଞ) ଜ୍ଞାନଂ ଜ୍ଞେୟଂଚ (ଏବଂ ଜ୍ଞାନ ଓ ଜ୍ଞେୟ ) ( କ'ଣ ) ଏତଦ୍ ( ଏହା ) ବେଦିତୁଂ ଇଚ୍ଛାମି ( ଜାଣିବାକୁ ଇଚ୍ଛା କରୁଛି ) ।

## ଅନୁବାଦ—

ଅର୍ଜ୍ଜୁନ କହିଲେ, ହେ କୃଷ୍ଣ, ମୁଁ ବର୍ତ୍ତମାନ କ୍ଷେତ୍ର ଓ କ୍ଷେତ୍ରଜ୍ଞ, ପ୍ରକୃତି ଓ ପୁରୁଷ ଏବଂ ଜ୍ଞାନ ଓ ଜ୍ଞେୟର ପ୍ରଭେଦ ବୁଝିବାକୁ ଇଚ୍ଛାକରେ

## ମନ୍ତବ୍ୟ—

ଗୀତାର ଶ୍ଳୋକ ସଂଖ୍ୟା ୭୦୦ ବୋଲି ଧରାଯାଏ । କିନ୍ତୁ ଏ ଶ୍ଳୋକଟିକୁ ମିଶେଇଲେ ସଂଖ୍ୟା ହେବ ୭୦୧ । ଏକାଦଶ ଓ ଦ୍ୱାଦଶ ଅଧ୍ୟାୟର ଉକ୍ତ ବ୍ୟକ୍ତ ଓ ବ୍ୟକ୍ତି ଆରାଧନାର, ପୁଣି ସପ୍ତମ ଓ ଅଷ୍ଟମ ଅଧ୍ୟାୟରେ ଈଶ୍ୱରଙ୍କର କ୍ଷର ଓ ଅକ୍ଷର, ବ୍ୟକ୍ତ ଓ ଅବ୍ୟକ୍ତାଦି ପ୍ରକାଶର ବିସ୍ତୃତ ଆଲୋଚନା ପରେ ଏବଂ ଗୀତାର ପ୍ରଥମାଂଶରେହିଁ ପ୍ରକୃତି ଓ ପୁରୁଷନେଇ ଏତେ କଥା କୁହା ହୋଇ ସାରିଲା ପରେ, ଅର୍ଜ୍ଜୁନ ପୁଣି ପ୍ରକୃତି ଓ ପୁରୁଷ ବା କ୍ଷେତ୍ର ଓ କ୍ଷେତ୍ରଜ୍ଞ କଥା ପଚାରିବା ପ୍ରକୃତରେ ଅପ୍ରାସଂଗିକ ବୋଧ

ହୋଇଛି । ତେଣୁ ଅଧିକାଂଶ ଟୀକାକାର ଏହି ଶ୍ଳୋକଟିକୁ ପ୍ରକ୍ଷିପ୍ତ ବୋଲି ଧରନ୍ତି । ଅଥଚ ଅର୍ଜୁନଙ୍କ ଜିଜ୍ଞାସା ନହେଲେ, ଶ୍ରୀକୃଷ୍ଣ କ୍ଷେତ୍ର-କ୍ଷେତ୍ରଜ୍ଞ କଥା କହିବେ ବା କାହିଁକି ? ତେଣୁ ଶ୍ଳୋକଟିକୁ ବାଦ ବି ଦିଆଯାଇ ପାରୁନି । ଅଥଚ ପୂର୍ବ ଅଧ୍ୟାୟରେ କ୍ଷେତ୍ର କ୍ଷେତ୍ରଜ୍ଞର ପ୍ରସଙ୍ଗ ହିଁ ଉଠି ନ ଥିବାରୁ ଅର୍ଜୁନଙ୍କର ସେ-ସଂପୃକ୍ତ ପ୍ରଶ୍ନ ମଧ୍ୟ ଏକାନ୍ତ ଅବାନ୍ତର ।

ଶ୍ରୀ ଭଗବାନ ଉବାଚ

( ୧ )

ଇଦଂ ଶରୀରଂ କୌନ୍ତେୟ, କ୍ଷେତ୍ର ମିତ୍ୟଭିଧୀୟତେ
ଏତଦ୍ ଯୋ ବେତ୍ତି ତଂ ପ୍ରାହୁଃ କ୍ଷେତ୍ରଜ୍ଞ ଇତିତଦ୍‌ବିଦଃ । ୧ ।

ଶ୍ରୀ ଭଗବାନ୍ ଉବାଚ ( ଭଗବାନ ଶ୍ରୀକୃଷ୍ଣ କହିଲେ ) ( ହେ ) କୌନ୍ତେୟ ( ଅର୍ଜୁନ ) ଇଦଂ ଶରୀରଂ କ୍ଷେତ୍ରଂ ଇତି ଅଭିଧୀୟତେ ( ଆମର ଏହି ଶରୀରକୁ ହିଁ କ୍ଷେତ୍ର କୁହାଯାଇଥାଏ ) ( ପୁଣି ) ଯଃ ଏତତ୍ ବେତ୍ତି ( ଯେ ଏହି କ୍ଷେତ୍ରକୁ ଜାଣନ୍ତି ) ତଦ୍‌ବିଦଃ ( ସେହି ବିଷୟରେ ଅବଗାହୀ ଲୋକେ ) ତଂ କ୍ଷେତ୍ରଜ୍ଞଃ ଇତ ପ୍ରାହୁଃ ( ତାଙ୍କୁ 'କ୍ଷେତ୍ରଜ୍ଞ' ବୋଲି କହିଥାନ୍ତି ) ।

ଅନୁବାଦ—

ଶ୍ରୀକୃଷ୍ଣ କହିଲେ, ହେ ଅର୍ଜୁନ, ଶରୀରକୁ ହିଁ କ୍ଷେତ୍ର ବୋଲି ଧରଯାଏ ଏବଂ ଯେ ଏହି କ୍ଷେତ୍ର-ତତ୍ତ୍ୱରେ ପରିପୂର୍ଣ୍ଣ—ଅବଗାହୀ ତାଙ୍କୁଇ କୁହାଯାଏ କ୍ଷେତ୍ରଜ୍ଞ ।

( ୨ )

କ୍ଷେତ୍ରଜ୍ଞଂ ଚାପ ମାଂ ବିଦ୍ଧି ସର୍ବ କ୍ଷେତ୍ରେଷୁ ଭାରତ
କ୍ଷେତ୍ର କ୍ଷେତ୍ରଜ୍ଞୟୋର୍ଜ୍ଞାନଂ ଯତ୍ତଜ୍ଜ୍ଞାନ ମତଂମମ । ୨ ।

( ହେ ) ଭାରତ ( ଅର୍ଜୁନ ) ସର୍ବକ୍ଷେତ୍ରେଷୁ ଅପି ( ସମସ୍ତ କ୍ଷେତ୍ର ବା ଶରୀରରେ ) ମାଂ ଚ କ୍ଷେତ୍ରଜ୍ଞଂ ବିଦ୍ଧି ( ମୋତେହିଁ କ୍ଷେତ୍ରଜ୍ଞ ବୋଲି ଜାଣିରଖ ) । କ୍ଷେତ୍ରକ୍ଷେତ୍ରଜ୍ଞୟୋଃ ଯତ୍ ଜ୍ଞାନଂ ( କ୍ଷେତ୍ର ଓ କ୍ଷେତ୍ରଜ୍ଞ ସଂପୃକ୍ତ ଯେଉଁ ଜ୍ଞାନ ) ତତ୍ ଜ୍ଞାନଂ ମମ ମତଂ ( ତାହାହିଁ ପ୍ରକୃତ ଜ୍ଞାନ ବୋଲି ମୋର ମତ ) ।

**ଅନୁବାଦ—**

ହେ ଅର୍ଜୁନ, ପୁଣି ଜାଣ ଯେ ଏ ବିଶ୍ୱର ସକଳ କ୍ଷେତ୍ର ( ଦେହ ) ରେ ମୁହିଁ ହିଁ ଏକମାତ୍ର କ୍ଷେତ୍ରଜ୍ଞ । ଏଇ ଯେ କ୍ଷେତ୍ରକ୍ଷେତ୍ରଜ୍ଞ ସମ୍ବନ୍ଧ ତାହାରି ସ୍ପଷ୍ଟ ଅବବୋଧହିଁ ମୋ ମତରେ ସତ୍ୟ ଜ୍ଞାନ ବା ପ୍ରକୃତ ଜ୍ଞାନ-ଯୋଗ ।

**ବିଶେଷ ଭାଷ୍ୟ—**

ସାଂଖ୍ୟ ମତରେ ଯେତେ ଦେହ ସେତେ ପୁରୁଷ । ବେଦାନ୍ତ ମତ-ପ୍ରବର୍ତ୍ତକ-ଗୀତା କେବଳ ଗୋଟିଏ ପୁରୁଷକୁ ସ୍ୱୀକାର କରନ୍ତି । ସେ ପୁରୁଷୋତ୍ତମ । ସେହି, ତେଣୁ, 'ସର୍ବକ୍ଷେତ୍ରେଷୁ' ବା ସବୁ ଦେହରେ ଏକମାତ୍ର ପୁରୁଷ ବା 'କ୍ଷେତ୍ରଜ୍ଞ' ।

ଶ୍ୱେତାଶ୍ୱେତର ଉପନିଷତ୍ ( ୬।୧୬ ) ରେ ତେଣୁ ଈଶ୍ୱରଙ୍କୁ "ପ୍ରଧାନ-କ୍ଷେତ୍ରଜ୍ଞ-ପତିଃ" ବୋଲି ବର୍ଣ୍ଣନା କରାଯାଇଛି । ସାଧକ କ୍ଷେତ୍ରଜ୍ଞଙ୍କୁ ଜାଣିବା ସାଥେ ସାଥେ କ୍ଷେତ୍ରକୁ ମଧ୍ୟ ଉତ୍ତମରୂପେ ଜାଣିବାକୁ ଚେଷ୍ଟା କରିବେ; କ୍ଷେତ୍ରଜ୍ଞାନ ହେଲା ପାର୍ଥିବ ଜ୍ଞାନ—ଇତିହାସ, ଭୂଗୋଳ, ଅଂକ, ସାହିତ୍ୟାଦି ଉପନିଷଦରେ ଏହାର ନାମ ଅ-ପରା ବା ନିକୃଷ୍ଟ ବିଦ୍ୟା ବା ଜ୍ଞାନ । କ୍ଷେତ୍ରଜ୍ଞଙ୍କ ଜ୍ଞାନ ହେଲା ବ୍ରହ୍ମ-ଜ୍ଞାନ ବା ଈଶ୍ୱର-ତତ୍ତ୍ୱ । ଉପନିଷଦ ଏହି ଜ୍ଞାନକୁ କହିଛନ୍ତି ପରାବିଦ୍ୟା ବା ଉତ୍କୃଷ୍ଟ ଜ୍ଞାନ । ଉପନିଷଦର ଏହି ଶ୍ରେଣୀ-କରଣ ଯଥାର୍ଥ । କାରଣ, ସ୍ରଷ୍ଟାକୁ ନ ଜାଣିଲା ଯାଏ ସୃଷ୍ଟି-ସଂପୃକ୍ତ ଜ୍ଞାନ ନିଶ୍ଚୟ ଅସଂପୂର୍ଣ୍ଣ । ସକଳ ବସ୍ତୁକୁ ଯେପରି ଐକ୍ୟ ଦାନ କରୁଛି ଅଣୁ, ସକଳ ଜ୍ଞାନକୁ ଏକୀଭୂତ କରୁଛି ସେହିପରି ସତ୍-ଓ ଚିତ୍‌ମୟ ଏକ ସୂକ୍ଷ୍ମ ବସ୍ତୁ ଯେ କି ପ୍ରାଣ, ଜୀବନ, ଚେତନା ଓ ଜ୍ଞାନ ରୂପରେ ଏ ବିଶ୍ୱରେ ପ୍ରକାଶିତ । ଜଡ଼ ରୂପକ 'କ୍ଷେତ୍ର'ରେ ସେହି 'କ୍ଷେତ୍ରଜ୍ଞ'ର ଆବିର୍ଭାବ ଯୋଗୁଁ ହିଁ, ବିଶ୍ୱର ବ୍ୟାପକ ଲୀଳା ସମ୍ଭବ ହେଉଛି ।

( ୩ )

ତତ୍ କ୍ଷେତ୍ରଂ ଯଚ୍ଚ ଯାଦୃକ୍ ଚ ଯଦ୍ ବିକାରି ଯତଶ୍ଚ ଯତ୍
ସ ଚ ଯୋ ଯତ୍ ପ୍ରଭାବଶ୍ଚ ତତ୍ ସମାସେନ ମେ ଶୃଣୁ । ୩ ।

ତତ୍ କ୍ଷେତ୍ରଂ (ସେହି କ୍ଷେତ୍ର) ଯତ୍ ଚ (ଯାହା) ଯାଦୃକ୍ ଚ (ଯେଉଁପରି) ଯଦ୍ ବିକାରି (ପୁଣି ଯେଉଁପରି ଭାବରେ ପରିବର୍ତ୍ତନଶୀଳ), ଯତଃ ଚ ଯତ୍

(ଯେଉଁଥିରୁ ଯାହା ଜାତ ହୁଏ) ସଃ ଚ ଯଃ ପୁଣି ସେହି କ୍ଷେତ୍ରଜ୍ଞ ଯିଏ) ଯତ୍ ପ୍ରଭାବଃ ଚ (ସେ ବା ଯେଉଁପରି ପ୍ରଭାବ ବିଶିଷ୍ଟ) ତତ୍ ମେ ସମାସେନ ଶୃଣୁ ତାହା, ତୁମେ ମୋଠାରୁ ସଂକ୍ଷେପରେ ଶୁଣ ।

**ଅନୁବାଦ—**

ତେଣୁ ହେ ଅର୍ଜୁନ, ତୁମେ, ସେ କ୍ଷେତ୍ର କ'ଣ, ତାର ବିକାର ସବୁ କିପରି ଓ ତାର ପ୍ରଭାବ କ'ଣ, ସେସବୁ ମୋଠାରୁ ସଂକ୍ଷେପରେ ଶୁଣିରଖ ।

( ୪ )

ଋଷିଭିର୍ବହୁଧା ଗୀତଂ ଛନ୍ଦୋଭିର୍ବିବିଧୈଃ ପୃଥକ୍
ବ୍ରହ୍ମସୂତ୍ରପଦୈଶ୍ଚୈବ ହେତୁମଦ୍ଭିର୍ବିନିଶ୍ଚିତୈଃ ।୪।

[ଏହି କ୍ଷେତ୍ର ଓ କ୍ଷେତ୍ରଜ୍ଞର ତତ୍ତ୍ୱ] ଋଷିଭିଃ (ଋଷିମାନଙ୍କ ଦ୍ୱାରା) ବିବିଧୈଃ ଛନ୍ଦୋଭିଃ (ନାନା ପ୍ରକାର ଛନ୍ଦରେ) ପୃଥକ୍ ବହୁଧା (ନାନ ପୃଥକ୍ ପୃଥକ୍ ପ୍ରକାରରେ) [ପୁଣି] ବିନିଶ୍ଚିତୈଃ ହେତୁମଦ୍ଭିଃ (ସଂଶୟ ରହିତ ଯୁକ୍ତି ସହିତ) ବ୍ରହ୍ମସୂତ୍ର ପଦୈଃ ଏବ ଚ ବ୍ରହ୍ମସୂତ୍ରର ପଦମାନଙ୍କ ଦ୍ୱାରା ମଧ୍ୟ) ଗୀତଂ (ବ୍ୟାଖ୍ୟାତ ହୋଇଅଛି) ।

**ଅନୁବାଦ—**

ହେ ଅର୍ଜୁନ, ଏହି କ୍ଷେତ୍ର-କ୍ଷେତ୍ରଜ୍ଞ ତତ୍ତ୍ୱହିଁ ଋଷିମାନଙ୍କଦ୍ୱାରା ନାନା ପୃଥକ୍ ପୃଥକ୍ ଛନ୍ଦରେ ଗୀତ ହୋଇଛି ଏବଂ ସଂଶୟ ରହିତ-ଯୁକ୍ତିସିଦ୍ଧ ଭାଷାରେ ବ୍ରହ୍ମସୂତ୍ରରେ ମଧ୍ୟ ଏହା ବ୍ୟାଖ୍ୟାତ ହୋଇ ରହିଛି ।

**ବିଶ୍ଳେଷଣ ଭାଷ୍ୟ—**

ଏହି ଶ୍ଳୋକଟି ହିଁ ସୁପ୍ରମାଣିତ କରି ରଖୁଛି ଯେ, ଭଗବଦ୍ ଗୀତା ଏକ ସଙ୍କଳିତ ଗ୍ରନ୍ଥମାତ୍ର । ଭଗବାନଙ୍କ ଦ୍ୱାରା ଏହା ଭାଷିତ ନୁହେଁ, କୌଣସି ଏକ ଅସାଧାରଣ-ଅନ୍ତର୍ଦୃଷ୍ଟି ସଂପନ୍ନ ବ୍ୟକ୍ତିଙ୍କ ଦ୍ୱାରା ହିଁ ଏହା ସଂକଳିତ ବା ବିରଚିତ । ଏହି ଶ୍ଳୋକ ପରି, ଗୀତାର ଅନ୍ୟତ୍ର ମଧ୍ୟ ବାରଂବାର ଆମେ, ବେଦ, ଉପନିଷଦ, ସାଂଖ୍ୟ ଓ ବେଦାନ୍ତ ପ୍ରଭୃତିର ଏବଂ ମହାଯାନୀ ବୌଦ୍ଧବାଦର ପ୍ରତିଧ୍ୱନି ଶୁଣିବାକୁ ପାଉଛୁଁ । ହେଲେହେଁ, ବରେଣ୍ୟ ରଚୟିତାଙ୍କର ଅସାଧାରଣ ସମନ୍ୱୟକାରୀତା ଓ ଭାଷାରେ କାରୁଶୀଳତା, ଗୀତାକୁ ଏକ ଅପୂର୍ବ ପ୍ରଜ୍ଞାବନ୍ତ ଓ ଉପଭୋଗ୍ୟ ମୌଳିକ ଗ୍ରନ୍ଥରେ

ପରିଣତ କରିଦେଇଛି । ଏ ସଂପର୍କରେ ପରବର୍ତ୍ତୀ ଶ୍ଲୋକରେ 'ବିଶେଷ ଭାଷ୍ୟ'ର ତାତ୍ତ୍ୱିକ ଆଲୋଚନା ପ୍ରତି ପାଠକେ ଦୟାକରି ନଜର ଦିଅନ୍ତୁ ।

( ୫—୬ )

ମହାଭୂତାନ୍ୟହଂକାରୋ ବୁଦ୍ଧିରବ୍ୟକ୍ତ ମେବଚ
ଇନ୍ଦ୍ରିୟାଣି ଦଶୈକଂଚ ପଂଚ ଚେନ୍ଦ୍ରିୟ ଗୋଚରାଃ । ୫ ।

ଇଚ୍ଛା ଦ୍ୱେଷଃ ସୁଖଂ ଦୁଃଖଂ ସଂଘାତ ଶ୍ଚେତନା ଧୃତିଃ
ଏତତ୍ କ୍ଷେତ୍ରଂ ସମାସେନ ସବିକାର ମୁଦାହୃତଂ । ୬ ।

ମହାଭୂତାନ (ପଂଚ ମହାଭୂତ) ଅହଂକାରଃ ବୁଦ୍ଧିଃ ଅବ୍ୟକ୍ତଂ ଏବ ଚ (ଅବ୍ୟକ୍ତ ବା ମୂଳ-ପ୍ରକୃତି, ବୁଦ୍ଧି ଓ ଅହଂକାର) ଦଶଂ ଇନ୍ଦ୍ରିୟାଣି ଏକଂ ଚ(ଏକ ମନ ଓ ଦଶ ଇନ୍ଦ୍ରିୟ) ପଂଚ ଇନ୍ଦ୍ରିୟ ଗୋଚରାଃ ଚ (ପାଁଚ ଇନ୍ଦ୍ରିୟ ବିଷୟ) ଇଚ୍ଛା, ଦ୍ୱେଷଃ, ସୁଖଂ, ଦୁଃଖଂ, ସଂଘାତଃ (ଦେହ ଓ ଇନ୍ଦ୍ରିୟମାନଙ୍କର ସଂହତି) ଚେତନା, ଧୃତି (ଚେତନା ଓ ଧୈର୍ଯ୍ୟ)—ସବିକାରଂ ଏତଦ୍(ବିକାର ସହିତ ଏହିମାନେ) ସମାସେନ କ୍ଷେତ୍ରଂ ଉଦାହୃତଂ (ସମୁଦାୟ ଭାବରେ କ୍ଷେତ୍ର ବୋଲି କୁହା ହୋଇଥାନ୍ତି) ।

## ଅନୁବାଦ—

ହେ ଅର୍ଜୁନ, ଅବ୍ୟକ୍ତ ମହତ୍, ପଂଚମହାଭୂତ, ବୁଦ୍ଧି, ଅହଂକାର, ମନ ସହିତ ପଂଚ ଜ୍ଞାନେନ୍ଦ୍ରିୟ ଓ ପଂଚ କର୍ମେନ୍ଦ୍ରିୟ, ଇନ୍ଦ୍ରିୟମାନଙ୍କର ଭୋଗ-ଭୂମି ପାଂଚ ତନ୍ମାତ୍ର, ଇଚ୍ଛା-ଦ୍ୱେଷ, ସୁଖ ଦୁଃଖ, ଦେହ ଓ ଇନ୍ଦ୍ରିୟ ମାନଙ୍କର ସଂହତ ଏବଂ ସେ ସବୁ ଏକତ୍ର କରି ରଖିଥିବା ଚେତନା ଓ ଧୈର୍ଯ୍ୟ ଏବଂ ସେମାନଙ୍କର ପ୍ରତ୍ୟେକଟିର ସ୍ୱକୀୟ ବିକାର ସମୂହକୁ ସମଗ୍ର ଭାବରେ 'କ୍ଷେତ୍ର' ବୋଲିହିଁ କୁହାଯାଇଥାଏ ।

## ବିଶେଷ ଭାଷ୍ୟ—

ଗୀତା ଚତୁର୍ଥ ଶ୍ଲୋକରେ ସ୍ପଷ୍ଟ ସ୍ୱୀକାର କରୁଛନ୍ତି ଯେ, କ୍ଷେତ୍ର-କ୍ଷେତ୍ରଜ୍ଞ -ତତ୍ତ୍ୱ କିଛି ନୂଆ କଥା ନୁହେଁ । ଏହା ବେଦରେ ଅଛି—"ଋଷିଭିର୍ବହୁଧା ଗୀତଂ ଛନ୍ଦୋଭିର୍ବିବିଧୈଃ ପୃଥକ୍" । ତାପରେ ପୁଣି "ବ୍ରହ୍ମସୂତ୍ର ପଦୈଃ" କହିବା ଦ୍ୱାରା ଗୀତା କହୁଛନ୍ତି ଯେ, ଏହା ବେଦାନ୍ତ ଦର୍ଶନର ମୂଳଗ୍ରନ୍ଥ ବ୍ରହ୍ମସୂତ୍ରରେ ମଧ୍ୟ ପ୍ରତିପାଦିତ । ପୁଣି ପର ଶ୍ଲୋକ ଦୁଇଟିରେ(୫,୬ ରେ) ଯାହା'କ୍ଷେତ୍ର'(ଏତତ୍

କ୍ଷେତ୍ରଂ) ବୋଲି ବର୍ଣ୍ଣିତ, ତାହା ସାମାନ୍ୟ ପରିବର୍ତ୍ତିତ ସାଂଖ୍ୟ-ଦର୍ଶନର ପ୍ରଭାବ ମାତ୍ର । ଏସବୁ ସ୍ୱୀକୃତ ଅନ୍ତତଃ ଏତିକି ସ୍ପଷ୍ଟ ପ୍ରମାଣିତ କରୁଛି ଯେ ଗୀତା ଏ ସବୁର ବହୁ ପରେ ରଚିତ ହୋଇଥିଲା ।

ପୁଣି "ହେତୁମଦ୍‌ଭିଃ ବିନିଶ୍ଚିତୈଃ ବ୍ରହ୍ମସୂତ୍ର ପଦୈଃ" ( ନିଃସନ୍ଦେହ ଭାବରେ ହେତୁମନ୍ତ ବା ଯୁକ୍ତିଯୁକ୍ତ ବ୍ରହ୍ମସୂତ୍ର ପଦାବଳି ) ଦ୍ୱାରା ଗୀତା ହୁଏତ ଏଠାରେ ପ୍ରଚ୍ଛନ୍ନ ଭାବରେ ବୌଦ୍ଧଧର୍ମ ପ୍ରତି ଆଘାତ କରିଛନ୍ତି । ବୌଦ୍ଧଧର୍ମ "ହେତୁ ପ୍ରଭବ" ବା ଯୁକ୍ତି ପ୍ରତିଷ୍ଠ ବୋଲି ମୂଳରୁ ପରିଜ୍ଞାତ ଥିଲା । ଏଠାରେ ଗୀତା ହୁଏତ କହିବାକୁ ଯାଉଛନ୍ତି ଯେ, କେବଳ ବୌଦ୍ଧଧର୍ମ 'ହେତୁମତ୍' ନୁହେଁ, ବ୍ରହ୍ମସୂତ୍ର ମଧ୍ୟ ନିଃସନ୍ଦେହ ଭାବରେ 'ହେତୁ ମତ୍' । ଏବଂ ହେତୁମତ୍ ବା ନିଶ୍ଚୟାତ୍ମିକା ଯୁକ୍ତି ବଳରେ ବ୍ରହ୍ମସୂତ୍ର କ୍ଷେତ୍ର-କ୍ଷେତ୍ରଜ୍ଞ ତତ୍ତ୍ୱ ପ୍ରତିପାଦିତ କରୁଛି ; କିନ୍ତୁ ଏହା ଅବଶ୍ୟ ଜଣାକଥା ଯେ, ବୌଦ୍ଧଧର୍ମରେ "କ୍ଷେତ୍ର" ଅଛି, କିନ୍ତୁ 'କ୍ଷେତ୍ରଜ୍ଞ' ନାହାନ୍ତି । ସେହିପରି ମଧ୍ୟ ସାଂଖ୍ୟ-ଦର୍ଶନରେ । ବୁଦ୍ଧବାଦ ଓ ସାଂଖ୍ୟବାଦ ଉଭୟେ, ଏ ସୃଷ୍ଟିକୁ କେତେଗୁଡ଼ିଏ ଉପାଦାନର ରାସାୟନିକ ମିଶ୍ରଣ ଓ ମିଳନର ପରିଣତି ବୋଲି ହିଁ କହିଥାନ୍ତି । କୌଣସି ଏକ ସ୍ରଷ୍ଟା ( କ୍ଷେତ୍ରଜ୍ଞ ) ର ଅବସ୍ଥିତି ଏମାନେ ସ୍ୱୀକାର କରନ୍ତି ନାହିଁ ।

ସୃଷ୍ଟିର ଉପାଦାନ ଭାବରେ ସାଂଖ୍ୟର ୨୪ ତତ୍ତ୍ୱ ଓ ବୁଦ୍ଧଙ୍କ ପଞ୍ଚସ୍କନ୍ଧ ପରିବର୍ତ୍ତରେ ବେଦାନ୍ତ ନିର୍ଗୁଣ, ନିର୍ବିକାର ଏକ ବ୍ରହ୍ମକୁ କଳ୍ପନା କଲା, ସମଗ୍ର ସୃଷ୍ଟିର 'କ୍ଷେତ୍ର'ରୂପେ ଏବଂ ସାଂଖ୍ୟର ସହସ୍ର ସହସ୍ର ପୁରୁଷ ( ସହସ୍ର ଶୀର୍ଷାଃ-ବେଦ ) ପରିବର୍ତ୍ତରେ ଆଣି ଠିଆକଲା ଗୋଟିଏ ପୁରୁଷୋ-ତ୍ତମଙ୍କୁ । ସେ ଉପନିଷଦ୍ ମାନଙ୍କର ନିର୍ଗୁଣ ବ୍ରହ୍ମରହିଁ ସଗୁଣ ବିଭବ ଛଡ଼ା ଆଉ କିଛି ନୁହନ୍ତି, ଯାହାଙ୍କର ସାଧାରଣ ନାମ ହେଲା "ଈଶ୍ୱର" । ସେହି ଈଶ୍ୱର ହିଁ ଏହି ଅଧ୍ୟାୟର 'କ୍ଷେତ୍ରଜ୍ଞ' । ବେଦାନ୍ତ ଦର୍ଶନ ସାଂଖ୍ୟର 'ପୁରୁଷ' କଳ୍ପନାକୁ ଏ ପ୍ରକାରେ ରୂପାନ୍ତରିତ କରି, ତେଣେ ସାଂଖ୍ୟର 'ପ୍ରକୃତି'କୁ ବ୍ରହ୍ମର ଆଉ ଏକ ଅଙ୍ଗାଙ୍ଗୀ ବିଭବ ଭାବରେ 'ମାୟା' ନାମ ଦେଇ ମଧ୍ୟ ଠିଆ କଲା , କିନ୍ତୁ ବସ୍ତୁତଃ ସମାନ ରହିଲେ ସାଂଖ୍ୟ ଓ ବେଦାନ୍ତ ଉଭୟର 'କ୍ଷେତ୍ର' । ଏଠାରେ ଯେଉଁ 'କ୍ଷେତ୍ର' ବର୍ଣ୍ଣିତ ତାହା ପୂରାପୂରି ସାଂଖ୍ୟଦର୍ଶନର ହିଁ କହିଲେ ଚଳେ ।

ସାଂଖ୍ୟକାର କପିଳ ପ୍ରଖ୍ୟାପିତ କରିଥିଲେ ଯେ; ଏ ସୃଷ୍ଟି ୨୪ଟି ଉପାଦାନ ବା ତତ୍ତ୍ୱର ଘାତ-ପ୍ରତିଘାତ ବା କ୍ରିୟାପ୍ରତିକ୍ରିୟା ବଳରେହିଁ ନିତ୍ୟ ପ୍ରବହମାନ । ସେମାନଙ୍କ ଭିତରୁ ପ୍ରଧାନ ଦୁଇଟି ତତ୍ତ୍ୱ ହେଲେ—

ପୁରୁଷ ବା ଚେତନ ଓ ପ୍ରକୃତି ବା ଜଡ । ଏ ସୃଷ୍ଟିର ପ୍ରତ୍ୟେକ ଜୀବ ବା ବସ୍ତୁ ଜଡ ଓ ଚେତନ, ବା ପ୍ରକୃତି ଓ ପୁରୁଷର ମିଶ୍ରଣରେ ନିର୍ମିତ । ସୃଷ୍ଟିର ପ୍ରାକ୍‌କାଳରେ ଏହି ଦୁଇ ମୌଳିକ ତତ୍ତ୍ୱର ସାମଗ୍ରିକ ମିଶ୍ରଣ ଫଳରେ ପ୍ରଥମେ ଏକ ବିଶ୍ୱ-ଚେତନାର ଉଦ୍ଭବ ହୁଏ ଯାହାକୁ ଉଭୟ ମହତ୍ ଓ 'ଅବ୍ୟକ୍ତ' କୁହାଯାଏ । ସେହି ମହତ-ଚେତନାର ଅଂଶହିଁ ଆମର ବୁଦ୍ଧି ବା ବୋଧଶକ୍ତି । ସେହି ବୋଧଶକ୍ତିରୁ ହିଁ ଆସେ ଅହଙ୍କାର ବା 'ମୁଁ-ଭାବ' ଅର୍ଥାତ୍ ବ୍ୟକ୍ତିତ୍ୱ-ଭାବ । ଏହି ପ୍ରକାରେ 'ଅବ୍ୟକ୍ତ' ( ବା ମହତ୍ ) ଶେଷରେ 'ବ୍ୟକ୍ତତ୍ୱ' ପ୍ରାପ୍ତ ହୁଏ ।

ଏଣେ 'ଚେତନା' ( ପୁରୁଷ ) ବ୍ୟକ୍ତିତ୍ୱ ବା ଇଣ୍ଡିଭିଜୁୟାଲିଟି ( Individuality ) ପାଇଲା ବେଳକୁ, ତେଣେ 'ଜଡ' ( ପ୍ରକୃତି ) ନିଜକୁ ପ୍ରକାଶ କଲାଣି ରୂପ, ରସ, ଗନ୍ଧ, ଶବ୍ଦ, ସ୍ପର୍ଶ ରୂପକ ପଞ୍ଚ ତନ୍ମାତ୍ର ଭାବରେ । ଏହି ପଞ୍ଚ ତନ୍ମାତ୍ରକୁ ଭୋଗ କରିବା ପାଇଁ ବ୍ୟକ୍ତିତ୍ୱ-ଦେହରେ କ୍ରମେ ଫୁଟି ବାହାରିଲା ପଞ୍ଚ ଜ୍ଞାନେନ୍ଦ୍ରିୟ—ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ୍ ଓ ସେମାନଙ୍କର ନେତା ମନ । ଏବଂ ଏହି ଭୋଗକ୍ରିୟାକୁ ସମ୍ପନ୍ନ କରିବା ଲକ୍ଷ୍ୟରେ ବ୍ୟକ୍ତିତ୍ୱ ଭିତରୁ କ୍ରମେ ଉଦ୍ଭବ ମଧ୍ୟ ହେଲେ ପଞ୍ଚ କର୍ମେନ୍ଦ୍ରିୟ—ମୁଖ, ହସ୍ତ, ପଦ, ଜନନେନ୍ଦ୍ରିୟ ଓ ଉଦର । ତେଣେ ପଞ୍ଚ ତନ୍ମାତ୍ର, ଜୀବର ଭୋଗପାଇଁ କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ ଭାବରେ ଏହି ସ୍ଥୂଳ ସୃଷ୍ଟିରୂପେ ଦେଖାଦେଲେ । ଏମାନଙ୍କୁ ତେଣୁ ମହାଭୂତ କୁହାଯାଏ ।

ଏହିପରି ଭାବରେ ସ୍ଥୂଳରୁ ସୂକ୍ଷ୍ମ କ୍ରମେ କ୍ଷିତି ଓ ଅପ୍ ଆଦି ପଂଚ ସ୍ଥୂଳ ପ୍ରକୃତ + ପଞ୍ଚ ତନ୍ମାତ୍ର + ପଞ୍ଚଜ୍ଞାନେନ୍ଦ୍ରିୟ ଓ ମନ + ପଞ୍ଚ କର୍ମେନ୍ଦ୍ରିୟ + ଅହଙ୍କାର + ବୁଦ୍ଧି + ମହତ୍ + ପ୍ରକୃତି + ପୁରୁଷ = ୨୬ ତତ୍ତ୍ୱ । କିନ୍ତୁ ସାଧାରଣତଃ ତତ୍ତ୍ୱ ୨୫ଟି ବୋଲି ଧରା ଯାଇଥାଏ । ପରେ ଆମର ଉଭୟ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟମାନଙ୍କର ନେତା ଭାବରେ ମନକୁ ଏକ ସ୍ୱତନ୍ତ୍ର ସତ୍ତା ଦିଆଯିବାରୁ ତତ୍ତ୍ୱର ସଂଖ୍ୟା ୨୬ ହେବାର କଥା । ସାଂଖ୍ୟ ଦର୍ଶନରେ 'ମନ' ଆମ ଅହଙ୍କାର ବା 'ଇଗୋ'ର ସ୍ୱାତ୍ମବକ କ୍ରିୟା ମାତ୍ର । କିନ୍ତୁ ବେଦାନ୍ତ ଦର୍ଶନରେ ଏବଂ ଏହି ଗୀତାରେ 'ମନ'କୁ ଦୁର୍ଦ୍ଦମନୀୟ ସ୍ୱାତନ୍ତ୍ର୍ୟ ଦିଆଯାଇଛି ( ଅସଂଶୟ ମହାବାହୋ ମନୋ ଦୁର୍ନିଗ୍ରହଂ ଚଳଂ—ଗୀତା ୬ । ୩୫ ) । ଏବଂ ଉଭୟ ବୌଦ୍ଧ ଓ ବେଦାନ୍ତ ଦର୍ଶନରେ 'ମନନ' ( ଧ୍ୟାନ ) ଦେଇ ମନକୁ ଆୟତ୍ତ କରିବାହିଁ ମୁଖ୍ୟ ଧର୍ମ-ସାଧନା ।

ଏଠାରେ ଗୀତା ଯେଉଁ 'କ୍ଷେତ୍ର'ର ବର୍ଣ୍ଣନା ଦେଇଛନ୍ତି ତାହା ମୋଟା-ମୋଟି ସାଂଖ୍ୟର ୨୫ ତତ୍ତ୍ୱାବଳି, କିନ୍ତୁ ସେଥିରେ ବେଦାନ୍ତର ମନ ଯୁକ୍ତ ହୋଇଛି । ସପ୍ତମ ଅଧ୍ୟାୟ ଚତୁର୍ଥ ଶ୍ଲୋକରେ ( ଭୂମିରାପୋନଲୋ ବାୟୁଃ ଖଂ ମନୋ ବୁଦ୍ଧିରେବଚ ଅହଂକାରମିତୀୟଂ ମେ ଭିନ୍ନା ପ୍ରକୃତିରଷ୍ଟଧା ) ଗୀତା ଈଶ୍ୱରଙ୍କର 'ଅପର' ବା ସ୍ଥୂଳପ୍ରକୃତି ବୋଲି ଯାହା ବର୍ଣ୍ଣନା କରିଛନ୍ତି, ତ୍ରୟୋଦଶ ଅଧ୍ୟାୟର ଏହି ପଞ୍ଚ ଶ୍ଲୋକରେ ତାହାହିଁ 'କ୍ଷେତ୍ର' । ତେଣୁ ଏହା ପୁନରାବୃତ୍ତି ମାତ୍ର । ଯେହି ସପ୍ତମ ଅଧ୍ୟାୟରେ ଈଶ୍ୱରଙ୍କର ପର ବା ଶ୍ରେଷ୍ଠା ପ୍ରକୃତି ବୋଲି ଯାହା ବର୍ଣ୍ଣିତ, ଏ ଅଧ୍ୟାୟରେ ତାହାହିଁ 'କ୍ଷେତ୍ରଜ୍ଞ', ଅନ୍ୟ ବିଶେଷ କିଛି ନୁହେଁ । ଏହି 'କ୍ଷେତ୍ରଜ୍ଞ'ଙ୍କୁ କିପରି ଜାଣିବାକୁ ହେବ ଗୀତା ବର୍ତ୍ତମାନ ତାହାହିଁ ପରବର୍ତ୍ତୀ ଶ୍ଲୋକରେ ବର୍ଣ୍ଣନା କରିବାକୁ ଯାଉଛନ୍ତି ।

( ୭—୧୧ )

ଅମାନିତ୍ୱମଦମ୍ଭିତ୍ୱମହିଂସା କ୍ଷାନ୍ତିରାର୍ଜବଂ
ଆଚାର୍ଯ୍ୟୋପାସନଂ ଶୌଚଂ ସ୍ଥୈର୍ଯ୍ୟମାତ୍ମବିନିଗ୍ରହଃ । ୭ ।

ଇନ୍ଦ୍ରିୟାର୍ଥେଷୁ ବୈରାଗ୍ୟ ମନହଂକାର ଏବ ଚ
ଜନ୍ମ-ମୃତ୍ୟୁ ଜରା-ବ୍ୟାଧି ଦୁଃଖ ଦୋଷାନୁଦର୍ଶନଂ । ୮ ।

ଅସକ୍ତିରନଭିଷ୍ୱଙ୍ଗଃ ପୁତ୍ରଦାର ଗୃହାଦିଷୁ
ନିତ୍ୟଂ ଚ ସମଚିତ୍ତତ୍ୱ ମିଷ୍ଟାନିଷ୍ଟୋ ପପତ୍ତିଷୁ । ୯ ।

ମୟିଚାନନ୍ୟ ଯୋଗେନ ଭକ୍ତିରବ୍ୟଭିଚାରିଣୀ
ବିବିକ୍ତ ଦେଶ ସେବିତ୍ୱ ମରତିର୍ଜନ ସଂସଦି । ୧୦ ।

ଅଧ୍ୟାତ୍ମଜ୍ଞାନ ନିତ୍ୟତ୍ୱଂ ତତ୍ତ୍ୱ ଜ୍ଞାନାର୍ଥ ଦର୍ଶନଂ
ଏତଜ୍ଜ୍ଞାନମିତିପ୍ରୋକ୍ତମଜ୍ଞାନଂ ଯଦତୋଽନ୍ୟଥା । ୧୧ ।

ଅମାନିତ୍ୱଂ ( ଆତ୍ମ ପ୍ରଶଂସାର ଅଭାବ ) ଅଦମ୍ଭିତ୍ୱଂ ( ଦାମ୍ଭିକ ଭାବର ଅଭାବ ) ଅହିଂସା ( ପରକୁ ପୀଡା ଦେବାର ଅଭାବ ) କ୍ଷାନ୍ତିଃ ( କ୍ଷମାଶୀଳ ଭାବ ) ଆର୍ଜବଂ ( ସରଳତା ଅର୍ଥାତ୍ କପଟ-ତାର ଅଭାବ ) ଆଚାର୍ଯ୍ୟୋପାସନଂ ( ଗୁରୁସେବା ) ଶୌଚଂ ( ବାହ୍ୟ ଓ ଆଭ୍ୟନ୍ତରୀଣ ପବିତ୍ରତା ) ସ୍ଥୈର୍ଯ୍ୟଂ ( ଧୀରତା ) ଆତ୍ମ ବିନିଗ୍ରହଃ ( ଆତ୍ମ-ସଂଯମ ), ଇନ୍ଦ୍ରିୟାର୍ଥେଷୁ ବୈରାଗ୍ୟଂ ( ଇନ୍ଦ୍ରିୟମାନଙ୍କର ଭୋଗ

ବିଷୟରେ ନିସ୍ପୃହତା ) ଅନହଙ୍କାର ଏବ ଚ ( ପୁଣି ନିରହଙ୍କାର ଭବ ) ଜନ୍ମ-ମୃତ୍ୟୁ-ଜରା-ବ୍ୟାଧି ଦୁଃଖଦୋଷାନୁଦର୍ଶନଂ ( ଜନ୍ମ, ମୃତ୍ୟୁ, ବାର୍ଦ୍ଧକ୍ୟ, ବ୍ୟାଧି ଏହିସବୁ ନେଇ ଯେଉଁ ତଥାକଥିତ 'ଜୀବନ' ତା'ର ମୁଖ୍ୟ ତତ୍ତ୍ୱ 'ଦୁଃଖ'କୁ ଦେଖିପାରିବା ) ଅସକ୍ତିଃ ( କୌଣସି କର୍ମ ପ୍ରତି ଆସକ୍ତିର ଅଭାବ ) ପୁତ୍ରଦାର ଗୃହାଦିଷୁ ଅନଭିଷ୍ୱଙ୍ଗଃ ( ସ୍ତ୍ରୀ, ପୁତ୍ର, ଘର ଆଦିରେ ଆସକ୍ତିହୀନତା ) ଇଷ୍ଟାନଷ୍ଟୋପପତ୍ତିଷୁ ନତ୍ୟଂ ସମଚିତ୍ତତ୍ୱଂ ( ଇଷ୍ଟ ବା ଅନିଷ୍ଟ ଲାଭରେ ସର୍ବଦା ସମାନ ମାନସିକ ଅବସ୍ଥା), ମୟି ଚ ( ପୁଣି ମୋଠାରେ ଅର୍ଥାତ୍ ଈଶ୍ୱରଙ୍କଠାରେ ) ଅନନ୍ୟଯୋଗେନ ଅବ୍ୟଭିଚାରିଣୀ ଭକ୍ତିଃ ( ଅନନ୍ୟ ଓ ଅବିଚଳିତ ଭାବରେ ପ୍ରଦତ୍ତ ଭକ୍ତି । ବିବିକ୍ତ ଦେଶ ସେବିତ୍ୱଂ, ( ନିର୍ଜନ ସ୍ଥାନରେ ରହିବାକୁ ଭଲପାଇବା ) [ ଏବଂ ] ଜନସଂସଦି ଅରତିଃ ( ଜନସମାଜରେ ମିଶିବାକୁ ଅନିଚ୍ଛା ଅଧ୍ୟାତ୍ମଜ୍ଞାନନିତ୍ୟତ୍ୱଂ ( ଆଧ୍ୟାତ୍ମିକତା ଆଡକୁ ଚିରସ୍ଥାୟୀ ନିଷ୍ଠା ) ତତ୍ତ୍ୱଜ୍ଞାନାର୍ଥ ଦର୍ଶନଂ (ଜୀବନରେ ପରମାର୍ଥିକ ଜ୍ଞାନର ଆବଶ୍ୟକତା ଦେଖିପାରିବା ) ଏତଦ୍ ଜ୍ଞାନଂ ଇତି ପ୍ରୋକ୍ତଂ ( ଏହି ସବୁକୁ ହିଁ ପ୍ରକୃତ 'ଜ୍ଞାନ' କୁହାଯାଇଥାଏ ); ଯତ୍ ଅତଃ ଅନ୍ୟଥା ( ଯାହା ଏହାଠାରୁ ବିପରୀତ ) [ ତାହା ] ଅଜ୍ଞାନଂ ( ଅଜ୍ଞାନତା ) [ ବୋଲି ଜାଣିବ ] ।

**ଅନୁବାଦ—**

ହେ ଅର୍ଜୁନ, ଆତ୍ମ-ପ୍ରଶଂସାର ଅଭାବ, ଦାମ୍ଭିକତାର ଅଭାବ, ପରକୁ ପୀଡା ଦେବାର ଅଭାବ, କ୍ଷମାଶୀଳତା, ଅକପଟତା, ଗୁରୁଭକ୍ତି, ବାହ୍ୟ ଓ ଆଭ୍ୟନ୍ତରୀଣ ସ୍ୱଚ୍ଛତା, ଧୀରତା, ଆତ୍ମ-ସଂଯମ, ଇନ୍ଦ୍ରିୟମାନଙ୍କର ସନ୍ତୋଷ ବିଧାନ ବିଷୟରେ ଅନୁତ୍ସାହ, ଅହଙ୍କାରଶୂନ୍ୟତା, ଜନ୍ମ-ମୃତ୍ୟୁ-ଜରା-ବ୍ୟାଧି-ସମନ୍ୱିତ ଯେଉଁ ଜୀବନ, ତାର ମୂଳ-ତତ୍ତ୍ୱ 'ଦୁଃଖ' ସଂପର୍କରେ ଅନୁଚିନ୍ତନ, ସ୍ତ୍ରୀ-ପୁତ୍ର-ଘର-ସଂସାର ପ୍ରତି ଅନାସକ୍ତି, ଇଷ୍ଟ ଆସୁ ବା ଅନିଷ୍ଟ ଆସୁ ସମଚିତ୍ତ ହୋଇ ରହିବା, ଏବଂ ଈଶ୍ୱରଙ୍କଠାରେ ଏକନିଷ୍ଠ ଭକ୍ତି ରଖିବା, ସାମାଜିକ ଗହଳି ପ୍ରତି ବୀତଶ୍ରଦ୍ଧ ହୋଇ ନିର୍ଜନ ସ୍ଥାନକୁ ଭଲପାଇବା, ସର୍ବଦା ଅଧ୍ୟାତ୍ମଜ୍ଞାନ ପ୍ରତି ସଚେତନ ରହି ସେହି ସୂତ୍ରରେ ଜୀବନର ତତ୍ତ୍ୱ ଖୋଜି ଚାଲିବା—ଏହି ସବୁକୁ ହିଁ ପ୍ରକୃତ 'ଜ୍ଞାନ' କୁହାଯାଏ । ଯା ଛଡା ବା ଏ ସବୁର ବିପରୀତକୁ ଅ-ଜ୍ଞାନ ବୋଲି ହିଁ ଧରିନେବ ।

**ବିଶେଷ ଭାଷ୍ୟ—**

ଏହି ଅଧ୍ୟାୟର ଆରମ୍ଭରେ ଗୀତା 'ଜ୍ଞାନ' ଓ 'ଜ୍ଞେୟ' କ'ଣ ତାହା ବୁଝେଇବେ ବୋଲି କହିଛନ୍ତି । ଗୀତା ବର୍ତ୍ତମାନ ତାହାହିଁ କରୁଛନ୍ତି । ପରବର୍ତ୍ତୀ

ଶ୍ଳୋକରେ 'ଜ୍ଞେୟ' ବର୍ଣ୍ଣିତ ହେବେ—ଅର୍ଥାତ୍ ଈଶ୍ୱର ହିଁ ଏ ଜୀବନର ଶ୍ରେଷ୍ଠ ବା ଏକକ 'ଜ୍ଞେୟ' ବସ୍ତୁ । ତାଙ୍କୁ 'ଜାଣିବା'·ଅର୍ଥ ଅନୁଭବ କରିବା । ଯେଉଁ ଯେଉଁ ପ୍ରକ୍ରିୟା ବା ଅଭ୍ୟାସ ଦ୍ୱାରା ସେହି 'ଜ୍ଞେୟଂ'କୁ ଜାଣି ହେବ ବା ଅନୁଭବ କରହେବ, ତାହାହିଁ ପ୍ରକୃତ 'ଜ୍ଞାନ' । ଆଉ ସବୁ ଅ-ଜ୍ଞାନ । ଅର୍ଥାତ୍ 'କ୍ଷେତ୍ର' ବା ଦେହଟାକୁ 'କ୍ଷେତ୍ରଜ୍ଞ' ମନେ କରିବସିବା ବା ସେ ପ୍ରକାର ଅନୁଭବରେ ଯାହା ସହାୟତା ଆଣି ଦେଇଥାଏ, ସେ ସମସ୍ତ ହିଁ ଅ-ଜ୍ଞାନ । ଆମର ଏହି ଦେହରୂପକ ଜଡ 'କ୍ଷେତ୍ର'କୁ ଯେଉଁ ସତ୍ତା ଫଳ-ପୁଷ୍ପ-ମୟ କରପାରନ୍ତି ସେହି କ୍ଷେତ୍ରଜ୍ଞଂକୁ ଜାଣିବାର ପନ୍ଥା ହିଁ ପ୍ରକୃତ 'ଜ୍ଞାନ' ।

( ୧୨ )

ଜ୍ଞେୟଂ ଯତ୍ତତ୍ ପ୍ରବକ୍ଷ୍ୟାମି ଯଜ୍ଜ୍ଞାତ୍ୱାମୃତମଶ୍ନୁତେ
ଅନାଦିମତ୍ ପରଂବ୍ରହ୍ମ ନ ସତ୍ତନ୍ନାସଦୁଚ୍ୟତେ । ୧୨ ।

ଯତ୍ଜ୍ଞେୟଂ ( ଯାହା ଜାଣିବାର କଥା ) [ ଏବଂ ] ଯତ୍ଜ୍ଞାତ୍ୱା ( ଯାହା ଜାଣିଲେ [ ସାଧକ ] ଅମୃତଂ ( ଜନ୍ମ-ମୃତ୍ୟୁରୁ ମୁକ୍ତି ) ଅଶ୍ନୁତେ ( ଲାଭ କରନ୍ତି ), ତତ୍ ( ତାହା ) ପ୍ରବକ୍ଷ୍ୟାମି ( କହିବି ) ତତ୍ ( ତାଙ୍କୁ ) ଅନାଦିମତ୍ ( ଆଦି ବିବର୍ଜିତ ) ପରଂବ୍ରହ୍ମ ( ପରମବ୍ରହ୍ମ ) ନ ସତ୍, ନ ଅସତ୍ ( ସତ୍ ନୁହନ୍ତି କି ଅସତ୍ ନୁହନ୍ତି [ ବୋଲି ] ଉଚ୍ୟତେ ( କୁହାଯାଏ )

**ଅନୁବାଦ—**

ହେ ଅର୍ଜୁନ, 'ଜ୍ଞାନ' ତ କହିଲି ; ସେହି ଜ୍ଞାନ ବା ଅନୁଭବ ଦେଇ ବିଶ୍ୱରେ କେବଳ ଯେଉଁ ଏକକ ଯଥାର୍ଥରେ 'ଜ୍ଞେୟ' ତାହା ମଧ୍ୟ କହେଁ । ସେହି 'ଜ୍ଞେୟଂ'କୁ ଜାଣିଲା ବା ଅନୁଭବ କଲାପରେ ତୁମେ ସହଜରେ ମୃତ୍ୟୁକୁ ଅତିକ୍ରମ କରପାରିବ । ଯିଏ ସତ୍ ଓ ଅସତର ଊର୍ଦ୍ଧ୍ୱରେ, ଯିଏ ଆଦିବର୍ଜିତ ଯାହାଙ୍କର ଅନ୍ୟନାମ ପରଂବ୍ରହ୍ମ, ସେହିହିଁ ଏ ଜଗତରେ ଏକମାତ୍ର ଜ୍ଞେୟ ବସ୍ତୁ ।

( ୧୩ )

ସର୍ବତଃ ପାଣିପାଦଂତତ୍ ସର୍ବତୋଽକ୍ଷିଶିରୋମୁଖଂ
ସର୍ବତଃ ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି । ୧୩ ।

ତତ୍ ( ସେହି ବ୍ରହ୍ମ ) ସର୍ବତଃ ପାଣିପାଦଂ ( ସର୍ବତ୍ର ହସ୍ତପଦବିଶିଷ୍ଟ ) ସର୍ବତୋଽକ୍ଷିଶିରୋମୁଖଂ ( ସର୍ବତ୍ର ଆଖି, ମୁଣ୍ଡ ଓ ପାଟି-ବିଶିଷ୍ଟ ) ସର୍ବତଃ ଶ୍ରୁତିମତ୍ ( ସର୍ବତ୍ର କର୍ଣ୍ଣବିଶିଷ୍ଟ ) [ ହୋଇ ] ଲୋକେସର୍ବଂ ଆବୃତ୍ୟ ( ସଂସାରରେ ସମସ୍ତ ପଦାର୍ଥ ଆବୃତ କରି ) ତିଷ୍ଠତି ( ଅବସ୍ଥାନ କରନ୍ତି ) ।

ଅନୁବାଦ—

ହେ ଅର୍ଜୁନ, ସେହି ପରଂବ୍ରହ୍ମ ଅଦୃଶ୍ୟ ଓ ସତ୍ ଅସତ୍‌ର ବାହାରେ ହେଲେହେଁ, ମନେରଖିବ ଯେ ତାଙ୍କର ହାତ, ଗୋଡ, ଆଖି, ମୁଖ, ମୁଣ୍ଡ ଓ କାନ ଏହି ସୃଷ୍ଟିର ସର୍ବତ୍ର । ବିଶ୍ୱରେ ଏପରି କୌଣସି ସ୍ଥାନ, ଜୀବ ବା ବସ୍ତୁ ନାହିଁ ଯେ ବା ଯାହା ତାଙ୍କରି ଦ୍ୱାରା ସମଗ୍ର ଭାବରେ ଆବୃତ ନୁହେଁ ।

ବିଶେଷ ଭାଷ୍ୟ—

ଶ୍ୱେତାଶ୍ୱେତର ଉପନିଷଦ (୩/୧୬) ରେ ଏହି ଶ୍ଳୋକଟି ଅବିକଳ ଭାବରେ ଦେଖାଯାଏ—

ସର୍ବତଃ ପାଣିପାଦଂ ତତ୍ ସର୍ବତୋଽକ୍ଷିଶିରୋମୁଖଂ
ସର୍ବତଃ ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ।

ସେହି ଉପନିଷଦର ଅନ୍ୟତ୍ର ( ୩/୩ ) ମଧ୍ୟ ସମଭାବ ପ୍ରକାଶିତ—

ବିଶ୍ୱତଶ୍ଚକ୍ଷୁରୁତ ବିଶ୍ୱତୋମୁଖୋ
ବିଶ୍ୱତୋବାହୁରୁତ ବିଶ୍ୱତସ୍ପାତ୍

ସଂ ବାହୁଭ୍ୟାଂଧମତି ସଂପତତ୍ରୈ
ଦ୍ୟାବା ଭୂମୀ ଜନୟନ୍ ଦେବ ଏକଃ ।

ଏ ବିଶ୍ୱରେ ଯେତେ ଆଖି, ମୁହଁ, ହାତ, ପାଦସବୁ ତାଙ୍କରି । ସେହିହିଁ ମନୁଷ୍ୟମାନଙ୍କୁ ବାହୁସଂଯୁକ୍ତ କରନ୍ତି, ପକ୍ଷୀମାନଙ୍କୁ ପକ୍ଷଯୁକ୍ତ କରନ୍ତି ଏବଂ ଭୂଲୋକ ଓ ଦ୍ୟୁଲୋକ ସୃଷ୍ଟି କରି ତାହାର ଅଦ୍ୱିତୀୟ ପ୍ରକାଶକରୂପେ ବିରାଜିତ ) ।

( ୧୪ )

ସର୍ବେନ୍ଦ୍ରିୟ ଗୁଣାଭାସଂ ସର୍ବେନ୍ଦ୍ରିୟ ବିବର୍ଜିତଂ
ଅସକ୍ତଂ ସର୍ବଭୃଚ୍ଚୈବ ନିର୍ଗୁଣଂ ଗୁଣଭୋକ୍ତୃ ଚ ।୧୪।

[ସେ] ସର୍ବେନ୍ଦ୍ରିୟ ଗୁଣାଭାସଂ (ସମସ୍ତ ଇନ୍ଦ୍ରିୟ ଓ ସେମାନଙ୍କର ଗୁଣର ପ୍ରକାଶକ) ସର୍ବେନ୍ଦ୍ରିୟ ବିବର୍ଜିତଂ [ଅଥଚ] (ସମସ୍ତ ଇନ୍ଦ୍ରିୟ ବର୍ଜିତ) ଅସକ୍ତଂ (ନିଃସଙ୍ଗ) ସର୍ବଭୃତ୍ ଏବ ଚ (ଏବଂ ସର୍ବଜୀବ ଓ ବସ୍ତୁର ଆଧାର ସ୍ୱରୂପ) ନିର୍ଗୁଣଂ (ଗୁଣରହିତ) [ଅଥଚ] ଗୁଣଭୋକ୍ତୃ (ସକଳ ଗୁଣର ଭୋକ୍ତା) ।

## ଅନୁବାଦ—

ହେ ଅର୍ଜୁନ, ସେହି ପରଂବ୍ରହ୍ମ ଆପାତତଃ ସର୍ବେନ୍ଦ୍ରିୟ ବର୍ଜିତ ହେଲେ ହେଁ ସକଳ ଇନ୍ଦ୍ରିୟର ଗୁଣଗୁଡ଼ିକ ତାଙ୍କଠାରେ ପରିସ୍ଫୁଟ, ସେ ନିଃସଙ୍ଗ ଅଥଚ ବିଶ୍ୱର ସକଳ ଜୀବର ପୋଷକ; ସେ ଆପାତ ଗୁଣଶୂନ୍ୟ ହେଲେ ହେଁ ପ୍ରକୃତିସ୍ଥ ତ୍ରିଗୁଣର ସେହିହିଁ ଏକମାତ୍ର ଭୋକ୍ତା ।

## ବିଶେଷ ଭାଷ୍ୟ—

ଏହି ଶ୍ଳୋକଟି ଶ୍ୱେତାଶ୍ୱେତର ଉପନିଷଦର (୩/୧୭) ନିମ୍ନ ଶ୍ଳୋକଟିର ପ୍ରତିଧ୍ୱନି ବୋଲିହିଁ ପାଠକେ ଜାଣି ରଖିବେ ।

ସର୍ବେନ୍ଦ୍ରିୟ ଗୁଣାଭାସଂ ସର୍ବେନ୍ଦ୍ରିୟ ବିବର୍ଜିତଂ
ସର୍ବସ୍ୟ ପ୍ରଭୁମୀଶାନଂ ସର୍ବସ୍ୟ ଶରଣଂ ସୁହୃତ୍

କିନ୍ତୁ ସମଗ୍ର ଶ୍ୱେତାଶ୍ୱେତର ଉପନିଷଦଟି ହେଲା ଶିବ-କେନ୍ଦ୍ରିକ । ଏହି ଶ୍ଳୋକଟି ମଧ୍ୟ ସେହି 'ଈଶାନ' ବା ଶିବଙ୍କୁ ଲକ୍ଷ୍ୟ କରି କୁହାଯାଇଛି । ଏବଂ ଠିକ୍ ସେହି ଏକାପରି ଗୁଣାବଳି ବିଷ୍ଣୁ ବା ଶ୍ରୀକୃଷ୍ଣଙ୍କ ପ୍ରତି ଆରୋପ କରାଯାଇଛି ଏଠାରେ, ଗୀତାରେ । ପଣ୍ଡିତମାନଙ୍କ ମତରେ, ମହାଭାରତରେ, ଇନ୍ଦ୍ର, ବରୁଣାଦି ବୈଦିକ ଦେବତାମାନଙ୍କ ସ୍ଥାନରେ ଶେଷକୁ ଶିବ ଓ କୃଷ୍ଣ (ବିଷ୍ଣୁ) ଏହି ଦୁଇ ଦେବତାର ଆରାଧନା ହିଁ ପ୍ରତିଷ୍ଠିତ କରାଯାଇଛି । ମହାଭାରତରେ ଶ୍ରୀକୃଷ୍ଣ ନିଜେ ଶିବୋପାସନା କରିଛନ୍ତି । ଅଥଚ ପରେ ସେ ନିଜେ ଉପାସିତ ଦେବତା ହୋଇ ଉଠିଛନ୍ତି । ଭଗବଦ୍ ଗୀତା ଓ ଶ୍ୱେତାଶ୍ୱତର ଉପନିଷଦ୍‌ର ଭାବୈକ୍ୟ ଓ ଶୈଳୀସାମ୍ୟ ପାଠକକୁ ବିସ୍ମିତ କରାଏ । ଗୀତାରେ ଶ୍ୱେତାଶ୍ୱତରର ବହୁ ଶ୍ଳୋକ ଆକ୍ଷରିକ ସଂଗୃହୀତ ହୋଇଥିବାର ଦେଖିଲେ, ଏହି ଦୁଇଟିଯାକ ଗ୍ରନ୍ଥର ଏକ ଲକ୍ଷ୍ୟ, ଅର୍ଥାତ ବେଦର ବହୁ ଦେବତା ସ୍ଥାନରେ ବା ମହାଯାନୀ ବୌଦ୍ଧମାନଙ୍କର ଆଦି--ବୁଦ୍ଧ-ଆରାଧନା ସ୍ଥାନରେ, ଏକ ସମାନ୍ତରାଳ ବ୍ରାହ୍ମଣ୍ୟ ଅଧିଦେବତାକୁ ପୀଠସ୍ଥ କରାଇବାରେ ସମାନ୍ତରାଳ ପ୍ରଚେଷ୍ଟା ମାତ୍ର ବୋଲି ଭାବିବାର ଯଥେଷ୍ଟ କାରଣ ଅଛି । ହିନ୍ଦୁ ପାଠକେ ଚିନ୍ତାକଲେ ସହଜରେ ଧରିପାରିବେ ଯେ ଏବକୁ

ହିନ୍ଦୁମାନଙ୍କର ଆରାଧ୍ୟ ଦେବତା ମୁଖ୍ୟତଃ ଏହି ଦୁଇ,-ଶିବ ଓ ବିଷ୍ଣୁ । ପୁଣି ହିନ୍ଦୁମାନଙ୍କର ସ୍ତ୍ରୀ-ଦେବତା ମଧ୍ୟ ଏହି ଦୁଇ ଜଣଙ୍କର ହିଁ ପତ୍ନୀ । ଶିବ-ପତ୍ନୀ କାଳୀ ବା ଦୁର୍ଗା, ପୁଣି ବିଷ୍ଣୁ-ପତ୍ନୀ ଉଭୟ ଲକ୍ଷ୍ମୀ ଓ ସରସ୍ୱତୀ । ଶିବ-କେନ୍ଦ୍ରିକ ଶ୍ୱେତାଶ୍ୱତର ଉପନିଷଦ ମଧ୍ୟ ଭଗବଦ୍ ଗୀତାପରି ଅପୂର୍ବ କାବ୍ୟଗୁଣ ସଂପନ୍ନ । କିନ୍ତୁ ଗୀତାରେ ଯେପରି ମଂଜୁଳ ଭାବରେ ସର୍ବମତର ସମନ୍ୱୟ ଘଟିଛି ଏବଂ ଯେପରି ଅଳ୍ପ ପରିସର ଭିତରେ ସମଗ୍ର ହିନ୍ଦୁ ଜୀବନାଦର୍ଶ ପ୍ରକଟିତ ହୋଇଛି, ଶ୍ୱେତାଶ୍ୱତର ବା ଅନ୍ୟ କୌଣସି ଗ୍ରନ୍ଥରେ ତାହା ହୋଇପାରି ନାହିଁ । ତାହାହିଁ ଗୀତାକୁ ଭାରତବର୍ଷରେ ଦେଇପାରିଛି ଅନନ୍ୟସାଧାରଣ ଜନପ୍ରିୟତା, ସର୍ବ ଶ୍ରେଣୀର ପାଠକମାନଙ୍କ ନିକଟରେ ।

( ୧୫ )

ବହିରନ୍ତଶ୍ଚ ଭୂତାନାମଚରଂ ଚରମେବ ଚ
ସୂକ୍ଷ୍ମତ୍ୱାତ୍ ତଦବିଜ୍ଞେୟଂ ଦୂରସ୍ଥଂ ଚାନ୍ତିକେ ଚ ତତ୍ ।୧୫।

ତତ୍ (ସେହି ବ୍ରହ୍ମ) ଭୂତାନାଂ ବହିଃ ଅନ୍ତଃ ଚ (ଜୀବମାନଙ୍କର ବାହାରେ ଓ ଭିତରେ) । [ସେ] ଅଚରଂ ଚରଂ ଏବ ଚ (ସେ ଚଳମାନ ଓ ଅଚଳ ମଧ୍ୟ) । ସୂକ୍ଷ୍ମତ୍ୱାତ୍ ଅବିଜ୍ଞେୟଂ (ଅତି ସୂକ୍ଷ୍ମ ହୋଇଥିବାରୁ ତାଙ୍କୁ କେହି ଜାଣିପାରନ୍ତି ନାହିଁ) । [ସେ] ଦୂରସ୍ଥଂ (ଦୂରସ୍ଥ) [ହେଲେହେଁ] ଅନ୍ତିକେ ଚ (ନିକଟରେ ମଧ୍ୟ ଥାନ୍ତି) ।

ଅନୁବାଦ—

ହେ ଅର୍ଜୁନ, ସେହି ବ୍ରହ୍ମ ଜୀବମାନଙ୍କର ଭିତରେ, ବାହାରେ ଥାଆନ୍ତି । ସେ ଚଳ ଓ ଅଚଳ ଉଭୟ ରୂପେ ପ୍ରକାଶିତ ଏବଂ ଯଦିଓ ଅତିସୂକ୍ଷ୍ମତା ହେତୁ ତାଙ୍କୁ କେହି ଚିହ୍ନି ପାରନ୍ତି ନାହିଁ ବା ଆମଠାରୁ ଦୂରସ୍ଥ ମନେ ହୁଅନ୍ତି, ତଥାପି ଜାଣିରଖ ଯେ, ସେ ସର୍ବଦା ଜୀବର ନିକଟରେ ।

( ୧୬ )

ଅବିଭକ୍ତଂ ଚ ଭୂତେଷୁ ବିଭକ୍ତମିବ ଚ ସ୍ଥିତଂ
ଭୂତଭର୍ତ୍ତୃ ଚ ତଜ୍ଜ୍ଞେୟଂ ଗ୍ରସିଷ୍ଣୁ ପ୍ରଭବିଷ୍ଣୁ ଚ । ୧୬ ।

ତତ୍ (ସେହି ବ୍ରହ୍ମ) ଅବିଭକ୍ତଂ (ଅବିଚ୍ଛିନ୍ନ ରହି ମଧ୍ୟ) ଭୂତେଷୁ ବିଭକ୍ତମିବ ସ୍ଥିତଂ (ସର୍ବଜୀବ ଭିତରେ ସତେ ଯେପରି ଅଲଗା ଅଲଗା ରହିଛନ୍ତି) । [ତାହାଙ୍କୁ]

ଭୂତଭର୍ତ୍ତୃ (ସର୍ବଭୂତର ପାଳନ କର୍ତ୍ତା) [ପୁଣି] ଗ୍ରସିଷ୍ଣୁ (ସେହିମାନଙ୍କର ଗ୍ରାସକର୍ତ୍ତା) [ପୁଣି] ପ୍ରଭବିଷ୍ଣୁ ଚ ଜ୍ଞେୟଂ (ସୃଷ୍ଟିକର୍ତ୍ତା ବୋଲି ଜାଣିବ)।

## ଅନୁବାଦ—

ହେ ଅର୍ଜୁନ, ସେହି ବ୍ରହ୍ମ ଅବିଭକ୍ତ, ଯଦିଓ ସେ ଅଗଣିତ ଜୀବମାନଙ୍କ ଭିତରେ ବହୁଧା ବିଭକ୍ତ ହୋଇ ପ୍ରତିଷ୍ଠିତ ଥିବାର ଜଣାପଡନ୍ତି । ସେ ସର୍ବଜୀବର ପାଳକ ଅଥଚ ତାଙ୍କୁ ମଧ୍ୟ ଜାଣିବ ଯେ ସେ ନିଜେ ଜନ୍ମକଲା ଜୀବ ଗ୍ରାମକୁ ପୁଣି ସେ ନିଜେ ହିଁ ଗ୍ରାସ କରିଥାନ୍ତି ।

( ୧୭ )

ଜ୍ୟୋତିଷାମପିତ ଜ୍ୟୋତିସ୍ତମସଃ ପରମୁଚ୍ୟତେ
ଜ୍ଞାନଂ ଜ୍ଞେୟଂ ଜ୍ଞାନଗମ୍ୟଂ ହୃଦି ସର୍ବସ୍ୟ ବିଷ୍ଠିତଂ । ୧୭ ।

ତତ୍ (ସେହି ବ୍ରହ୍ମ) ତମସଃ ପରଂ ଉଚ୍ୟତେ (ଅବିଦ୍ୟା ରୂପକ ଅନ୍ଧକାରର ପର ବା ଅପର ପାର୍ଶ୍ୱ ବୋଲି କୁହାଯାଏ) [ଏବଂ] ଜ୍ୟୋତିଷାଂ ଅପି ଜ୍ୟୋତିଃ ଉଚ୍ୟତେ (ସୂର୍ଯ୍ୟ ପ୍ରଭୃତି ଜ୍ୟୋତିର୍ମୟ ବସ୍ତୁମାନଙ୍କର ଜ୍ୟୋତି)। [ସେହିହିଁ] ଜ୍ଞାନଂ ଜ୍ଞେୟଂ ଜ୍ଞାନଗମ୍ୟଂ(ଜ୍ଞାନ, ଜ୍ଞାତବ୍ୟ ଓ ଜ୍ଞାନଦ୍ୱାରହିଁ ବୋଧ୍ୟ) [ଏବଂ] ସର୍ବସ୍ୟ ହୃଦି ବିଷ୍ଠିତଂ (ସମସ୍ତଙ୍କ ହୃଦୟରେ ଅବସ୍ଥିତ)

## ଅନୁବାଦ—

ହେ ଅର୍ଜୁନ, ଏହି ମାୟାମୋହିତ ସଂସାର-ଅନ୍ଧକାରର ଆରପଟେ ସେ ଜ୍ୟୋତିରୂପେ ଅବସ୍ଥିତ । ସେହିହିଁ ଏ ସଂସାରରେ ଏକମାତ୍ର ଜ୍ଞେୟ ବସ୍ତୁ । ସେହି ହିଁ ଆମର ସକଳ ଜ୍ଞାନ ବା ଅନୁଭବ । ପୁଣି ସେ ଇନ୍ଦ୍ରିୟମାନଙ୍କ ଦ୍ୱାରା ଜ୍ଞାତ ନ ହୋଇ, ଜ୍ଞାନଦ୍ୱାରା ହିଁ ଆମର ଜ୍ଞାତ ହୋଇଥାନ୍ତି ।

## ବିଶେଷ ଭାଷ୍ୟ—

ଶ୍ୱେତାଶ୍ୱତର ଉପନିଷଦ (୩/୮) ରେ ମଧ୍ୟ ଆମେ ଠିକ୍ ଏହି ଭାବ ପାଉଁ—

ବେଦାହମେତଂ ପୁରୁଷଂ ମହାନ୍ତଂ
ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।

( ୧୮ )

ଇତିକ୍ଷେତ୍ରଂ ତଥା ଜ୍ଞାନଂ ଜ୍ଞେୟଂ ଚୋକ୍ତଂ ସମାସତଃ
ମଦ୍‌ଭକ୍ତ ଏତଦ୍ ବିଜ୍ଞାୟ ମଦ୍‌ଭାବାୟୋ ପପଦ୍ୟତେ । ୮।

ଇତି (ଏହି) କ୍ଷେତ୍ରଂ ତଥା ଜ୍ଞାନଂ ଜ୍ଞେୟଂ ଚ (କ୍ଷେତ୍ର, ଜ୍ଞେୟ ଓ ଯାହା ଜ୍ଞାତବ୍ୟ) [ତାହା] ସମାସେନ ଉକ୍ତଂ (ସଂକ୍ଷେପରେ କଥିତ ହେଲା) । ମଦ୍‌ଭକ୍ତଃ (ମୋର ଭକ୍ତ) ଏତତ୍ ବିଜ୍ଞାୟ (ଏହା ଜାଣି) ମଦ୍‌ଭାବାୟ (ମୋଠି ଭବାନ୍ବିତ ହେବା ଦିଗରେ) ଉପପଦ୍ୟତେ (ଉପଯୁକ୍ତ ହୁଏ) ।

**ଅନୁବାଦ—**

ହେ ଅର୍ଜ୍ଜୁନ, କ୍ଷେତ୍ର, କ୍ଷେତ୍ରଜ୍ଞ ସଂପର୍କରେ, ପୁଣି ଜ୍ଞାନ ଓ ଜ୍ଞେୟ ସମ୍ପର୍କରେ ଯାହା ଜ୍ଞାତବ୍ୟ ତାହା ସଂକ୍ଷେପରେ କୁହାଗଲା । ମୋର (ଈଶ୍ୱରଙ୍କର) ଭକ୍ତ ଏ ସବୁର ଅବବୋଧ ଫଳରେହିଁ ମୋ-ଭବରେ ଭବାନ୍ବିତ ହେବା ଦିଗରେ ଉପଯୁକ୍ତ ହୋଇଥାନ୍ତି ।

**ବିଶେଷ ଭାଷ୍ୟ —**

୧୨ରୁ ଏହି ୧୮ ଶ୍ଳୋକ ପର୍ଯ୍ୟନ୍ତ ପାଠକେ କେବଳ ତତ୍ (ସେହି କ୍ଲୀବ ଲିଙ୍ଗ ବ୍ରହ୍ମ) ର ବର୍ଣ୍ଣନା ଶୁଣି ଆସୁଥିଲେ । କିନ୍ତୁ ହଠାତ୍ ଏହି ୧୮ ଶ୍ଳୋକର ଶେଷ ପାଦରେ 'ମତ୍' (ମୋର)—ମଦ୍‌ଭବାୟୋପପଦ୍ୟତେର ପ୍ରୟୋଗ ଲକ୍ଷ୍ୟ କରିବେ । ଲେଖକ ବରାବର ଏହା କହିଆସୁଛି ଯେ, ଗୀତା ଅନ୍ୟାନ୍ୟ ଉପନିଷଦ ପରି ପ୍ରଥମେ "ବ୍ରହ୍ମ-ବିଦ୍ୟାୟାଂ ଯୋଗଶାସ୍ତ୍ରେ" ବା ବ୍ରହ୍ମତତ୍ତ୍ୱର ଏକ ଗ୍ରନ୍ଥ ମାତ୍ର ଥିଲେ ହେଁ, ସେଥିରେ କ୍ରମେ ସୂକ୍ଷ୍ମ, ସର୍ବବ୍ୟାପ୍ତ, ନିର୍ଗୁଣ ବ୍ରହ୍ମ ସ୍ଥାନରେ ରକ୍ତ ମାଂସଧାରୀ ଐତିହାସିକ ବ୍ୟକ୍ତିତ୍ୱସଂପନ୍ନ ଶ୍ରୀକୃଷ୍ଣଙ୍କୁ ଠିଆ କରାଯାଇଛି, ଠିକ୍ ଯେପରି ଶ୍ୱେତାଶ୍ୱେତର ଉପନିଷଦରେ ଠିଆକରାଯାଇଛି ଶିବଙ୍କୁ, କିନ୍ତୁ ଶିବ ମଧ୍ୟ ବ୍ରହ୍ମପରି ଏକ କଳ୍ପନାର ବସ୍ତୁ ମାତ୍ର । ଐତିହାସିକ ନୁହନ୍ତି । ପୁଣି ପ୍ରଭୁ ଶ୍ୱେତାଶ୍ୱତରଋଷି କେବଳ ଜଣେକ ମହାନ୍ ଭକ୍ତ କବିର ଉଚ୍ଛ୍ୱସିତ ବାଣୀ ପରମ୍ପରା ମାତ୍ର । ଉପାସ୍ୟ ଶିବ ସେଠି ବକ୍ତା ନୁହନ୍ତି । କିନ୍ତୁ, ଗୀତାରେ ଉପାସ୍ୟ (ଶ୍ରୀକୃଷ୍ଣ) ନିଜେ ବକ୍ତା ଏବଂ ସେ ଜଣେ ଐତହାସିକ ବ୍ୟକ୍ତି । ତେଣୁ ହିଁ ଗୀତାରେ ତତ୍‌ସ୍ଥାନରେ ମତ୍‌ର ପ୍ରୟୋଗ ଅନେକ ସ୍ଥଳରେ ଅପ୍ରାସଂଗିକ ବୋଧ ହେଉଛି ।

( ୧୯ )

ପ୍ରକୃତିଂ ପୁରୁଷଂ ଚୈବ ବିଦ୍ଧ୍ୟନାଦୀ ଉଭବପି
ବିକାରାଂଶ୍ଚ ଗୁଣାଂଶ୍ଚୈବ ବିଦ୍ଧି ପ୍ରକୃତି ସମ୍ଭବାନ୍ । ୧୯ ।

ପ୍ରକୃତିଂ ପୁରୁଷଂ ଚ ଉଭୌଅପି ଅନାଦୀ ବିଦ୍ଧି ( ପ୍ରକୃତି ଓ ପୁରୁଷ ଉଭୟଙ୍କୁ ଅନାଦି ବୋଲି ଜାଣିବ ) । ବିକାରନ୍ ଚ ଗୁଣାନ୍ ପ୍ରକୃତି ସମ୍ଭବାନ୍ ( ଗୁଣ ଓ ବିକାରଗୁଡ଼କୁ ପୁରୁଷରୁ ନୁହେଁ, ପ୍ରକୃତିରୁ ଜାତ ବୋଲି ଜାଣିବ ) ।

**ଅନୁବାଦ—**

ହେ ଅର୍ଜୁନ, ମନେରଖ ଯେ, ପ୍ରକୃତି ଓ ପୁରୁଷ ( କ୍ଷେତ୍ର ଓ କ୍ଷେତ୍ରଜ୍ଞ ) ଉଭୟେ ହିଁ ଆଦିହୀନ, ଅର୍ଥାତ୍ ନିତ୍ୟ । କିନ୍ତୁ ସୃଷ୍ଟି-ସ୍ଥିତି-ଲୟାତ୍ମକ ଜାଗତିକ ବିକାର ସବୁ ପ୍ରକୃତିର କାର୍ଯ୍ୟ, ପୁରୁଷର ନୁହେଁ ।

( ୨୦ )

କାର୍ଯ୍ୟକାରଣକର୍ତ୍ତୃତ୍ୱେ ହେତୁଃ ପ୍ରକୃତିରୁଚ୍ୟତେ
ପୁରୁଷଃ ସୁଖଦୁଃଖାନାଂ ଭୋକ୍ତୃତ୍ୱେ ହେତୁରୁଚ୍ୟତେ । ୨୦ ।

କାର୍ଯ୍ୟ-କାରଣ-କର୍ତ୍ତୃତ୍ୱେ ପ୍ରକୃତି ହେତୁଃ ଉଚ୍ୟତେ (ପ୍ରକୃତିକୁ ହିଁ କାର୍ଯ୍ୟ, କାରଣ ଓ କର୍ତ୍ତୃତ୍ୱର ହେତୁ ବୋଲି ଜାଣିବ ), ସୁଖ ଦୁଃଖାନାଂ ଭୋକ୍ତୃତ୍ୱେ ( ସୁଖ ଦୁଃଖର ଭୋଗ ବିଷୟରେ ) ପୁରୁଷଃ ହେତୁଃ ଉଚ୍ୟତେ ( ପୁରୁଷ ହିଁ କାରଣ ବୋଲି କୁହାଯାଏ ) ।

**ଅନୁବାଦ—**

ହେ ଅର୍ଜୁନ, ଏ ଜଗତରେ ଯାହା ଘଟେ, ତାର କାରଣ ବା ତାହା ଯେପରି ଘଟେ, ପୁଣି ତାର କର୍ତ୍ତୃତ୍ୱ ବା ତାକୁ ଯିଏ କରେ, ସେ ସମସ୍ତର ମୂଳ ହେଲା ପ୍ରକୃତି । ଜୀବ ଓ ମନୁଷ୍ୟ ଯେଉଁ ସୁଖ-ଦୁଃଖ ଭୋଗ କରିଥାନ୍ତି, ତାହା କେବଳ ପ୍ରକୃତି ସହିତ ପୁରୁଷର ମିଳନ ହେତୁରୁ ହିଁ ସମ୍ଭବ ହୋଇଥାଏ ।

**ବିଶେଷ ଭାଷ୍ୟ—**

ସାଂଖ୍ୟର ପୁରୁଷ ( ବା ବେଦାନ୍ତର ଆତ୍ମା ) ପ୍ରକୃତିକୁ ଭୋଗ କରିବାକୁ ହିଁ ପ୍ରକୃତିରେ ଅଧିଷ୍ଠିତ ହୁଏ । ସେହି ଭୋଗସବୁ ଦେଇ ସେ ନାନା

ଅଭିଜ୍ଞତା ଅର୍ଜନ କଲାପରେ ସେ ପୁଣି ନିଜ ସ୍ଥାନକୁ ଫେରିଯିବ । କିନ୍ତୁ, ତାର ଭୋଗ ( କାର୍ଯ୍ୟ ) ଓ ଭୋଗର ଉପାୟ ସବୁ ( କାରଣ ) ପ୍ରକୃତରେ ନହିଁତ । ମନୁଷ୍ୟ ଏ ଧରାରେ ଯାହା 'ଭୋଗ' କରେ ବୋଲି ସାଧାରଣ-ଧାରଣା ତାହା ବସ୍ତୁତଃ ପ୍ରକୃତିର ରୂପ, ରସ, ଗନ୍ଧ, ଶବ୍ଦ ଓ ସ୍ପର୍ଶରହିଁ ଭୋଗ । ମନୁଷ୍ୟର ଚେତନାକୁ ସେ ସବୁ ନାନାରୂପରେ ଆସନ୍ତି, ଯଥା—ଖାଦ୍ୟଭବରେ 'ରସ', ନାରୀଭବରେ 'ରୂପ' ଯୌନ ଭୋଗ ଭବରେ 'ସ୍ପର୍ଶ' ଇତ୍ୟାଦି । ଶବ୍ଦରୂପେ ଆମେ ମଧୁର ସଂଗୀତ ସହିତ ଆତ୍ମ-ପ୍ରଶଂସା ମଧ୍ୟ ଭୋଗ କରିଥାଉ । ଏ ସବୁ ପ୍ରକୃତି ନିହିତ ; କିନ୍ତୁ ପ୍ରକୃତି ଜଡ । ଚେତନ କେବଳ ପୁରୁଷ । ଚେତନ ପୁରୁଷ ହିଁ କେବଳ 'ମୁଁ' ; ଅର୍ଥାତ୍ ସେହି ହିଁ ପ୍ରକୃତ ଭୋକ୍ତା । ପୁରୁଷକୁ ଭୋଗ୍ୟ ବସ୍ତୁ ଓ ଭୋଗର ଉପାୟ, ଯୋଗାଇ ଦେଇଥାଏ, ପ୍ରକୃତ ।

( ୨୧ )

ପୁରୁଷଃ ପ୍ରକୃତିସ୍ଥୋହି ଭୁଙ୍କ୍ତେ ପ୍ରକୃତିଜାନ୍ ଗୁଣାନ୍
କାରଣଂ ଗୁଣସଙ୍ଗୋଽସ୍ୟ ସଦସଦ୍‌ଯୋନିଜନ୍ମସୁ । ୨୧ ।

ପୁରୁଷଃ ପ୍ରକୃତିସ୍ଥଃ ହି ପ୍ରକୃତିଜାନ୍ ଗୁଣାନ୍ ଭୁଙ୍କ୍ତେ ( ପ୍ରକୃତିସ୍ଥ ହୋଇ ହିଁ ପୁରୁଷ ପ୍ରକୃତର ସତ୍ତ୍ୱ-ରଜ-ତମାଦି ଗୁଣକୁ ଭୋଗ କରେ ) । ଅସ୍ୟ ସତ୍ ଅସତ୍ ଯୋନିଜନ୍ମସୁ ( ପୁରୁଷର ସତ୍ ଓ ଅସତ୍ ଯୋନିରେ ଜନ୍ମ ନେବାର ହେତୁ ହେଉଛି ) ଗୁଣସଂଗଃ ଏବ କାରଣଂ ( ଏହି ପ୍ରକୃତିର ଗୁଣମାନଙ୍କ ପ୍ରତି ଆସକ୍ତିହିଁ କାରଣ ) ।

ଅନୁବାଦ—

ହେ ଅର୍ଜ୍ଜୁନ, ପୁରୁଷ ପ୍ରକୃତି-ଅଧିଷ୍ଠିତ ହୋଇ ପ୍ରକୃତର ସତ୍ତ୍ୱ-ରଜ-ତମାଦି ଗୁଣପାକ ଭୋଗକରେ ଏବଂ ସେହି ଗୁଣମାନଙ୍କ ପ୍ରତି ଆସକ୍ତି ହିଁ ତାର ସତ୍ ଓ ଅସତ୍ ବା ଉତ୍ତମ ବା ଅଭିଶପ୍ତ ଜୀବନର କାରଣ ହୋଇଥାଏ ।

( ୨୨ )

ଉପଦ୍ରଷ୍ଟାନୁମନ୍ତା ଚ ଭର୍ତ୍ତା ଭୋକ୍ତା ମହେଶ୍ୱରଃ
ପରମାତ୍ମେତି ଚାପ୍ୟୁକ୍ତୋ ଦେହେଽସ୍ମିନ୍ ପୁରୁଷଃପରଃ । ୨୨ ।

ଅସ୍ମିନ୍ ଦେହେ ( ଏହି ଦେହରେ ) ପରଃ ପୁରୁଷଃ ( ପରମ ପୁରୁଷ ) ଉପଦ୍ରଷ୍ଟା ( ସାକ୍ଷୀ ) ଅନୁମନ୍ତା ( ଅନୁମୋଦନକାରୀ ) ଭର୍ତ୍ତା

( ପୋଷଣକାରୀ ) ଭୋକ୍ତା ( ଭୋଗକାରୀ ) ମହେଶ୍ୱରଃ ପରମାତ୍ମା ଚ ଇତି ( ମହେଶ୍ୱର ଓ ପରମାତ୍ମା ବୋଲି କଥିତ ) ।

**ଅନୁବାଦ—**

ହେ ଅର୍ଜ୍ଜୁନ, ସେହି ପରମପୁରୁଷ ବା ପରମାତ୍ମା ବା ନିଖିଳ-ବିଶ୍ୱର ମହେଶ୍ୱର ଏହି ଦେହରେ ( ପ୍ରକୃତିରେ ) ଅବସ୍ଥାନ କଲାତକ ସାକ୍ଷୀ, ଉପଦେଷ୍ଟା, ଅନୁମୋଦନକାରୀ, ପାଳନକାରୀ ଓ ଭୋଗକାରୀ, ଏହିପରି ନାନା ଭୂମିକା ଗ୍ରହଣ କରିଥାନ୍ତି ।

**ବିଶେଷ ଭାଷ୍ୟ—**

ଗୀତା, କ୍ଷେତ୍ରସ୍ଥ ଆତ୍ମା ( କ୍ଷେତ୍ରଜ୍ଞ ) ଓ ମହେଶ୍ୱରଙ୍କ ଭିତରେ ବିଶ୍ୱ-କ୍ଷେତ୍ରର ଅଧିଦେବତା ପରମାତ୍ମା ବା ମହେଶ୍ୱରଙ୍କ ଭିତରେ କୌଣସି ଭିନ୍ନତା ରଖିନାହାନ୍ତି । ଏ ସଂପର୍କରେ ମହାଭାରତ ଶାନ୍ତିପର୍ବ ( ୧୮୭ । ୨୪ ) ର ସୂକ୍ଷ୍ମ ଭିନ୍ନତା ଉପଭୋଗ୍ୟ—

ଆତ୍ମା କ୍ଷେତ୍ରଜ୍ଞ ଇତ୍ୟୁକ୍ତଃ
ସଂଯୁକ୍ତଃ ପ୍ରାକୃତୈର୍ଗୁଣୈଃ

ତୈରେବତୁ ବିନିର୍ମୁକ୍ତା
ପରମାତ୍ମେତ୍ୟୁଦାହୃତଃ ।

( ପ୍ରକୃତିର ଗୁଣମାନଙ୍କରେ ଜଡ଼ିତ ଥିବାଯାଏ ଆତ୍ମା 'କ୍ଷେତ୍ରଜ୍ଞ' ରହେ । ସେ ସବୁଠୁ ବିମୁକ୍ତ ହୋଇପଡ଼ିଲେ, ସେହି ଆତ୍ମାହିଁ 'ପରମାତ୍ମା' ହୋଇଉଠେ )

( ୨୩ )

ଯ ଏବଂ ବେତ୍ତି ପୁରୁଷଂ ପ୍ରକୃତିଂ ଚ ଗୁଣୈଃ ସହ
ସର୍ବଥା ବର୍ତ୍ତମାନୋଽପି ନ ସ ଭୂୟୋଽଭିଜାୟତେ । ୨୩ ।

ଯଃ ( ଯେ ) ଏବଂ ( ଏହିପରି ) ପୁରୁଷଂ, ଗୁଣୈଃସହ ପ୍ରକୃତିଂ ଚ ( ଗୁଣାନ୍ୱିତ ପ୍ରକୃତି ଓ ପୁରୁଷଙ୍କୁ ) ବେତ୍ତି ( ଜାଣନ୍ତି ) ସଃ ସର୍ବଥା ବର୍ତ୍ତମାନଃ

ଅପି ( ସେ ଯେ, କୌଣସି ଅବସ୍ଥାରେ ଥିଲେ ମଧ୍ୟ ) ନ ଅଭିଜାୟତେ (ଆଉ ଜନ୍ମ ହୁଅନ୍ତ ନାହିଁ ) ।

**ଅନୁବାଦ—**

ହେ ଅର୍ଜୁନ, ଯିଏ ମନୁଷ୍ୟ ଦେହଠରେ ପ୍ରକୃତି, ପୁରୁଷ ଓ ପ୍ରକୃତସ୍ଥ ଗୁଣମାନଙ୍କର ଏ ପ୍ରକାର ଘନିଷ୍ଠ ସମ୍ବନ୍ଧ ବୁଝିପାରି ସେହି ଭବରେ ନିଜର ବ୍ୟବହାର ଓ ଜୀବନ ପରିଚାଳିତ କରିଥାନ୍ତି, ସେ ଏ ଜନ୍ମରେ ଯେପରି ଅବସ୍ଥାରେ ଥିଲେ ମଧ୍ୟ, ତାଙ୍କର ଆଉ ପୁନର୍ଜନ୍ମ ହୁଏ ନାହିଁ ।

**ବିଶେଷ ଭାଷ୍ୟ—**

ଏହି ସମଗ୍ର ଅଧ୍ୟାୟ ଏବଂ ଗୀତାର ଅନ୍ୟତ୍ର ବହୁ ସ୍ଥାନରେ ଆମେ ବରବର ସାଂଖ୍ୟ ଓ ବେଦାନ୍ତର ମିଶାମିଶି ଭବସବୁକୁହିଁ ଦେଖିବା । ସାଂଖ୍ୟ ମତରେ, ପୁରୁଷ ଓ ପ୍ରକୃତର ଭେଦାଭେଦ ବୁଝି ପାରିଲେ ମୁକ୍ତି, ଯାହାକି ଏହି ଶ୍ଳୋକର ମଧ୍ୟ ତାତ୍ପର୍ଯ୍ୟ । ବେଦାନ୍ତରେ ତାହାହିଁ ହୋଇ ଉଠିଲା ଦେହାତ୍ମଭେଦ ଜ୍ଞାନ ; କିନ୍ତୁ ବେଦାନ୍ତ ମତରେ ଆତ୍ମା ହେଲା ବିଶ୍ୱବ୍ୟାପ୍ତ, ପରମାତ୍ମାର ହିଁ ଏକ ଅଂଶ ଓ ପରମାତ୍ମାଠାରୁ ଅଭିନ୍ନ । ସାଂଖ୍ୟାର ଅଗଣିତ ନିଃସଙ୍ଗ ପୁରୁଷ, ବେଦାନ୍ତରେ ତେଣୁ ଏକକ 'ପୁରୁଷୋତ୍ତମ' ହୋଇ ଉଠିଲା ଏବଂ କୁହାଗଲା ଯେ, ସେହି ପୁରୁଷୋତ୍ତମଙ୍କ ଠାରେ ଅନନ୍ୟା ଅଚଳା ଭକ୍ତି ନ୍ୟସ୍ତ କଲେ ଯାଇ ମୁକ୍ତି ହେବ । ଏହି ଅଧ୍ୟାୟ ଓ ଗୀତାର ସର୍ବତ୍ର ଆମେ ଏହି ଦୁଇଟିଯାକ ମତକୁ ବରବର ଦେଖିବା । ମଝିରେ ମଝିରେ ପୁଣି ଦେଖିବା ଧ୍ୟାନମୂଳକ ରାଜଯୋଗକୁ । ମୁକ୍ତି ଲକ୍ଷ୍ୟରେ ଶ୍ଳୋକରେ ସାଂଖ୍ୟପନ୍ଥା ସାଥିକ ନମ୍ବର ଶ୍ଳୋକଟିରେ ଗୀତା ଏହି ରାଜଯୋଗ ଓ କର୍ମଯୋଗ ସୂଚିତ କରିଛନ୍ତି ।

( ୨୪ )

ଧ୍ୟାନେନାତ୍ମନି ପଶ୍ୟନ୍ତି କେଚିଦାତ୍ମାନମାତ୍ମନା
ଅନ୍ୟେ ସାଂଖ୍ୟେନ ଯୋଗେନ କର୍ମ ଯୋଗେନ ଚାପରେ । ୨୪ ।

କେଚିତ୍ (କେହି କେହି) ଧ୍ୟାନେ (ଧ୍ୟାନ ଦ୍ୱାରା) ଆତ୍ମନି (ଆପଣା ଭିତରେ) ଆତ୍ମନା (ଆପଣାର ମନନ ସାହାଯ୍ୟରେ) ଆତ୍ମାନଂ ପଶ୍ୟନ୍ତି ( ନିଜେ ଅନ୍ତଃସ୍ଥ ଆତ୍ମାକୁ ଦେଖି ପାରନ୍ତି ) । ଅନ୍ୟେ ସାଂଖ୍ୟେନ ଯୋଗେନ (ଅନ୍ୟମାନେ ସାଂଖ୍ୟ ଯୋଗ ପନ୍ଥାରେ) ଅପରେ ଚ

କର୍ମଯୋଗେନ (ଅନ୍ୟମାନେ ମଧ୍ୟ କର୍ମଯୋଗ ଦେଇ) [ଆତ୍ମ-ଦର୍ଶନ ଲାଭ କରନ୍ତି] ।

ଅନୁବାଦ—

ହେ ଅର୍ଜୁନ, ମୁକ୍ତିକାମୀ କେହି କେହି ଆତ୍ମ ଚେଷ୍ଟାରେ ଜୀବାତ୍ମା ଭିତରେ ପରମାତ୍ମାକୁ ଦେଖିଥାନ୍ତି । କେହିବା ସେଥିପାଇଁ ଜ୍ଞାନମାର୍ଗ (ସାଂଖ୍ୟ) ବା କର୍ମ ମାର୍ଗ ଅନୁସରଣ କରିଥାନ୍ତି ।

( ୨୫ )

ଅନ୍ୟେତ୍ୱେବ ମଜାନନ୍ତଃ ଶ୍ରୁତ୍ୱାନ୍ୟେଭ୍ୟ ଉପାସତେ
ତେଽପି ଚାତିତରନ୍ତ୍ୟେବ ମୃତ୍ୟୁଂ ଶ୍ରୁତି ପରାୟଣାଃ । ୨୫ ।

ଅନ୍ୟେ ତୁ ଏବ (କିନ୍ତୁ ଅନ୍ୟମାନେ) ଏବଂ ଅଜାନନ୍ତଃ (ଏହି ସବୁ ଆତ୍ମ-ତତ୍ତ୍ୱ ନ ଜାଣି) ଅନ୍ୟେଭ୍ୟଃ ଶ୍ରୁତ୍ୱା (ଅନ୍ୟମାନଙ୍କ ଠାରୁ ଶୁଣି ମଧ୍ୟ) [ଯଦି] ଉପାସତେ (ଉପାସନା କରନ୍ତି) [ତେବେ] ତେ ଅପି (ସେମାନେ ମଧ୍ୟ) ଶ୍ରୁତି ପରାୟଣାଃ ଯାହା ଶୁଣିଥିଲେ ତାହା ଶ୍ରଦ୍ଧା ସହିତ ପାଳନ କରି) ମୃତ୍ୟୁଂ ଅତିତରନ୍ତି ଏବ (ମୃତ୍ୟୁକୁ ଅତିକ୍ରମ କରନ୍ତି) ।

ଅନୁବାଦ—

ହେ ଅର୍ଜୁନ, ଯେଉଁମାନେ ଏସବୁ ଜଟିଳ, କ୍ଷେତ୍ର-କ୍ଷେତ୍ରଜ୍ଞ-ତତ୍ତ୍ୱ ବା ଜ୍ଞାନଯୋଗ କର୍ମ ଯୋଗାଦି ଆଧ୍ୟାତ୍ମିକ ସାଧନ ପନ୍ଥା ସବୁର କଥା କିଛି ହିଁ ଜାଣି ନାହାନ୍ତି, ସେମାନେ ଗୁରୁଜନଙ୍କ ଠାରୁ ଶୁଣି ସେହି ଶ୍ରବଣ-ଲବ୍ଧ-ଜ୍ଞାନକୁ ନିଷ୍ଠାର ସହିତ ପାଳନ କରି କେବଳ ମୋର (ଈଶ୍ୱରଙ୍କର) ଉପାସନା ହିଁ କରନ୍ତି, ସେମାନଙ୍କର ମଧ୍ୟ ଆଉ ପୁନର୍ଜନ୍ମ ହୋଇ ନ ଥାଏ ।

( ୨୬ )

ଯାବତ୍ ସଂଜାୟତେ କିଂଚିତ୍ ସତ୍ତ୍ୱ ସ୍ଥାବର ଜଙ୍ଗମଂ
କ୍ଷେତ୍ର କ୍ଷେତ୍ରଜ୍ଞ ସଂଯୋଗାତ୍ ତଦ୍‌ବିଦ୍ଧି ଭରତର୍ଷଭ । ୨୬ ।

[ହେ] ଭରତର୍ଷଭ (ଅର୍ଜୁନ) ଯାବତ୍ କିଞ୍ଚିତ୍ ସ୍ଥାବରଂ ଜଙ୍ଗମଂ ବା ସତ୍ତ୍ୱଂ ସଂଜାୟତେ (ଏ ବିଶ୍ୱରେ ଯାହା କିଛି ଚଳ ବା ଅଚଳ ବସ୍ତୁ ଉତ୍ପତ୍ତି ଲାଭ

କରିବାର ତୁମେ ଦେଖିବ) ତତ୍ କ୍ଷେତ୍ର କ୍ଷେତ୍ରଜ୍ଞ ସଂଯୋଗାତ୍ ବିଦ୍ଧି [ତାହା] (କ୍ଷେତ୍ର ଓ କ୍ଷେତ୍ରଜ୍ଞର ସଂଯୋଗରୁ ହିଁ ଘଟୁଛି ବୋଲି ଜାଣିବ) ।

ଅନୁବାଦ—

ହେ ଅର୍ଜୁନ, ଏହି ସୃଷ୍ଟିରେ ଅଚଳ ବା ଚଳମାନ ଯାହା କିଛିର ଉଦ୍ଭବ ଦେଖିବ, ଧରିନେବ ଯେ ତାହା ଏକାନ୍ତରେ କ୍ଷେତ୍ର ଓ କ୍ଷେତ୍ରଜ୍ଞର ସଙ୍ଗମ ଛଡ଼ା ଆଉ କିଛି ନୋହିପାରେ ।

( ୨୭ )

ସମଂ ସର୍ବେଷୁ ଭୂତେଷୁ ତିଷ୍ଠନ୍ତଂ ପରମେଶ୍ୱରଂ
ବିନଶ୍ୟତ୍ ସ୍ୱବିନଶ୍ୟନ୍ତଂ ଯଃ ପଶ୍ୟତି ସ ପଶ୍ୟତି । ୨୭ ।

ଯଃ (ଯେ) ସର୍ବେଷୁ ଭୂତେଷୁ ସକଳ ଜୀବରେ) ସମଂ ତିଷ୍ଠନ୍ତଂ (ସମଭାବରେ ପ୍ରତିଷ୍ଠିତ) [ଏବଂ ସମସ୍ତ ସୃଷ୍ଟି] ବିନଶ୍ୟତ୍ ସୁ (ବିନଷ୍ଟ ହେଲେ ମଧ୍ୟ ) ଅବିନଶ୍ୟନ୍ତଂ ପରମେଶ୍ୱରଂ (ଯେଉଁ ଅବିନାଶୀ ପରମେଶ୍ୱର ରହନ୍ତି) [ତାଙ୍କୁ] ପଶ୍ୟତି ସେହି ଭାବରେ ଦେଖେ) ସଃ ପଶ୍ୟତି ସେହି ହିଁ ପ୍ରକୃତରେ ଦର୍ଶନ କରନ୍ତି ଅର୍ଥାତ୍ ସୃଷ୍ଟିତତ୍ତ୍ୱ ଅବବୋଧ କରନ୍ତି ବୋଲି କୁହାଯିବ) ।

ଅନୁବାଦ—

ହେ ଅର୍ଜୁନ, ସୃଷ୍ଟିର ସକଳ ବସ୍ତୁ ଓ ଜୀବନରେ ସମଭାବରେ ଅଧିଷ୍ଠିତ ଏବଂ ସକଳ ଜୀବ ଓ ବସ୍ତୁର ଅହରହ ବିନାଶ ଭିତରେ ଯେ ଅବିନାଶୀ ହୋଇ ନିତ୍ୟ ବର୍ତ୍ତମାନ, ସେହି ପରମେଶ୍ୱର (କ୍ଷେତ୍ରଜ୍ଞ)ଙ୍କୁ ଯେ ଏହି ସୃଷ୍ଟି ତଳେ ଦେଖିପାରେ ଏ ଜଗତରେ ସେହି କେବଳ ଚକ୍ଷୁଷ୍ମାନ୍ ବୋଲି ଜାଣିବ ।

( ୨୮ )

ସମଂ ପଶ୍ୟନ୍ ହି ସର୍ବତ୍ର ସମବସ୍ଥିତମୀଶ୍ୱରଂ
ନ ହିନସ୍ତ୍ୟାତ୍ମନାତ୍ମାନଂ ତତୋ ଯାତି ପରାଂଗତିଂ । ୨୮ ।

ହି (ଯେହେତୁ) [ଜ୍ଞାନୀଜନ] ସର୍ବତ୍ର ସମଂ ସମବସ୍ଥିତଂ (ସର୍ବଜୀବରେ ଓ ସର୍ବ ସ୍ଥାନରେ ଏକ ଭାବରେ ଅବସ୍ଥିତ) ଈଶ୍ୱରଂ ପଶ୍ୟନ୍ (ଈଶ୍ୱରଙ୍କୁ ଦେଖିବା

କାରଣରୁ) ଆତ୍ମନା ଆତ୍ମାନଂ ନ ହିନସ୍ତି (ଆତ୍ମା ଦ୍ୱାରା ଆଉ ଅନ୍ୟ ଆତ୍ମାକୁ ହିଂସା କରନ୍ତି ନାହିଁ) ତତଃ ପରାଂ ଗତିଂ ଯାତି [ଏବଂ] (ସେହି ହେତୁରୁ ସେ ପରମ-ଗତି ପ୍ରାପ୍ତ ହୋଇଥାନ୍ତି ) ।

**ଅନୁବାଦ—**

ହେ ଅର୍ଜୁନ, ପରମାତ୍ମାଙ୍କୁ ସବୁଠାରେ ସମାନ ଭାବରେ ଅବସ୍ଥିତ ଥିବାର ଦେଖୁଥିବା ସେହି ସାଧକ, କେବେ ହେଲେ ଆତ୍ମା (ନିଜର) ଦ୍ୱାରା ଆତ୍ମାକୁ (ଅନ୍ୟର) କଷ୍ଟ ଦେବାକୁ ଯିବ ନାହିଁ ଏବଂ ଏହିଭାବରେ ହିଁ ସେ ପରମଗତି ଲାଭ କରିଥାଏ ।

**ବିଶେଷ ଭାଷ୍ୟ—**

"ନ ହିନସ୍ତ୍ୟାତ୍ମନାତ୍ମାନଂ" ଏହାର ତିନି ପ୍ରକାର ଅର୍ଥ କରାଯାଉଛି । ଏକ ହେଲା—ନିଜେ ନିଜକୁ କଷ୍ଟ ଦିଅନ୍ତୁ ନାହିଁ, ଯାହା କି 'ତପସ୍ୟା' ନାମରେ ବୈଦିକ ବ୍ରାହ୍ମଣମାନେ କୃଚ୍ଛ୍ର-ସାଧନାକୁ ବୁଝାଉଥିଲେ । ବୁଦ୍ଧ ଗୌତମ ନିଜ ଜୀବନରେ ଆଧ୍ୟାତ୍ମିକ ଉନ୍ନତି ଦିଗରେ ଏହି ବୀଭତ୍ସ ପନ୍ଥାସବୁର ଅସାରତା ପ୍ରମାଣିତ କରି ଏହା ବିରୁଦ୍ଧରେ ଦୃଢ ପ୍ରଚାର କରିଥିଲେ ।

ଦ୍ୱିତୀୟ ଅର୍ଥ ହେଲା—ଆତ୍ମ-ହତ୍ୟା । ଏହା କିନ୍ତୁ କଷ୍ଟକଳ୍ପିତ ବୋଧ ହେଉଛି ।

ତୃତୀୟ ଅର୍ଥ ହେଲା—ଜୀବହତ୍ୟା ନିରୋଧ ବା ଜୀବହିଂସା ନ କରିବା । ଯେମିତି ଯେଉଁ ଆତ୍ମା, ଅନ୍ୟଜୀବ ମାତ୍ର ଭିତରେ ମଧ୍ୟ ସେହି ଆତ୍ମା ବା ସେହି ଈଶ୍ୱର । ସର୍ବତ୍ରହିଁ ଈଶ୍ୱର । ତେଣୁ ହିଂସା ବା ହତ୍ୟା କରିବା କାହାକୁ ଓ କିପରି ?

ଗୌତମ ବୁଦ୍ଧ ହିଁ ସମଗ୍ର ଭାରତୀୟ ସଂସ୍କୃତିରେ ଅହିଂସା ଓ କରୁଣାର ପରମ ପ୍ରତୀକରୂପେ ଦଣ୍ଡାୟମାନ । ଧର୍ମ (ଯଜ୍ଞ) ନାମରେ ପଶୁହତ୍ୟାର ସେ ଘୋର ବିରୋଧ କରିଥିଲେ ।

ନିନ୍ଦସି ଯଜ୍ଞବିଧେରହହ ପଶୁଜାତଂ
ସଦୟ ହୃଦୟ ଦର୍ଶିତ ପଶୁଘାତଂ
କେଶବ ଧୃତ, ବୁଦ୍ଧ ଶରୀର
ଜୟ ଜଗଦୀଶ ହରେ ।

ଗୀତା ମଧ୍ୟ ମୂଳରୁ ବୈଦିକ ଯଜ୍ଞର ବିରୋଧୀ ହୋଇ ଆସିଛନ୍ତି । ଏବଂ ଅର୍ଜୁନଙ୍କୁ ଯୁଦ୍ଧପାଇଁ ମତେଇବା ସାଥେ ସାଥେ "ଅହିଂସା" ମଧ୍ୟ ପ୍ରଚାର କରିଆସିଛନ୍ତି । ଏହି ଅଧ୍ୟାୟରେ ହିଁ (ସପ୍ତମ ଶ୍ଳୋକ) ସାଧକର ଉତ୍ତମ ଲକ୍ଷଣମାନଙ୍କ ଭିତରେ "ଅହିଂସା କ୍ଷାନ୍ତିରାର୍ଜବଂ" ଉଲ୍ଲିଖିତ । ତେଣୁ ଏହି ଶ୍ଳୋକର "ନ ହିନସ୍ତ୍ୟାତ୍ମନାତ୍ମାନଂ"ର ପ୍ରକୃଷ୍ଟ ଓ ସୁସଂଗତ ଅର୍ଥ ହେବ ଜୀବହିଂସା ବା ଜୀବହତ୍ୟା ନିଷେଧ ।

( ୨୯ )

ପ୍ରକୃତ୍ୟୈବ ଚ କର୍ମାଣି କ୍ରିୟମାଣାନି ସର୍ବଶଃ
ଯଃ ପଶ୍ୟତି ତଥାତ୍ମାନ ମକର୍ତ୍ତାରଂ ସ ପଶ୍ୟତି ।୨୯।

ଯଃ ଚ କର୍ମାଣି ପ୍ରକୃତ୍ୟା ଏବ ସର୍ବଶଃ କ୍ରିୟମାଣାନି (ଯେ ପୁଣି କର୍ମସକଳ ପ୍ରକୃତି ଦ୍ୱାରାହିଁ ସବୁ ଭାବରେ ହୋଇ ଚାଲିବାର) ତଥା ଆତ୍ମାନଂ ଅକର୍ତ୍ତାରଂ ପଶ୍ୟତି (ଏବଂ ସେହି କାରଣରୁ ନିଜକୁ ସଂପୂର୍ଣ୍ଣରୂପେ ଅ-କର୍ତ୍ତା ଥିବାର ଦେଖିପାରନ୍ତି) ସଃ ପଶ୍ୟତି (ସେହି ହିଁ ଯଥାର୍ଥ ଦ୍ରଷ୍ଟା) ।

ଅନୁବାଦ—

ହେ ଅର୍ଜୁନ, ପୁଣି ଯେ, ଏ ଜଗତରେ ସକଳ କର୍ମ କେବଳ ପ୍ରକୃତି ଦ୍ୱାରାହିଁ ଘଟି ଚାଲିଛି ଏହା ଅବବୋଧ କରି, ନିଜକୁ ସହଜରେ ସଂପୂର୍ଣ୍ଣରୂପେ କର୍ତ୍ତୃତ୍ୱାଭିମାନଶୂନ୍ୟ ରଖିପାରନ୍ତି ତାଙ୍କୁ ପ୍ରକୃତ ଦ୍ରଷ୍ଟା ବୋଲି ଜାଣିବ ।

( ୩୦ )

ଯଦାଭୂତ୍ ପୃଥଗ୍‌ଭାବ ମେକସ୍ଥମନୁ ପଶ୍ୟତି
ତତ ଏବ ଚ ବିସ୍ତାରଂ ବ୍ରହ୍ମ ସଂପଦ୍ୟତେ ତଦା ।୩୦।

ଯଦା (ଯେତେବେଳେ [ସାଧକ] ଭୂତ-ପୃଥକ୍-ଭାବଂ (ଜୀବମାନଙ୍କର ଭିନ୍ନତ୍ୱ ବା ବିବିଧତ୍ୱକୁ) ଏକସ୍ଥଂ (ଏକ ଈଶ୍ୱରଙ୍କ ଠାରେ ହିଁ ଆସ୍ଥିତ ଥିବାର) [ଏବଂ] ତତଃ ଏବ ଚ ବିସ୍ତାରଂ (ସେହିଠାରୁ ହିଁ ବିସ୍ତୃତ ହେବାର) ଅନୁପଶ୍ୟତି (ଦେଖିପାରନ୍ତି) ତଦା (ସେତେବେଳେ) [ସେ] ବ୍ରହ୍ମ ସଂପଦ୍ୟତେ (ବ୍ରହ୍ମ ସ୍ୱରୂପ ହୋଇଯାନ୍ତି) ।

**ଅନୁବାଦ —**

ହେ ଅର୍ଜୁନ, ସାଧକ ଯେତେବେଳେ ଭୂପୃଷ୍ଠସ୍ଥ ଅଗଣିତ ଜୀବ ସଂଘର ପୃଥକ୍-ପୃଥକତ୍ୱକୁ (ଅର୍ଥାତ୍ ଅଗଣିତ ଦେହକୁ) ସେହି ଏକ ପରମେଶ୍ୱରଙ୍କ (କ୍ଷେତ୍ରଜ୍ଞଙ୍କ) ଠାରେ ଏକୀଭୂତ ଏବଂ ସେହି ଏକତ୍ୱରୁହିଁ ଏ ଜଗତକୁ ବହୁଧା-ବହିର୍ଗତ ବୋଲି ହୃଦୟଙ୍ଗମ କରିପାରନ୍ତି, ଧରିନେବ ଯେ ସେ ସେହି ବ୍ୟାପକ ଦୃଷ୍ଟି ଫଳରେହିଁ ବ୍ରହ୍ମତ୍ୱ ପ୍ରାପ୍ତ ହୋଇଯାନ୍ତି ।

( ୩୧ )

ଅନାଦିତ୍ୱାନ୍ନିର୍ଗୁଣତ୍ୱାତ୍ ପରମାତ୍ମାୟମବ୍ୟୟଃ
ଶରୀରସ୍ଥୋଽପି କୌନ୍ତେୟ, ନ କରୋତି ନ ଲିପ୍ୟତେ ।୩୧।

[ ହେ ] କୌନ୍ତେୟ (ଅର୍ଜୁନ) ଅନାଦିତ୍ୱାତ୍ ନିର୍ଗୁଣତ୍ୱାତ୍ ( ଅନାଦି ଓ ନିର୍ଗୁଣ ହୋଇଥିବାରୁ) ଅୟଂ ଅବ୍ୟୟଃ ପରମାତ୍ମା ( ଏହି ଅବିକାରୀ ପରମାତ୍ମା ) ଶରୀରସ୍ଥଃ ଅପି ( ଶରୀର ମଧ୍ୟରେ ଥିଲେ ମଧ୍ୟ ) ନ କରୋତି ନ ଲିପ୍ୟତେ [ପ୍ରକୃତରେ] (କିଛି କରନ୍ତି ନାହିଁ କି କାହିଁରେ ଲିପ୍ତ ନ ଥାନ୍ତି ) ।

**ଅନୁବାଦ—**

କିନ୍ତୁ ହେ ଅର୍ଜୁନ, ଭୁଲି ଯିବନି ଯେ ସେହି ପରମାତ୍ମା [ କ୍ଷେତ୍ରଜ୍ଞ ] ଅନାଦି, ଅଗୁଣ, ଓ ଅବ୍ୟୟ ( ଅପରିବର୍ତ୍ତନୀୟ ) ଥିବା ହେତୁରୁ; ପ୍ରତି ଶରୀରରେ ଅବସ୍ଥିତ ଥିଲେ ହେଁ, ପ୍ରକୃତରେ କୌଣସି କାମ କରନ୍ତି ନାହିଁ ବା କଲେ ମଧ୍ୟ କର୍ମ ଫଳର ବନ୍ଧନ ତାଙ୍କୁ ଲାଗେ ନାହିଁ ।

( ୩୨ )

ଯଥା ସର୍ବଗତଂ ସୌକ୍ଷ୍ମ୍ୟାଦାକାଶଂ ନୋପଲିପ୍ୟତେ
ସର୍ବତ୍ରାବସ୍ଥିତୋ ଦେହେ ତଥାତ୍ମାନୋପଲିପ୍ୟତେ । ୩୨ ।

ଯଥା (ଯେପରି) ସର୍ବଗତଂ ଆକାଶଂ (ସର୍ବତ୍ର ଅବସ୍ଥିତ ହୋଇ ମଧ୍ୟ ଆକାଶ) ସୌକ୍ଷ୍ମ୍ୟାତ୍ (ସୂକ୍ଷ୍ମତା ହେତୁରୁ) ନ ଉପଲିପ୍ୟତେ ( କାହିଁରେ ଲିପ୍ତ ହୁଏ ନାହିଁ ) ତଥା ( ସେହିପରି ) ଦେହେ ସର୍ବତ୍ର ଅବସ୍ଥିତଃ ଆତ୍ମା ( ଏହି ଦେହରେ ସବୁଠାରେ ଥିବା ଆତ୍ମା ) ନ ଉପଲିପ୍ୟତେ ( ଆମର କୌଣସି କର୍ମରେ ଲିପ୍ତ ହୁଅନ୍ତି ନାହିଁ ) ।

## ଅନୁବାଦ—

ହେ ଅର୍ଜ୍ଜୁନ, ଆକାଶ ସର୍ବଗତ ; କିନ୍ତୁ ଅତିଶୟ ସୂକ୍ଷ୍ମତା ହେତୁ କାହାରି ଚିହ୍ନ ତା' ଦେହରେ ଲାଗି ରହୁନି । ସେହିପରି ସେହି ଆତ୍ମା ବା କ୍ଷେତ୍ରଜ୍ଞ ସବୁ ଦେହ ବା କ୍ଷେତ୍ରରେ ଅଧିଷ୍ଠିତ ଥିଲେ ହେଁ ( ଏବଂ ସକଳ କର୍ମ କରୁଥିବାର ପ୍ରତୀୟମାନ ହେଲେହେଁ ) ସେ ସବୁବେଳେ ନିର୍ଲିପ୍ତ ରହିଥାନ୍ତି ।

( ୩୩ )

ଯଥା ପ୍ରକାଶୟତ୍ୟେକଃ କୃତ୍ସ୍ନଂ ଲୋକମିମଂ ରବିଃ
କ୍ଷେତ୍ରଂ କ୍ଷେତ୍ରୀ ତଥା କୃତ୍ସ୍ନଂ ପ୍ରକାଶୟତି ଭାରତ । ୩୩ ।

[ହେ] ଭାରତ ( ଅର୍ଜ୍ଜୁନ ) ଯଥା (ଯେପରି) ଏକଃ ରବିଃ ( ଗୋଟିଏ ମାତ୍ର ସୂର୍ଯ୍ୟ ) ଇମଂ କୃତ୍ସ୍ନଂ ଲୋକଂ ପ୍ରକାଶୟତି ( ଏହି ସମଗ୍ର ଜଗତକୁ ଉଦ୍‌ଭାସିତ କରିଥାନ୍ତି ) ତଥା ( ସେହିପରି ) କ୍ଷେତ୍ରୀ ( କ୍ଷେତ୍ରଜ୍ଞ ବା ଆତ୍ମା ) କୃତ୍ସ୍ନଂ କ୍ଷେତ୍ରଂ ( ସମସ୍ତ କ୍ଷେତ୍ର ବା ଦେହକୁ ) ପ୍ରକାଶୟତି ( ପ୍ରକାଶିତ କରିଥାନ୍ତି ) ।

## ଅନୁବାଦ—

ହେ ଅର୍ଜ୍ଜୁନ; ତୁମେ ଦେଖୁଛ କିପରି ଗୋଟିଏ ମାତ୍ର ସୂର୍ଯ୍ୟ ଏହି ସମଗ୍ର ଲୋକକୁ ଉଦ୍ଭାସିତ କରିଥାଏ । ଠିକ୍ ସେହିପରି ଗୋଟିଏ କ୍ଷେତ୍ରୀ ବା କ୍ଷେତ୍ରଜ୍ଞ ବା ପରମାତ୍ମା ଅଗଣିତ ସକଳ କ୍ଷେତ୍ରକୁ ଉଦ୍‌ଭାସିତ କରି ରଖନ୍ତି ।

[ ୩୪ ]

କ୍ଷେତ୍ର କ୍ଷେତ୍ରଜ୍ଞୟୋରେବ ମନ୍ତରଂ ଜ୍ଞାନ ଚକ୍ଷୁଷା
ଭୂତ ପ୍ରକୃତ ମୋକ୍ଷଂ ଚ ଯେ ବିଦୁର୍ଯାନ୍ତି ତେ ପରଂ ।୩୪।

ଯେ ( ଯେଉଁମାନେ ) ଏବଂ ( ଏହି ପ୍ରକାରେ ) କ୍ଷେତ୍ର କ୍ଷେତ୍ରଜ୍ଞୟୋଃ ଅନ୍ତରଂ ( କ୍ଷେତ୍ର ଓ କ୍ଷେତ୍ରଜ୍ଞର ପ୍ରଭେଦ ) ଭୂତ ପ୍ରକୃତ ମୋକ୍ଷଂ ଚ ( ଏବଂ ସେହି ଜ୍ଞାନ ଫଳରେ ଜୀବମାନଙ୍କର ପ୍ରକୃତି କବଳରୁ ମୁକ୍ତିଲାଭର ଉପାୟ ) ଜ୍ଞାନ ଚକ୍ଷୁଷା ବିଦୁଃ ( ଜ୍ଞାନ ଚକ୍ଷୁଦ୍ୱାରା ଜାଣି ପାରନ୍ତି ) ତେ ପରଂ ଯାନ୍ତି ( ସେମାନେ ପରମ ପଦ ପାଇଥାନ୍ତି ) ।

**ଅନୁବାଦ—**

ହେ ଅର୍ଜୁନ, ଯିଏ ଏହି ଭାବରେ କ୍ଷେତ୍ର ଓ କ୍ଷେତ୍ରଜ୍ଞର ପ୍ରଭେଦ ଓ ସଂବଂଧ ଜାଣନ୍ତି ଏବଂ ସେହି ଜ୍ଞାନ ଫଳରେ ମନୁଷ୍ୟର ପ୍ରକୃତି କବଳରୁ ମୁକ୍ତିର ଉପାୟ, ନିଜର ଜ୍ଞାନ ଚକ୍ଷୁ ସାହାଯ୍ୟରେ ସ୍ପଷ୍ଟ ଦେଖି ପାରନ୍ତି, ତାଙ୍କର ପରମ-ପଦ-ପ୍ରାପ୍ତି ସୁନିଶ୍ଚିତ ।

**ବିଶେଷ ଭାଷ୍ୟ—**

ଏଇଟି ହେଲା ଏ ଅଧ୍ୟାୟର ଶେଷ ଶ୍ଳୋକ । ବର୍ତ୍ତମାନ ଦେହ, ଆତ୍ମା ବା କ୍ଷେତ୍ର ଓ କ୍ଷେତ୍ରଜ୍ଞ ସଂପର୍କରେ ଗୀତାର ଏ ଅଧ୍ୟାୟର ବାର୍ତ୍ତାକୁ ଚମତ୍କାର ଭାବରେ ସମର୍ଥନ ଦେଉଥିବା ପରମହଂସ ରାମକୃଷ୍ଣଙ୍କର କେତୋଟି ଅମୃତମୟ ବାଣୀ ଏଠାରେ ପରିବେଷିତ କରି ମୁଁ ପାଠକମାନଙ୍କ ନିକଟରୁ ଏ ଅଧ୍ୟାୟ ପାଇଁ ବିଦାୟ ନେଉଛୁ ।

"ମଣିଷର ଦେହଟା ଗୋଟାଏ ହାଣ୍ଡି । ମନ, ବୁଦ୍ଧି, ଇନ୍ଦ୍ରିୟାଦି ହେଲେ ପାଣି, ଡାଲି, ପରିବା ଇତ୍ୟାଦି ଯାହା ଭର୍ତ୍ତି କରି ସେହି ହାଣ୍ଡିକୁ ଚୁଲି-ନିଆଁ ଉପରେ ବସାଇ ଦିଆଯାଇଛି । କିଛି ସମୟରେ ହାଣ୍ଡିର ପାଣି, ଡାଲି, ପରିବା ଇତ୍ୟାଦି ଉତ୍ତାପରେ ଫୁଟିବାକୁ ଆରମ୍ଭ କରିବ । ଏତେ ଗରମ ହେବ ଯେ କାହାକୁ ହାତରେ ଧରି ହେବନି ; କିନ୍ତୁ ଏ ଉତ୍ତାପ ତ ପାଣି, ଡାଲି ବା ପରିବାର ନୁହେଁ କି ପାତ୍ରର ନୁହେଁ । ଏ ଉତ୍ତାପ ଚୁଲିର । ସେହିପରି ଆମର ମନ, ବୁଦ୍ଧି, ଇନ୍ଦ୍ରିୟର ଶକ୍ତି ଆସେ କେବଳ ବ୍ରହ୍ମ-ଶକ୍ତିରୁ; ସେମାନଙ୍କର ନିଜର ଶକ୍ତି କିଛି ନାହିଁ ।"

"କାହାର ଘରେ ଟଙ୍କା ସୁନା ଖାଲି ଜମା ହୋଇ ରହିଥିଲେ ତାକୁ ଲୋକେ ଧନୀ କହିବେନି । ଧନୀ ଲୋକର ଚିହ୍ନରୁ ଲୋକେ ଧନୀ ଲୋକକୁ ଜାଣି-ପାରନ୍ତି । ଗରୀବ ଲୋକର ଡିବିରି ଜାଳିବାର ପଇସା ନ ଥିବ କିନ୍ତୁ ଆମେ ଧନୀ ଲୋକର ମାତ୍ର ଘରେ ବହୁ ଆଲୁଅ ଜଳିବାର ଦେଖିବା । ମନୁଷ୍ୟର ଏ ଦେହଟା ଷଡୈଶ୍ୱର୍ଯ୍ୟମୟ ଭଗବାନଙ୍କର ଆବାସ । ଏହାକୁ ଅଜ୍ଞାନ-ଅନ୍ଧକାରରେ ରଖିବା ଆଦୌ ଉଚିତ ନୁହେଁ । ଜ୍ଞାନର ଦୀପସବୁ ଜାଳି ୟାକୁ ଆଲୋକିତ କରିବାକୁ ହେବ । ତୁମେ ତୁମ ହୃଦୟକୁ ଯେତେବେଳେ ଏହି ଜ୍ଞାନାଲୋକରେ ଆଲୋକିତ କରିପାରିବ, ସେତେବେଳେ ତୁମେ ସେଠି ଭଗବାନଙ୍କୁ ବିରାଜିତ ଥିବାର ଦେଖିପାରିବ । ସମସ୍ତଙ୍କ ଦୃଗ ଜ୍ଞାନଲାଭ ହୋଇ ପାରିବ । ମନୁଷ୍ୟ ରୂପକ ମନ୍ଦିରରେ ଦୁଇଟି ସତ୍ତା ଅଛି । ଗୋଟିଏ ଜୀବାତ୍ମା, ଆଉଟି ପରମାତ୍ମା । ଜୀବାତ୍ମା, ପରମାତ୍ମା ଉପରେ ନିର୍ଭର କରେ । ଗୋଟାଏ ଜାଗାରୁ ବିଦ୍ୟୁତ୍

ଆସି ଯେପରି ସବୁଆଡ ଆଲୁଅ କରି ଦେଉଛି, ସେହିପରି ପରମାତ୍ମା ସକଳ ଜୀବାତ୍ମାକୁ ଆଲୋକିତ କରେ । ଦିବ୍ୟ ଜ୍ଞାନ ଏକାଧାରରେ ତୁମ ଦେହକୁ; ତୁମ ଚେତନାକୁ ଏବଂ ପରମାତ୍ମା, ସମସ୍ତଙ୍କୁ ଆଲୋକିତ କରି ପକାଏ ।"

"ଈଶ୍ୱର ଯଦି ସବୁଠି ଅଛନ୍ତି ତେବେ ଆମେ ତାଙ୍କୁ ଦେଖି ପାରୁନୁ କାହିଁକି ? ଦଳ-ଭର୍ତ୍ତି ପୋଖରୀ କୂଳରେ ଠିଆ ହୋଇ ଆମେ ଭାବିପାରୁ ଯେ, ପୋଖରୀରେ ଆଦୌ ପାଣି ନାହିଁ ; କିନ୍ତୁ ଦଳକୁ ଟିକିଏ ପେଲିଦେଲେ ଆମେ ତଳେ ପାଣି ଦେଖି ପାରିବା । ସେହିପରି ବ୍ରହ୍ମର ମାୟା-ଶକ୍ତିକୁ ଠେଲି ଦେଇ ପାରିଲେ ଆମେ ସର୍ବବ୍ୟାପ୍ତ ଈଶ୍ୱରଙ୍କୁ ଦେଖିପାରିବା ।"

ଯେ ଈଶ୍ୱରଙ୍କୁ ଅନ୍ତରରେ ଚିହ୍ନି ପାରିଲାଣି ସେ ନିଶ୍ଚେ ତାଙ୍କୁ ବାହାରେ ଚିହ୍ନିପାରିବ । ଯେ ତାଙ୍କୁ ଅନ୍ତରରେ ଜାଣିପାରିନ, ସେ ତାଙ୍କୁ କେଉଁଠି ହେଲେ ଚିହ୍ନି ପାରିବନି । ତେଣୁ ଯିଏ ନିଜ ହୃଦୟ ଭିତରେ ଈଶ୍ୱରଙ୍କୁ ଦେଖିପାରିଛି, ସେ ନିଶ୍ଚୟ ଈଶ୍ୱରଙ୍କୁ ସର୍ବତ୍ର ଦେଖିପାରିବ ।"

"ଜଗତ୍ ମାୟା ବୋଲି କହିବା ଅତି ସହଜ କଥା । କିନ୍ତୁ ତାର ତାତ୍ପର୍ଯ୍ୟ କେତେଜଣ ବୁଝନ୍ତି ? କର୍ପୂର ପୋଡିଲେ ଅବଶେଷ କିଛି ରହେ ନାହିଁ । କାଠ ପୋଡିଲେ ପଛରେ ରହିବ ଅଙ୍ଗାର ଓ ପାଉଁଶ । ପ୍ରକୃତ ବିରାଗୀ ସାଧକ ସମାଧିରେ ପହଁଚେ ଯେଉଁଠି ଜୀବ ଓ ଜଗତ୍ ଉଭେଇ ଯାନ୍ତି । ସମଗ୍ର ଗୁଣାତ୍ମକ ସଂସାର ଚାଲିଯାଇ ତା' ଜାଗାରେ ରହେ କେବଳ ନିର୍ଗୁଣ ବ୍ରହ୍ମ" ।

ଇତି ଶ୍ରୀ ମହାଭାରତେ ଶତ ସହସ୍ର୍ୟାଂ ସ ହିତାୟାଂ ବୈୟାସିକ୍ୟାଂ
ଭୀଷ୍ମ ପର୍ବଣି ଶ୍ରୀମଦ୍ ଭଗବଦ୍‌ଗୀତା ସୂପନିଷତ୍ ସୁ ବ୍ରହ୍ମ
ବିଦ୍ୟାୟାଂଯୋଗଶାସ୍ତ୍ରେ ଶ୍ରୀ କୃଷ୍ଣାର୍ଜୁନ ସଂବାଦେ
କ୍ଷେତ୍ର କ୍ଷେତ୍ରଜ୍ଞ ବିଭଗ ଯୋଗୋ ନାମ
ତ୍ରୟୋଦଶୋଽଧ୍ୟାୟଃ ।



# ଚତୁର୍ଦ୍ଦଶ ଅଧ୍ୟାୟ

## ଗୁଣତ୍ରୟ ବିଭାଗ ଯୋଗଃ

**ଅଧ୍ୟାୟ ଦୀପିକା—**

ଗୀତାରେ ଏପର୍ଯ୍ୟନ୍ତ ବାରମ୍ବାର ତ୍ରି-'ଗୁଣ'ର କଥା କୁହାଯାଇଛି । ସକଳ ଭାରତୀୟ ଦର୍ଶନ ଓ ଉପନିଷଦ ଓ ବୌଦ୍ଧବାଦରେ ମଧ୍ୟ, ଧର୍ମର ଲକ୍ଷ୍ୟ ହେଲା ମୁକ୍ତି, ସ୍ୱାତନ୍ତ୍ର୍ୟ ବା ସ୍ୱାଧୀନତା ! 'ଗୁଣ'ମାନେ ରଜ୍ଜୁ ବା ଦଉଡ଼ି । ଜୀବ-ଜନ୍ତୁ ବା ମନୁଷ୍ୟ ବା ବସ୍ତୁ ସବୁକୁ ଆମେ ସାଧାରଣତଃ ବାନ୍ଧି ଥାଉ ଦଉଡ଼ିରେ ଛନ୍ଦାଛନ୍ଦ କରି । ପ୍ରଥମେ ସାଂଖ୍ୟ ଓ ପରେ ବେଦାନ୍ତରେ ଧରି ନିଆଗଲା ଯେ, ଆମେ ଏ ସଂସାରରେ 'ବାନ୍ଧି' ହୋଇ ରହିଛୁ—ତିନୋଟି ଅଦୃଶ୍ୟ 'ଦଉଡ଼ି'ରେ ଛନ୍ଦଣି ବନ୍ଦଣି ହୋଇ । ଏହି ତିନୋଟି ଦଉଡ଼ି ବା 'ଗୁଣ' ( ତ୍ରିଗୁଣ ) ହେଉଛନ୍ତି ପ୍ରକୃତିର ଆୟୁଧ । ଏହି 'ତ୍ରିଗୁଣ' ବା ତିନୋଟି ଦଉଡ଼ି ସାହାଯ୍ୟରେହିଁ ପ୍ରକୃତି, ନଶ୍ୱର ପ୍ରଭବ ଓ ପ୍ରବହମାନତାକୁ ସଂସାରରେ ନିରବଚ୍ଛିନ୍ନ ରକ୍ଷା କରିବା ପାଇଁ, ପୁରୁଷ ବା ଆତ୍ମାକୁ ବାନ୍ଧି ରଖିଛି । ପୁରୁଷ ବା ଆତ୍ମା ଅଭିଜ୍ଞତା ପାଇଁ ଉପରୁ ତଳକୁ ଆସେ ଏବଂ ସେଥିପାଇଁ ସେ ପ୍ରକୃତିର ଆଶ୍ରୟ ନିଏ । ପ୍ରକୃତି ତ ସେୟା ଖୋଜୁଥାଏ । ସେ ତାର ତିନିଟି ଗୁଣ ବା ଦଉଡ଼ି ସତ୍ତ୍ୱ, ରଜ ଓ ତମ ଦେଇ ପୁରୁଷ ବା ଆତ୍ମାକୁ ସହଜରେ ବାନ୍ଧି ରଖିପାରେ । ଏହି ତିନଗୁଣ ଭିତରୁ 'ତମ' ହେଲା ଆଳସ୍ୟ ଓ ଅଜ୍ଞତା, 'ରଜ' ହେଲା ତୃଷା-ଜନିତ କର୍ମ-ପ୍ରବଣତା ଏବଂ 'ସତ୍ତ୍ୱ' ହେଲା ମନୁଷ୍ୟର ପୂର୍ଣ୍ଣ ବୌଦ୍ଧିକ ଓ ଆତ୍ମିକ ବିକାଶ ; କିନ୍ତୁ ଏ ତିନୋଟିଯାକ ଗୁଣ କେଉଁଠି ବା କାହାଠି ହେଲେ ପୂରା ଅଲଗା ଅଲଗା ରହି ନଥାନ୍ତି । ସବୁଠି ମିଶାମିଶି ହୋଇଥାଆନ୍ତି । ଆମ ପ୍ରତ୍ୟେକଙ୍କ ଭିତରେ ସତ୍ତ୍ୱ, ରଜ ଓ ତମ ଏପରି ତିନୋଟିଯାକ ଗୁଣ ଅଛନ୍ତି । ଯାହାଠି ଯେଉଁ ଗୁଣର ପ୍ରଭବ ଅଧିକ ଲକ୍ଷିତ ହୁଏ ସେ ସେହି ଗୁଣାତ୍ମକ ବୋଲି ଧରିବାକୁ ହୁଏ । ଆଦର୍ଶଜ୍ଞାନୀ ( ଦ୍ୱିତୀୟ ଅଧ୍ୟାୟରେ ), ଆଦର୍ଶ କର୍ମୀ ( ଚତୁର୍ଥ ଅଧ୍ୟାୟରେ ), ଓ ଆଦର୍ଶ ଭକ୍ତର ( ଦ୍ୱାଦଶ ଅଧ୍ୟାୟରେ ) ଗୀତା, ଯେଉଁ ବର୍ଣ୍ଣନା ଦେଇଛନ୍ତି, ସେ'ସବୁ ହେଲା ପରିପୂର୍ଣ୍ଣ ସତ୍ତ୍ୱଗୁଣ ପ୍ରକାଶକ । ବୁଦ୍ଧ, ଖ୍ରୀଷ୍ଟ, ଗାନ୍ଧି, ରାମକୃଷ୍ଣ ପ୍ରଭୃତ ପୃଥିବୀର ଆଲୋକଶିଖା ସବୁଙ୍କୁ ସତ୍ତ୍ୱଗୁଣର ମୂର୍ତ୍ତ-ବିକାଶ ବୋଲି ଧରାଯାଏ ; କିନ୍ତୁ ଗୀତା ବାରମ୍ବାର ଦୃଢ଼ ଘୋଷଣା କରି ଆସୁଛନ୍ତି ଯେ,

ସତ୍ତ୍ୱ ଗୁଣ ମଧ୍ୟ ବଂଧନର କାରଣ ହୋଇପାରେ ଏବଂ ଆମେ ଯେ ପର୍ଯ୍ୟନ୍ତ ସତ୍ତ୍ୱ ସହିତ ତିନୋଟିଯାକ ଗୁଣର-ପ୍ରଭାବରୁ ନିଜକୁ ନ କଟାଇ ପାରୁଛୁ, ଅର୍ଥାତ୍ ତ୍ରିଗୁଣାତୀତ ( ନିସ୍ତ୍ରୈଗୁଣ୍ୟ ଭବାର୍ଜୁନ ) ନ ହୋଇପାରିଛୁ ସେ ପର୍ଯ୍ୟନ୍ତ ପ୍ରକୃତ ଅର୍ଥରେ 'ମୁକ୍ତ' ହୋଇ ନପାରୁ । ଗୀତାଙ୍କ ଜୀବନାଦର୍ଶ ଅନୁଯାୟୀ ପ୍ରକୃତ ଲୋକୋତ୍ତର ମାନବ ବା ଆଦର୍ଶ ମନୁଷ୍ୟ କେବଳ ସେହି, ଯା'ର ଏହି ସଂସାରର କୌଣସି ବିଭବ ପ୍ରତି ଅର୍ଥାତ୍ କାମ; କାଞ୍ଚନ, ଲୋକସମ୍ମାନ ପ୍ରଭୃତ୍ୱ ବା ଏପରିକି ନିଜକୁ ସତ୍ତ୍ୱବାନ ପ୍ରମାଣିତ କରିବାର ଅଭିଳାଷ ପ୍ରତି ମଧ୍ୟ କୌଣସି ପ୍ରକାର ଆସକ୍ତି ନାହିଁ । ଅର୍ଥାତ୍ ଯେ ସଂପୂର୍ଣ୍ଣ ନିରାସକ୍ତ ସେହିହିଁ ତ୍ରିଗୁଣାତୀତ, ସେହିହିଁ ମୁକ୍ତ, ପ୍ରକୃତରେ 'ବୁଦ୍ଧ' ଓ 'ଜୀନ' ।

ଅନେକେ ଏହା ଜାଣି ହୁଏତ ବିସ୍ମିତ ହେବେ ଯେ, ଜରଥୁଷ୍ଟ୍ର, ଖ୍ରୀଷ୍ଟ, ବୁଦ୍ଧ, ମହମ୍ମଦ ଓ ରାମକୃଷ୍ଣ ଆଦି ଲୋକୋତ୍ତର ଜନ-ନାୟକମାନଙ୍କ ଭିତରୁ କେହି ଜଣେ ମଧ୍ୟ ଖଣ୍ଡିଏ ହେଲେ ବହି ଲେଖିଯାଇ ନାହାନ୍ତି ଯଦିଓ ଗବେଷଣାରୁ ଜଣାଯାଉଛି ଯେ, ଏମାନଙ୍କ ଭିତରେ ଅନ୍ତତଃ ଜରଥୁଷ୍ଟ୍ର ଓ ବୁଦ୍ଧ ଉଭୟେ ଶିକ୍ଷିତ ଓ ପଣ୍ଡିତ ଲୋକ ଥିଲେ । ପୁଣି ଏହି ପ୍ରତ୍ୟେକେ କିଛି ନ ଲେଖି, କେବଳ ଯାହା କଥାରେ କହିଯାଇଛନ୍ତି, ତାହା ଏପରି ଅପୂର୍ବ କାବ୍ୟ ମହିମାମଣ୍ଡିତ ଯେ, ଏମାନେ ଯେ ନିଜର ବାଣୀ ଲିପିବଦ୍ଧ କରି ପୁସ୍ତକ ଛାପିଯାଇ ନାହାନ୍ତି, ତଦ୍ଦ୍ୱାରା ପୃଥିବୀ ଯେ ଦରିଦ୍ରତର ହୋଇ ରହିଛି, ଏଥିରେ ସନ୍ଦେହ ନାହିଁ ; କିନ୍ତୁ ଏମାନଙ୍କର ଜୀବନ ଆଲୋଚନା କଲେ ଆମେ ଦେଖିବା ଯେ, ଏମାନେ କେହି ନିଜକୁ କେବଳ ଜନନାୟକ ବୋଲି ପ୍ରତିଷ୍ଠିତ କରାଇ ଯିବାର ଅଭି-ଳାଷରେହିଁ ପ୍ରଫେଟ ବା ଧର୍ମପ୍ରଚାରକ ହୋଇ ବାହାରି ନ ଥିଲେ । ଜୀବନର ଏକ ଏକ ଅବସ୍ଥାରେ ଏହି ପ୍ରତ୍ୟେକ ମହାମାନବ ଏକ ଏକ ସ୍ୱାବିଷ୍କୃତ ମହାନ୍ ସତ୍ୟର ପ୍ରଚାର ପାଇଁ, ଆଭ୍ୟନ୍ତରୀଣ ପ୍ରେରଣାରେ ବ୍ୟାକୁଳ ହୋଇ ଉଠିଛନ୍ତି ଏବଂ ସମକାଳୀନ ଦେଶ ଓ ସମାଜ ଯାହା କହୁ ବା ଯାହା କରୁ ସେଥିପ୍ରତି ଭ୍ରୂକ୍ଷେପ ନକରି ସେମାନେ ତାହା ଶୁଣାଇ ଚାଲିଛନ୍ତି । ବହି ଲେଖିବାର ପ୍ରଶ୍ନହିଁ ସେମାନଙ୍କ ମନରେ ଉଦିତ ହୋଇ-ନାହିଁ । ଚାଳିଶ ବର୍ଷ ବୟସ ପର୍ଯ୍ୟନ୍ତ ମହମ୍ମଦ ଏକ ମାଲିକାଣୀର ଜଣେ ନିରକ୍ଷର କିନ୍ତୁ ସାଧୁ ଓ ବିଶ୍ୱସ୍ତ ଗୁମାସ୍ତା ମାତ୍ର ଥିଲେ । ଉନବିଂଶ ଶତାବ୍ଦୀର ଶେଷ ଆଡକୁ ଦକ୍ଷିଣେଶ୍ୱର କାଳୀ ମନ୍ଦିରର ଏକ ନିରକ୍ଷର ପଣ୍ଡାଟି ଯେପରି ଦେଖାଦେଇ ଥିଲା ପ୍ରବଳ ଆଧ୍ୟାତ୍ମିକ ପିପାସା, ମକ୍କାର ସେହି ଗୁମାସ୍ତା

( ପରେ ସେହି ମାଲକାଣୀଙ୍କ ସ୍ୱାମୀ ) ଠାରେ ମଧ୍ୟ ଦେଖାଦେଲା ସେହି ରହସ୍ୟମୟ ଜଗତର ପ୍ରେରଣା ଓ ଅନୁଭବ, ଯାହାକୁ ସେ ନିଜେ ମଧ୍ୟ ପ୍ରଥମେ ବିଶ୍ୱାସ କରି ପାରିନଥିଲେ ; କିନ୍ତୁ ସେହି ନିରକ୍ଷର ଗୁମାସ୍ତାର ମୁଖନିଃସୃତ କୋରାନ୍ହିଁ ସମଗ୍ର ସମୃଦ୍ଧ ଆରବୀ ସାହିତ୍ୟରେ ଏ ପର୍ଯ୍ୟନ୍ତ ଅତୁଳନୀୟ ରହିଛି । କେବଳ ସାହିତ୍ୟିକ ମାଧୁର୍ଯ୍ୟରେ ମହମ୍ମଦ କିଛିହିଁ ଲେଖିଯାଇ ନାହାନ୍ତି । ସେ ଶକ୍ତିହିଁ ତାଙ୍କର ନଥିଲା । ଅନ୍ୟେ ତାଙ୍କ ବାଣୀ ଟିପିନେଇ ଯାହା ସଂଗ୍ରହ କରିଥିଲେ ତାହାହିଁ ହୋଇଛି, କୋରାନ୍ ।

ଗାନ୍ଧିଜୀ ଯେ ତାଙ୍କର ଆତ୍ମ-ଚରିତ ଲେଖିଯାଇଛନ୍ତି ତାହାଦ୍ୱାରା ଆମେ ସମସ୍ତେ ଉପକୃତ, କିନ୍ତୁ ସେଥିପାଇଁ ସେ ବହୁ ବନ୍ଧୁଙ୍କ ଅନୁରୋଧ ସତ୍ତ୍ୱେ ବହୁକାଳ ଧରି ଏକାନ୍ତ ଅନିଚ୍ଛୁକ ଥିଲେ । ଶେଷରେ ତାହା କେବଳ "ସତ୍ୟର ପରୀକ୍ଷା" ଭାବରେହିଁ ବାହାରିଲା ।

ଠିକ୍ ଏହି ପ୍ରକାର ଜୀବନାଦର୍ଶାନୁଯାୟୀ ହିଁ ଗୀତା ତାଙ୍କର ଆଦର୍ଶ-ପୁରୁଷଙ୍କୁ ସର୍ବଦା ବର୍ଣ୍ଣନା କରିଛନ୍ତି, "ସର୍ବାରମ୍ଭ ପରିତ୍ୟାଗୀ" ଓ "ସର୍ବସଂକଳ୍ପ-ବର୍ଜିତ" ବୋଲି । ଅର୍ଥାତ୍ ଏ ପ୍ରକାର ଲୋକୋତ୍ତର ମହା ପୁରୁଷମାନେ "ଏମିତି କରିବି, ସେମିତି କରିବି', " ଏୟା କଲେ ଏୟା ହେବ ବା ଏୟା ମିଳିବ"— ଏ ପ୍ରକାର ଯୋଜନା ସବୁ କରନ୍ତି ନାହିଁ । ଏ ପ୍ରକାର ଯୋଜନା ଗୁଣରେ ଅତି ଉତ୍ତମ ଓ ମହତ୍ତ୍ୱପୂର୍ଣ୍ଣ ହୋଇପାରେ, କିନ୍ତୁ ସେହି ସତ୍ତ୍ୱଗୁଣାତ୍ମକ ଯୋଜନା ମଧ୍ୟ ଯୋଜନାକାରୀଙ୍କର ବନ୍ଧନର କାରଣ ହେବାର ସମ୍ଭାବନା । ଗୀତା ତେଣୁ କହି ଆସୁଛନ୍ତି....'ଯଦୃଚ୍ଛାଲାଭ ସନ୍ତୁଷ୍ଟଃ' ରହିବାକୁ—ଅର୍ଥାତ୍ ଜୀବନଯାତ୍ରା ଭିତରେ ଯାହା ଯେତେବେଳେ ହାତକୁ ଆସିଗଲା ତାକୁଇ ଈଶ୍ୱରଙ୍କ କାମ (ମତ୍‌କର୍ମକୃତ୍) ବୋଲି ମନେକରି ସମ୍ପୂର୍ଣ୍ଣରୂପେ କର୍ତ୍ତୃତ୍ୱାଭିମାନ ପରିତ୍ୟାଗ କରିହିଁ ତାହା କରି ଚାଲିବାକୁ । ଯେଉଁ ମହାପୁରୁଷମାନଙ୍କର ଆଲୋଚନା ଆମେ ଉପରେ କଲୁ, ସ୍ଥାନ-କାଳ-ନିର୍ବିଶେଷରେ ସେ ପ୍ରତ୍ୟେକଙ୍କ ଜୀବନରେ ଆମେ ଗୀତାର ଏହି ଆଦର୍ଶ ପରିପୂର୍ଣ୍ଣ ଭାବରେ ପ୍ରତିବିମ୍ବିତ ହୋଇଥିବାର ଦେଖିବା, ଯାହା ଗୀତା–ତତ୍ତ୍ୱର ଅଦ୍ଭୁତ ସାର୍ବଜନୀନତାହିଁ ପ୍ରମାଣ କରେ ।

ଗୀତା ଯେ ଆମକୁ କେବଳ ତ୍ରିଗୁଣାତୀତ ହେବାକୁ କହିଚାଲିଛନ୍ତି ତାହା ନୁହେଁ, ଅଧ୍ୟାୟ ପରେ ଅଧ୍ୟାୟ ତାର ଉପାୟ ମଧ୍ୟ ବତେଇ ଚାଲିଛନ୍ତି । ପୁରୁଷ-ପ୍ରକୃତି ବା ଦେହ-ଆତ୍ମା ବା କ୍ଷେତ୍ର-କ୍ଷେତ୍ରଜ୍ଞର ଭେଦା-ଭେଦର ଅବବୋଧହିଁ ହେଲା ଗୁଣାତୀତ ହେବାର ପ୍ରଥମ ଓ ମୁଖ୍ୟ ସୋପାନ । ଏ ଅବବୋଧ ଯେ କ୍ରମେ ଆମର ପାର୍ଥିବ ଆକର୍ଷଣ ସବୁକୁ ଶିଥିଳ କରେଇ

ଦେବ; ଏହା ନିଶ୍ଚିତ । ଏହି ଅବବୋଧଟି ହେଲା—ମୁଁ ଏହି ଦେହ ନୁହେଁ' ଏବଂ ଏହାହିଁ ପ୍ରକୃତ ଜ୍ଞାନଯୋଗ । ପୁଣି ଅନାସକ୍ତ ଭାବରେ କାମ କରି-ଯିବାହିଁ କର୍ମଯୋଗ ; କିନ୍ତୁ 'ମୁକ୍ତିର ବା 'ତ୍ରିଗୁଣାତୀତ' ହେବାର ପ୍ରକୃଷ୍ଟ ଉପାୟରୂପେ ଗୀତା ଉପସ୍ଥାପିତ କରିଛନ୍ତି 'ଭକ୍ତିଯୋଗ'କୁ । ଗୀତା କହନ୍ତି ଯେ, ଏ ଜଗତର ଏକ ସର୍ବମୟ କର୍ତ୍ତା, ସର୍ବମୟ ଋଜକ ଅଛନ୍ତି । ପୁରୁଷ ଓ ପ୍ରକୃତି ଏବଂ ମାୟା ଓ ତ୍ରିଗୁଣ ଇତ୍ୟାଦି କେବଳ ନୁହେଁ ସ୍ୱୟଂବ୍ରହ୍ମ ପର୍ଯ୍ୟନ୍ତ ( ମମ ଯୋନର୍ମହଦ୍ ବ୍ରହ୍ମ ) ସବୁହିଁ କେବଳ ତାଙ୍କର ଖେଳ । ତେଣୁ ତାଙ୍କୁହିଁ ସମ୍ପୂର୍ଣ୍ଣ-ଭାବରେ ସ୍ୱୀକାର କରନ୍ତୁ । ତେବେ ଏ ଜୀବନରେ ସେହିହିଁ ତୁମର 'ଯୋଗ କ୍ଷେମ'ର ବାହକ ହେବେ କେବଳ ନୁହେଁ, ମୃତ୍ୟୁର ଆରପଟେ, ତୁମକୁ ସେ ନିଜ ପାଖେ, ନିଜ ଧାମରେହିଁ ସ୍ଥାନ ଦେବେ । ତୁମେ ଅମୃତତ୍ୱର ଅଧିକାରୀ ହେବ ଏବଂ ରହିବ ତ୍ରିଗୁଣର ପ୍ରଭାବରୁ ବହୁ ଊର୍ଦ୍ଧ୍ୱରେ—ଇଦଂ ଜ୍ଞାନମୁପାଶ୍ରିତ୍ୟ ମମ ସାଧର୍ମ୍ୟମାଗତାଃ ।

ଆମେ ଗୀତାର ସବୁ ଅଧ୍ୟାୟ ପରି ଏହି 'ଗୁଣତ୍ରୟ'—ଅଧ୍ୟାୟରେ ମଧ୍ୟ ଗୀତାର ସେହି ମହାନ୍ ବାର୍ତ୍ତା ଶୁଣିବାକୁ ପାଇବା ; ସେହି ମୁକ୍ତିର ବାର୍ତ୍ତା, ଶାଶ୍ୱତ ଆନନ୍ଦର ବାର୍ତ୍ତା, ଈଶ୍ୱରୀଭୂତ ଜୀବନର ଓ ଅମୃତତ୍ୱ ପ୍ରାପ୍ତିର ବାର୍ତ୍ତା ଏବଂ କେଉଁ କେଉଁ ଉପାୟରେ ତାହା ସମ୍ଭବ ହେବ, ତାର ପୁଂଖାନୁପୁଂଖ ଆଲୋଚନା । ଏ ଅଧ୍ୟାୟଟିର ୧ ରୁ ୫ ଶ୍ଳୋକ ପର୍ଯ୍ୟନ୍ତ ଈଶ୍ୱରଙ୍କର ସର୍ବମୟତା, ୬ ରୁ ୧୮ ଯାଏଁ ଭିନ୍ନ ଭିନ୍ନ 'ଗୁଣ'ର ତତ୍ତ୍ୱାର୍ବଳି; ୧୯ ରୁ ୨୭ ଯାଏଁ କିପରି 'ତ୍ରିଗୁଣାତୀତ' ହେବାକୁ ହେବ ତାହାରହିଁ ଉପାୟ ବର୍ଣ୍ଣିତ ।

ବର୍ତ୍ତମାନ ଅଧ୍ୟାୟ ଆରମ୍ଭ କରିବା ।

ଶ୍ରୀ ଭଗବାନୁବାଚ

( ୧ )

ପରଂଭୂୟଃ ପ୍ରବକ୍ଷ୍ୟାମି ଜ୍ଞାନାନାଂ ଜ୍ଞାନମୁତ୍ତମଂ
ଯଜ୍ଜ୍ଞାତ୍ୱା ମୁନୟଃ ସର୍ବେ ପରାଂ ସିଦ୍ଧିମିତୋଗତାଃ । ୧ ।

ଶ୍ରୀ ଭଗବାନ ( ଶ୍ରୀକୃଷ୍ଣ ) ଉବାଚ ( କହିଲେ ) । ଜ୍ଞାନାନାଂ ପରଂ ଉତ୍ତମଂ ଜ୍ଞାନଂ ଭୂୟଃ ପ୍ରବକ୍ଷ୍ୟାମି ( ଜ୍ଞାନମାନଙ୍କ ମଧ୍ୟରେ ଯାହା ଶ୍ରେଷ୍ଠ ଓ

ଉତ୍ତମ ତାହାହିଁ ପୁନର୍ବାର କହିବୁ )। ଯତ୍‌ଜ୍ଞାତ୍ୱା ସର୍ବେ ମୁନୟଃ ( ଯାହା ଜାଣି ମୁନି ସକଳ ) ଇତଃ ପରଂ ସିଦ୍ଧିଂ ଗତାଃ ( ଏହି ଲୋକରୁହିଁ ପରମ ସିଦ୍ଧି ଲାଭ କରି ଚାଲିଯାଇଛନ୍ତି )।

## ଅନୁବାଦ—

ଶ୍ରୀକୃଷ୍ଣ କହିଲେ, ହେ ଅର୍ଜ୍ଜୁନ, ମୁଁ ପୁଣି ବର୍ତ୍ତମାନ ଆଉ ଏକ ଜ୍ଞାନର କଥା କହିବାକୁ ଯାଉଛି ଯାହାକୁ ମଧ୍ୟ ତୁମେ ଶ୍ରେଷ୍ଠଜ୍ଞାନ ବୋଲି ମନେ କରିବ। ମୁନି-ଋଷି ଶ୍ରେଣୀର ଲୋକେ ଏହି ଜ୍ଞାନ ଲାଭ କରିହିଁ ଏହି ଇହ-ଲୋକରୁ ସିଧା ସିଧା ପରମ ଧାମକୁ ଚାଲିଯାଇ ପାରିଛନ୍ତି।

( ୨ )

ଇଦଂଜ୍ଞାନ ମୁପାଶ୍ରିତ୍ୟ ମମ ସାଧର୍ମ୍ୟମାଗତାଃ
ସର୍ଗେଽପି ନୋପଜାୟନ୍ତେ ପ୍ରଳୟେ ନ ବ୍ୟଥନ୍ତି ଚ। ୨।

ଇଦଂଜ୍ଞାନଂ ଉପାଶ୍ରିତ୍ୟ ( ଏହି ଜ୍ଞାନକୁ ଆଶ୍ରୟ କରି) [ ସାଧକ ମାନେ ] ମମ ସାଧର୍ମ୍ୟଂ ଆଗତାଃ ( ମୋର ସ୍ୱରୂପତାକୁ ପ୍ରାପ୍ତ ହୋଇ ) ସର୍ଗେ ଚ ଅପି ନ ଉପଜାୟନ୍ତେ [ ଅନ୍ୟ ସମସ୍ତେ ପୁଣି ଜନ୍ମ ହେଲେ ମଧ୍ୟ ] ( ସୃଷ୍ଟିକାଳରେ ଆଉ ଜନ୍ମ ନଅନ୍ତି ନାହିଁ ) [ କି ] ପ୍ରଳୟେ ଚ ନ ବ୍ୟଥନ୍ତି [ ଅନ୍ୟମାନଙ୍କ ପରି ] ( ପ୍ରଳୟ ଯୋଗୁଁ ବ୍ୟଥା ପାନ୍ତି ନାହିଁ )।

## ଅନୁବାଦ—

ହେ ଅର୍ଜ୍ଜୁନ, ଏହି ଜ୍ଞାନକୁ ନିଷ୍ଠାର ସହିତ ଆଶ୍ରୟ କରି ଚାଲିଲେ ସାଧକ ସହଜରେ ମୋର ( ଈଶ୍ୱରଙ୍କର ) ସାଧର୍ମ୍ୟ ପ୍ରାପ୍ତ ହୋଇ ଯାନ୍ତି, ଯା ଫଳରେ କଳ୍ପାରମ୍ଭରେ ଅନ୍ୟମାନଙ୍କପରି ଆଉ ଜନ୍ମଲାଭ କରନ୍ତି ନାହିଁ, କି କଳ୍ପ-କ୍ଷୟରେ ମଧ୍ୟ ଅନ୍ୟମାନଙ୍କ ପରି ବ୍ୟଥା ପାନ୍ତି ନାହିଁ।

## ବିଶେଷ ଭାଷ୍ୟ—

ଏହି ଶ୍ଲୋକରେ ଗୀତା କହୁଛନ୍ତି ଯେ, ଯେଉଁମାନେ ଏହି ଜ୍ଞାନର ଆଶ୍ରୟ ନେଇ ନିଷ୍ଠାର ସହିତ ନିଜକୁ ପରିଚାଳିତ କରିଥାନ୍ତି ସେମାନେ "ମମ ସାଧର୍ମ୍ୟ ମାଗତାଃ" ହୋଇଥାନ୍ତି। ଅର୍ଥାତ୍ 'ମୁକ୍ତି' ବା 'ନିର୍ବାଣ'ର ଅର୍ଥ ବ୍ୟକ୍ତିତ୍ୱର

ଧ୍ୱଂସ ବା ବିନାଶ ନୁହେଁ । ତାହା ଆମପ୍ରତି ଏକ ପକ୍ଷରେ ପ୍ରକୃତିର ଘୋର ଜଞ୍ଜାଳମୟ ତ୍ରୈଗୁଣ୍ୟ-ବନ୍ଧନରୁ ମୁକ୍ତି, ପୁଣି ଅନ୍ୟ ପକ୍ଷରେ ତାହା ଆମର ବ୍ୟକ୍ତି ତ୍ୱବନ୍ତ ଈଶ୍ୱରଙ୍କର-ସ୍ୱଧର୍ମ-ପ୍ରାପ୍ତି । ଯେ ବ୍ରହ୍ମକୁ ଜାଣେ ସେ ବ୍ରହ୍ମହିଁ ହୋଇଯାଏ । ମୁକ୍ତ ଜୀବ ଅସତରୁ ସତାକୁ, ଅନ୍ଧକାରରୁ ଆଲୋକକୁ, ଜନ୍ମ-ମୃତ୍ୟୁର ବେଦନାରୁ ଶାଶ୍ୱତ ଅମୃତତ୍ୱକୁ ଫେରିଯାଏ, ସେ ବିନଷ୍ଟ ହୋଇ ଯାଏ ନାହିଁ । ସେ ସତ୍-ଚିତ୍-ଆନନ୍ଦରେ ହିଁ ଅବସ୍ଥାନ କରେ । ଯୀଶୁଖ୍ରୀଷ୍ଟଙ୍କ ବାଣୀ ଏ ସ୍ଥଳରେ ସ୍ମରଣୀୟ—

"ସ୍ୱର୍ଗସ୍ଥ ପରମପିତା ଯେପରି ପୂର୍ଣ୍ଣ, ହେ ମନୁଷ୍ୟ, ତୁମେ ସେହି କାରଣରୁ ଓ ସେହିପରି ପୂର୍ଣ୍ଣ ହେବାକୁ ଚେଷ୍ଟାକର ।" ( ମାଥ୍ୟୁ ୫/୪୮ ) । ଏହାହିଁ ଗୀତାର "ମମ ସାଧର୍ମ୍ୟ ମାଗତାଃ" ।

( ୩ )

ମମଯୋନିର୍ମହଦ୍ ବ୍ରହ୍ମ ତସ୍ମିନ୍ ଗର୍ଭଂଦଧାମ୍ୟହଂ
ସମ୍ଭବଃ ସର୍ବଭୂତାନାଂ ତତୋ ଭବତି ଭାରତ । ୩ ।

[ ହେ ] ଭାରତ ( ଅର୍ଜୁନ ) [ ମହତ୍ ] ମହଦ୍‌ବ୍ରହ୍ମ ( ବିଶ୍ୱବ୍ୟାପ୍ତ ବ୍ରହ୍ମହିଁ ) ମମ ଯୋନିଃ ( ମୋର ଗର୍ଭଧାରଣ ସ୍ଥାନ ଜାଣିବ ) । ତସ୍ମିନ୍ ଅହଂ ଗର୍ଭଂ ଦଧାମି ( ସେହି ବ୍ରହ୍ମରେ ମୁଁ ଗର୍ଭଧାନ ବା ସୃଷ୍ଟିର ବୀଜ ନିକ୍ଷେପ କରିଥାଏ ) ତତଃ ସର୍ବଭୂତାନାଂ ସମ୍ଭବଃ ( ତାହାରି ଫଳରେ ସକଳ ଭୂତର ଉତ୍ପତ୍ତି ହୋଇଥାଏ ) ।

ଅନୁବାଦ—

ହେ ଅର୍ଜୁନ, ସମଗ୍ର ଏହି ସୃଷ୍ଟିର ମୁଁ ( ଈଶ୍ୱର ) ହିଁ ଏକମାତ୍ର ପୁରୁଷ ବା କ୍ଷେତ୍ରଜ୍ଞ, ବିଶ୍ୱବ୍ୟାପ୍ତ ବ୍ରହ୍ମ ମୋ ବୀଜର ଯୋନି ବା ଜନନ-କ୍ଷେତ୍ର । ଏହି କ୍ଷେତ୍ର ଓ କ୍ଷେତ୍ରଜ୍ଞର ସଂଯୋଗରୁହିଁ ଏହି ସମଗ୍ର ବିଶ୍ୱ ଜାତ ବୋଲି ଜାଣିବ ।

ବିଶେଷ ଭାଷ୍ୟ—

ଏହି ଜଗତ୍ କିପରି ସୃଷ୍ଟି ହେଲା, ଏହି ପ୍ରଶ୍ନ ପୃଥିବୀର ସବୁଦେଶ ଓ ସବୁ ସମାଜରେ ଦେଖା ଦେଇଛି । ପ୍ରତ୍ୟେକ ଆଦିବାସୀ ଗୋଷ୍ଠୀ ଭିତରେ ମଧ୍ୟ ଜଗତ୍-ସର୍ଜନା-ସମ୍ପର୍କରେ କିଛି ନା କିଛି ଗଳ୍ପ ପ୍ରଚଳିତ ଅଛି । ଋଗ୍‌ବେଦର ସୁପ୍ରସିଦ୍ଧ 'ନାସଦୀୟ ସୂକ୍ତ'ରେ ଏହି ପ୍ରଶ୍ନ ପରମ କାବ୍ୟିକ ମହିମାରେ ଉଦ୍ଘୋଷିତ

ହୋଇଛି । ବେଦ ଓ କେତେକ ଉପନିଷଦ୍‌ରେ ସତ୍ ବା ଦୃଶ୍ୟମାନ୍ ଜଗତ୍ ଅ-ସତ୍‌ରୁ ଆସି ଥିବାର କଳ୍ପନା କରାଯାଇଥିଲା । ଛାନ୍ଦୋଗ୍ୟ ଉପନିଷଦ୍‌ରେ ଅ-ସତ୍ କ୍ରମେ ଏକ ଅଣ୍ଡାରେ ପରିଣତ ହୋଇ ଫାଟିବାରୁ, ଏହି ନାମ-ରୂପ-ମୟ ଜଗତ ସୃଷ୍ଟି ହେବାର କୁହାଯାଇଛି । ଏହାହିଁ ପରେ ପୌରଣିକ ଯୁଗରେ ସମଗ୍ର ସୃଷ୍ଟିକୁ 'ବ୍ରହ୍ମାଣ୍ଡ' ଅର୍ଥାତ୍ ବ୍ରହ୍ମାଙ୍କ ଅଣ୍ଡା ରୂପେ ଆମ ଭାଷାରେ ପରିଚିତ କରାଇ ଅଛି । ପୁଣି ସ୍ରଷ୍ଟାଙ୍କର ଅଣ୍ଡାରୁ ଯେ ଏ ସୃଷ୍ଟି ବାହାରିଛି ଏ କଳ୍ପନା, କେବଳ ଭାରତବର୍ଷ ନୁହେଁ, ଚୀନ, ମିଶର, ବାବିଲନ୍, ସ୍କାଣ୍ଡିନେଭିଆ, ଇରାନ ଓ ଉତ୍ତର ଆମେରିକାର ଆଦିମ ଲୋକ-ସଂସ୍କୃତିରେ ମଧ୍ୟ ଦେଖିବାକୁ ମିଳେ ।

କିନ୍ତୁ ପରବର୍ତ୍ତୀ ଉପନିଷଦ୍‌ମାନଙ୍କରେ ସୃଷ୍ଟିତତ୍ତ୍ୱ ନାରୀ-ପୁରୁଷର ଯୌନ-ମିଳନ-ଭାଷାରେହିଁ ପ୍ରକଟିତ ହୋଇଛି । ଏହାର ଆଦ୍ୟତମ ପ୍ରକାଶ ହୁଏତ ଘଟିଛି ବୃହଦାରଣ୍ୟକ ଉପନିଷଦ (୧/୪) ରେ ।

ତାହା ଏହିପରି—"ପ୍ରଥମେ ଏହି ଜଗତ୍ ପୁରୁଷାକାର ଆତ୍ମା ରୂପେହିଁ ବିଦ୍ୟମାନ ଥିଲା । ସେ ଯେତେବେଳେ ଚାରିଆଡକୁ ଦୃଷ୍ଟି ପକାଇ ନିଜ ଭିନ୍ନ ଅନ୍ୟ କାହାକୁ ଦେଖିଲେ ନାହିଁ । × × × ତେଣୁ ଏକାକୀତ୍ୱ ଯୋଗୁଁ ସେ ଭୟ ପାଇଲେ । × × × ଏବଂ ତାଙ୍କ ମନ ନରାନନ୍ଦ ରହିଲା × × × ସେ ସଙ୍ଗ ଅଭିଳାଷ କଲେ ଏବଂ ସ୍ୱାମୀ ଓ ସ୍ତ୍ରୀ ଆଲିଙ୍ଗିତ ହୋଇ ଯାହା ହୁଅନ୍ତି ସେ ସେପରି ହେବାକୁ ଚାହିଁଲେ । ତେଣୁ ସେ ନିଜ ଦେହକୁ ଦୁଇ ଭାଗ କରି ତଳେ ପକେଇ ଦେଲେ (ଦ୍ୱେଧାଽପାୟାତ୍) । ସେହି ପତନ ଫଳରେ (ପତ୍ ଧାତୁରୁ) ପତି ଓ ପତ୍ନୀ ଜାତ ହେଲେ । ସେ ତାଙ୍କଠାରେ ଉପଗତ ହେଲେ । ତାହା ଫଳରେ ମନୁଷ୍ୟଗଣ ଜାତ ହେଲେ ।" × × × ।

ପରେ ସ୍ତ୍ରୀ ଓ ପୁରୁଷର ଭାବ-କଳ୍ପ ନେଇ ସାଂଖ୍ୟ-ଦର୍ଶନ ସମଗ୍ର ସୃଷ୍ଟିକୁ ପୁରୁଷ ଓ ପ୍ରକୃତିର ମିଳନର ଫଳ ବୋଲି ଉପସ୍ଥାପିତ କଲା । ସେହି ସାଂଖ୍ୟ-ଭାବହିଁ ସମଗ୍ର ଭାରତୀୟ ଚିନ୍ତାରେ ଓତପ୍ରୋତ ମିଶିଯାଇ ପରେ ଶିବ-ପାର୍ବତୀ, ରାମ-ସୀତା, ଓ ରାଧା-କୃଷ୍ଣ ପ୍ରଭୃତି ଯୁଗ୍ମ ଦେବତାମାନଙ୍କ କଳ୍ପନାରେ ପ୍ରକଟିତ ହୋଇ ଉଠିଛି ।

ସାଂଖ୍ୟର ଅଗଣିତ ପୁରୁଷମାନଙ୍କ ଉପରେ ପରେ ବେଦାନ୍ତ ଦର୍ଶନ କେବଳ ଗୋଟିଏ 'ପୁରୁଷୋତ୍ତମ' ଠିଆ କଲା । ଏକ ମେବା ଦ୍ୱିତୀୟଂ ନିର୍ଗୁଣ ବ୍ରହ୍ମର ସଗୁଣ ପ୍ରକାଶ ଏହି ଏକକ ପୁରୁଷୋତ୍ତମ, ଠିଆ ହେଲେ, ସୃଷ୍ଟି-ସ୍ଥିତି ପ୍ରଳୟର କର୍ତ୍ତା ହୋଇ ଏବଂ ଈଶ୍ୱର ଏକମାତ୍ର 'ପୁରୁଷ' ଭାବରେ ସେହି

ହେଲେ ମଧ୍ୟ 'ପ୍ରକୃତି'ର ସ୍ୱାମୀ। ପୂର୍ବରୁ ବ୍ରହ୍ମ-ଅଣ୍ଡ (ବ୍ରହ୍ମାଣ୍ଡ) କଳ୍ପନା ବର୍ତ୍ତମାନ ପରିବର୍ତ୍ତିତ ହେଲା, ପୁରୁଷୋତ୍ତମଙ୍କର ମହାପ୍ରକୃତି (ବା ମହଦ୍‌ବ୍ରହ୍ମ) ରୂପକ ନାରୀର ପ୍ରଜନନ-କ୍ଷେତ୍ରରେ ସୃଷ୍ଟିର ବୀର୍ଯ୍ୟ ବା ବୀଜ ନିକ୍ଷେପ କରିବାରେ, ଯେଉଁଥିରୁ ଏହି ବିଚିତ୍ର ସୃଷ୍ଟି ସମ୍ଭବ ହୋଇଛି। କେବଳ ତାହା ନୁହେଁ, ଚିର-ପ୍ରବହମାନ ଏହି ସୃଷ୍ଟିରେ ଏବେ ବି ଯିଏ ଯେଉଁଠି ଜନ୍ମ ହେଉଛନ୍ତି, ସେ ପ୍ରତ୍ୟେକେ ସେହି ସନାତନ ପ୍ରକ୍ରିୟାରହିଁ ଫଳ। ଅନ୍ୟଥା ହୋଇ ନ ପାରେ। ପରବର୍ତ୍ତୀ ଶ୍ଳୋକରେ ଗୀତା ଏହା ସ୍ପଷ୍ଟୀକୃତ କରି ଦେଉଛନ୍ତି।

( ୪ )

ସର୍ବଯୋନିଷୁ କୌନ୍ତେୟ, ମୂର୍ତ୍ତୟଃ ସମ୍ଭବନ୍ତି ଯାଃ
ତାସାଂ ବ୍ରହ୍ମ ମହଦ୍‌ଯୋନିରହଂ ବୀଜପ୍ରଦଃ ପିତା । ୪ ।

[ହେ] କୌନ୍ତେୟ (ଅର୍ଜୁନ) ସର୍ବଯୋନିଷୁ ଯାଃ ମୂର୍ତ୍ତୟଃ ସମ୍ଭବନ୍ତି (ଏ ବିଶ୍ୱରେ ଅଗଣିତ ମାତୃ-ଯୋନିରେ ଯେତେ ବିଗ୍ରହ ଯେଉଁଠି ଉତ୍ପନ୍ନ ହୁଅନ୍ତି) [ଜାଣି ରଖିବ ଯେ] ତାସାଂ ମହଦ୍ ବ୍ରହ୍ମ ଯୋନିଃ (ସେମାନଙ୍କର ପ୍ରକୃତିହିଁ ଜନନ କାରିଣୀ) [ଏବଂ] ଅହଂ ବୀଜପ୍ରଦଃ ପିତା (ମୁଁ ବୀର୍ଯ୍ୟଦାନକାରୀ ଜନକ)।

ଅନୁବାଦ—

ହେ ଅର୍ଜୁନ, କେବଳ ବିଶ୍ୱସୃଷ୍ଟି ନୁହେଁ, ବିଶ୍ୱରେ ଯେତେ ପ୍ରକାର ଜୀବ-ଗୋଷ୍ଠୀ ଅଛନ୍ତି, ସେହି ସମସ୍ତ ଗୋଷ୍ଠୀରେ ଯେତେ ଯେତେ ଜୀବ ଜନ୍ମ ହୋଇ ଚାଲିଛନ୍ତି, ସେ ପ୍ରତ୍ୟେକଟିର ମୁଁ (ଈଶ୍ୱର)ହିଁ ବୀଜ-ନିକ୍ଷେପକ ପିତା ଓ ବ୍ରହ୍ମହିଁ ଜନନ-କ୍ଷେତ୍ର ବୋଲି ଜାଣିବ।

( ୫ )

ସତ୍ତ୍ୱଂ ରଜସ୍ତମ ଇତି ଗୁଣାଃ ପ୍ରକୃତି ସମ୍ଭବାଃ
ନିବଧ୍ନନ୍ତି ମହାବାହୋ ଦେହେ ଦେହିନ ମବ୍ୟୟଂ ।୫।

[ହେ] ମହାବାହୋ (ଅର୍ଜୁନ) ପ୍ରକୃତିସମ୍ଭବାଃ ସତ୍ତ୍ୱଂ ରଜଃ ତମ ଇତି ଗୁଣାଃ (ସେହି ପ୍ରକୃତିରୁ ଜାତ ସତ୍ତ୍ୱ, ରଜ ଓ ତମ ଇତ୍ୟାଦି ଗୁଣଗୁଡିକ) ଅବ୍ୟୟଂ ଦେହିନଂ (ନିର୍ବିକାର ଆତ୍ମାକୁ) ଦେହେ ନିବଧ୍ନନ୍ତି (ଦେହାସକ୍ତ କରି ବାନ୍ଧି ରଖନ୍ତି)।

**ଅନୁବାଦ—**

ହେ ଅର୍ଜୁନ, ମୋର (ଈଶ୍ୱରଙ୍କର) ବୀଜ ହେଲେହେଁ, ଆତ୍ମା ପ୍ରକୃତରୁ ଯେଉଁ ଦେହ ଧାରଣ କରି ଉଠେ, ସତ୍ତ୍ୱ, ରଜ, ତମ ନାମକ ଏହି ତନୋଟି ଅଦୃଶ୍ୟ ଦଉଡ଼ି (ଗୁଣ) ଦ୍ୱାରା ପ୍ରକୃତ ନିଜ ସ୍ୱାର୍ଥରେ ତାକୁ ବାନ୍ଧି ପକାଇ, ସଂସାର-ବନ୍ଧନ ଜନତ ନାନା ଦୁଃଖ ଭୋଗ କରାଏ ।

**ବିଶେଷ ଭାଷ୍ୟ—**

ପୂର୍ବ ଶ୍ଳୋକରେ ଗୀତା କହିଲେ ଯେ, ଏ ଜଗତରେ ଯେ କୌଣସି ଜନନୀ ଠାରୁ ଯେ କୌଣସି ପିତା ଦେଇ 'ମୂର୍ତ୍ତି' ର ସମ୍ଭବ ହୁଏ, ଧରି-ନେବାକୁ ହେବ ଯେ, ତାର ପିତା ଈଶ୍ୱର ଏବଂ ଜନନୀ ପ୍ରକୃତରେ ପ୍ରକୃତି । ତେବେ ସ୍ୱୟଂ ଈଶ୍ୱର ଯାହାର ପିତା ସେପରି ଜୀବ ଦୁଃଖ ପାଉଛି କାହିଁକି ?

ଏହି ଶ୍ଳୋକରେ ତାର ଉତ୍ତର ସ୍ୱରୂପ କୁହାଯାଉଛି ଯେ, ପ୍ରକୃତ ସ୍ରଷ୍ଟାର ବୀର୍ଯ୍ୟକୁ ବିଗ୍ରହଧାରୀ ନୂତନ ଜୀବ ରୂପେ ଠିଆ କରେଇବା ସାଥେ ସାଥେ, ନିଜର ଅନ୍ତର୍ନିହିତ 'ତ୍ରି-ଗୁଣ' ଦ୍ୱାରା ସେହି ନବ-ଜାତକୁ ପ୍ରଭାବିତ କରିଦେଇଥାଏ ସାଂସାରିକ ଲୀଳାପାଇଁ । ସେହି 'ତ୍ରିଗୁଣ'ର ପ୍ରଭାବ ହିଁ ଜୀବ (ଆତ୍ମା) କୁ ଦେହ ଓ ସଂସାର ସହିତ ଏକାତ୍ମୀକୃତ କରି ତାକୁ ନାନା ଅଭିଜ୍ଞତା ଦେଇ ଚାଲେ ।

ବର୍ତ୍ତମାନ ସେହି ପ୍ରାକୃତିକ ତ୍ରି-ଗୁଣ ପୃଥକ୍ ପୃଥକ୍ ଭାବରେ ବର୍ଣ୍ଣିତ ହେବେ ।

( ୬ )

ତତ୍ର ସତ୍ତ୍ୱଂ ନିର୍ମଳତ୍ୱାତ୍ ପ୍ରକାଶକ ମନାମୟମ୍
ସୁଖସଙ୍ଗେନ ବଧ୍ନାତି ଜ୍ଞାନ ସଙ୍ଗେନ ଚାନଘ । ୬ ।

[ହେ] ଅନଘ (ନିଷ୍ପାପ ଅର୍ଜୁନ) ତତ୍ର ( ସେହି ତ୍ରି-ଗୁଣମାନଙ୍କ ଭିତରେ) ସତ୍ତ୍ୱଂ ନିର୍ମଳତ୍ୱାତ୍ ପ୍ରକାଶକଂ ନିର୍ମଳତା ହେତୁରୁ ପ୍ରକାଶନଶୀଳ) ଅନାମୟଂ (ସ୍ୱାସ୍ଥ୍ୟଦାୟୀ) ସୁଖ ସଙ୍ଗେନ ଜ୍ଞାନ ସଙ୍ଗେନ ଚ (ସୁଖ ଓ ଜ୍ଞାନ ପ୍ରତି ଆସକ୍ତି ହେତୁରୁ ମଧ୍ୟ) ବଧ୍ନାତି (ଆତ୍ମାକୁ ବାନ୍ଧି ରଖିଥାଏ) ।

**ଅନୁବାଦ—**

ହେ ଅର୍ଜ୍ଜୁନ, ଏହି ତିନିଗୁଣ ଭିତରେ ସତ୍ତ୍ୱଗୁଣ ନିର୍ମଳ ଏବଂ ସେହି କାରଣରୁ ଦେହ ଓ ଚିତ୍ତର ସ୍ୱାସ୍ଥ୍ୟଦାୟୀ ଏବଂ ସକଳ ଉତ୍ତମ ଶକ୍ତିର ପ୍ରକାଶକ । କିନ୍ତୁ ସତ୍ତ୍ୱ-ଗୁଣ ମଧ୍ୟ ଜ୍ଞାନ ଓ ବଞ୍ଚିବାର ସୌଖ୍ୟ ପ୍ରତି ଆସକ୍ତି ଯୋଗୁଁ ମନୁଷ୍ୟକୁ ସଂସାରରେ ବାନ୍ଧି ରଖେ ।

**ବିଶେଷ ଭାଷ୍ୟ—**

ସତ୍ତ୍ୱଗୁଣସମ୍ପନ୍ନ ଲୋକେ ବିଜ୍ଞ ହୋଇ ଉଠନ୍ତି ଏବଂ ଉଭୟ ବିଜ୍ଞତା ଓ ସତ୍‌କାର୍ଯ୍ୟଜନିତ ପାରିବେଶିକ ଶାନ୍ତି ଓ ସମ୍ମାନ ମଧ୍ୟ ଲାଭ କରିଥାନ୍ତି । କିନ୍ତୁ ଏ ଉଭୟ ମଧ୍ୟ ଆତ୍ମା ପ୍ରତି ପ୍ରଲୋଭନର କାରଣ ହୋଇ ପାରନ୍ତି; ଯାହା ଫଳରେ କି ପୁନର୍ଜନ୍ମ ହୁଏ ଏବଂ ଜନ୍ମ ମାନେ ହିଁ ଦୁଃଖ । କିଛି ନ ହେଲେ ବ୍ୟାଧି, ଜରା, ପ୍ରେମର ବିଫଳତା ବା ପୁତ୍ର କନ୍ୟାଜନିତ ଶୋକ ତ ଅଛି ? କିନ୍ତୁ ପ୍ରକୃତ ମୁକ୍ତ ପୁରୁଷର ସୁଖ ନାହିଁ କି ଦୁଃଖ ନାହିଁ । ତେଣୁ ଯେ ତ୍ରି-ଗୁଣାତୀତ କେବଳ ସେହି ହିଁ ମୁକ୍ତ । ସତ୍ତ୍ୱଗୁଣ ମାନସିକ ସୁଖଦାୟକ ଓ ସମ୍ମାନଦାୟକ ହୋଇପାରେ । କିନ୍ତୁ ଆମର ଚନ୍ଦ୍ରଶେଖରଙ୍କର ବା ରାଧାନାଥଙ୍କ ଜୀବନ ପରି, ସତ୍ତ୍ୱମୟ ଜୀବନ ମଧ୍ୟ ହାହୁତାଶମୟ ହୋଇପାରେ । ତେଣୁ ହିଁ ବିଗତ ପ୍ରଭବ ଧରି ଜନ୍ମ ହୋଇଥିବା ଏବଂ ଅତି ସୁଖ, ବିଳାସ ଓ ସମ୍ମାନ ଭିତର ଦେଇ ଜୀବନ କଟାଇ-ଥିଲେ ବୋଲି କୁହାଯାଉଥିବା ଭାରତୀୟ ମହାକବି କାଳିଦାସ ମଧ୍ୟ ତାଙ୍କ ଶ୍ରେଷ୍ଠ ସୃଷ୍ଟି 'ଶକୁନ୍ତଳା' କାବ୍ୟର ଶେଷରେ ଇଷ୍ଟଦେବତା ଶିବଙ୍କୁ "ନ ପୁନର୍ଭବ"—'ଆଉ ଜନ୍ମ ନ ହେବାର'—ଆକୁଳ ପ୍ରାର୍ଥନା ଜଣାଇଛନ୍ତି ।

( ୭ )

ରଜୋରାଗାତ୍ମକଂ ବିଦ୍ଧି ତୃଷ୍ଣା ସଙ୍ଗ ସମୁଦ୍‌ଭବଂ
ତନ୍ନିବଧ୍ନାତି କୌନ୍ତେୟ, କର୍ମ ସଙ୍ଗେନ ଦେହିନଂ । ୭ ।

[ହେ] କୌନ୍ତେୟ (ଅର୍ଜ୍ଜୁନ) ରଜଃ ରାଗାତ୍ମକଂ (ରଜୋ ଗୁଣଟି ରାଗାତ୍ମକ ବା ଗଭୀର ଆସକ୍ତି ପ୍ରବଣ ) । ତତଃ କର୍ମ ସଙ୍ଗେନ (ତେଣୁ କର୍ମ-ମାନଙ୍କ ପ୍ରତି ଆସକ୍ତି ହେତୁରୁ ହିଁ ) [ତାହା] ଦେହିନଂ ନିବଧ୍ନାତି (ଆତ୍ମାକୁ ବାନ୍ଧି ରଖେ

**ଅନୁବାଦ—**

ହେ ଅର୍ଜୁନ, ରଜୋଗୁଣ ସ୍ୱତଃ ଆସକ୍ତିପ୍ରବଣ । ମନୁଷ୍ୟର ଅବଧ ତୃଷ୍ଣା ଓ ଆସକ୍ତି ଦେଇ ଏହା ପ୍ରକାଶିତ ହୋଇଥାଏ । ଏହି ତୃଷ୍ଣା ଓ ଆସକ୍ତି ମନୁଷ୍ୟକୁ ସର୍ବଦା କର୍ମବ୍ୟସ୍ତ କରି ରଖେ ଏବଂ ତାହାହିଁ ବନ୍ଧନର କାରଣ ହୁଏ ।

**ବିଶେଷ ଭାଷ୍ୟ—**

ପ୍ରକୃତିର ରଜୋଗୁଣ ହିଁ ଆମ ସମସ୍ତଙ୍କୁ କର୍ମପ୍ରବଣ କରି ରଖିଛି । ସତ୍ତ୍ୱ ମିଶ୍ରିତ ହେଲେ ଆମର କର୍ମପ୍ରବଣତା ଜ୍ଞାନ ଚର୍ଚ୍ଚା ବା ସତ୍‌କର୍ମରେ ପ୍ରକାଶିତ ହୁଏ । ସତ୍ତ୍ୱ-ଶୂନ୍ୟ ହେଲେ ତାହା କେବଳ କର୍ମପାଇଁ ହିଁ କର୍ମ ଉପରେ ପ୍ରକାଶିତ ହୁଏ, ଯାହା ଭିତରେ କି ନିଜର ଅହଂ-ତୋଷ ଓ ଅନ୍ୟ ଦଶଜଣଙ୍କ ଭିତରେ ନିଜର ପ୍ରାଧାନ୍ୟ ପ୍ରତିଷ୍ଠାର ବାସନା ପ୍ରବଳ ଥାଏ । ବ୍ୟକ୍ତି ଜାତି ଉପରେ "ଯୁଦ୍ଧଂ ଦେହି"—ରବ, ଅସଂଯତ ଯୌନ ତୃଷ୍ଣା ବା ଭୋଜନ ତୃଷ୍ଣା ଇତ୍ୟାଦି କେବଳ କର୍ମ ପାଇଁ କର୍ମର ଆନନ୍ଦ ପ୍ରକାଶ । ଏହାର ଉଚ୍ଚତର ପ୍ରକାଶ ହେଉଛି ଦୁଃସାହସିକ ଅଭିଯାନ ସବୁ ଯାହା ଗତ ସାତ ଶହ ବର୍ଷ ଧରି କେବଳ ୟୁରୋପୀୟ ଜାତି-ମାନଙ୍କ ଭିତରେ ହିଁ ଦେଖା ଦେଇଛି ଏବଂ ଯାହା ଫଳରେ କି ଆଧୁନିକ ବିଜ୍ଞାନ ଓ ସଭ୍ୟତା ଗଢ଼ି ଉଠିଛି । କିନ୍ତୁ ଏହା ସାଥେ ସାଥେ ସେ ଦେଶ-ମାନଙ୍କରେ ଆଧ୍ୟାତ୍ମିକତା ସମତାଳରେ ଗତି ନ କରିବାରୁ, ଭୋଗ ବିଳାସର ପ୍ରାଚୁର୍ଯ୍ୟ ମଧ୍ୟ ସେ ସବୁ ଜାତିମାନଙ୍କୁ ଜୀବନର ହାହାକାରରୁ ରକ୍ଷା କରି ପାରୁ ନାହିଁ । ସେ ଦେଶମାନଙ୍କରେ ଚିକିତ୍ସାଳୟମାନଙ୍କର ଶତକଡ଼ା ୪୦।୫୦ ଭାଗ ବର୍ତ୍ତମାନ କେବଳ ମାନସିକ ଚିକିତ୍ସାଳୟ । ସାମ୍ରାଜ୍ୟବାଦ ପୁଞ୍ଜିବାଦର ପ୍ରତିକ୍ରିୟା ଉପରେ ଦୁଇ ଦୁଇଟି ବିଶ୍ୱଯୁଦ୍ଧ ଓ ଏପରି ନିରୀଶ୍ୱର ରାଷ୍ଟ୍ର-ଦୈତ୍ୟସବୁ ଆବିର୍ଭୂତ ହୋଇଛନ୍ତି, ଯାହା ବ୍ୟକ୍ତିର ବ୍ୟକ୍ତିତ୍ୱକୁ ସ୍ୱୀକାର କରେନା କି ସାମାଜିକ ବା ରାଜନୈତିକ କ୍ଷେତ୍ରରେ ନୈତିକତାକୁ ସ୍ୱୀକାର କରେନା । ଦଳ ଦଳ ପାଶ୍ଚାତ୍ୟ ବୁଦ୍ଧିଜୀବୀ ଆଜି ତେଣୁ ପଳାତକ ବା ପ୍ରାଚ୍ୟ ଖଣ୍ଡରେ ଆତ୍ମିକ ଶାନ୍ତିର ଅନ୍ୱେଷକ ।

( ୮ )

ତମସ୍ତ୍ୱଜ୍ଞାନଜଂ ବିଦ୍ଧି ମୋହନଂ ସର୍ବଦେହିନାଂ
ପ୍ରମାଦାଳସ୍ୟ ନିଦ୍ରାଭିସ୍ତନ୍ନିବଧ୍ନାତି ଭାରତ । ୮ ।

[ହେ] ଭରତ (ଅର୍ଜୁନ) ତମଃ ତୁ (ତମୋ ଗୁଣଟିକୁ) ଅଜ୍ଞାନଜଂ (ଅଜ୍ଞାନତାରୁ ଜାତ) [ବୋଲି ବୁଝିବ] । [ତାକୁ] ସର୍ବ ଦେହି ନାଂ ମୋହନଂ ଭଦ୍ଧି (ସବୁ ଜୀବର ଭ୍ରାନ୍ତ ସୃଷ୍ଟିକାରୀ ବୋଲି ଜାଣିବ ତତ୍ (ତାହା) [ଜୀବକୁ] ପ୍ରମାଦାଳସ୍ୟ ନିଦ୍ରାଭିଃ (ଭ୍ରମ, ଆଳସ୍ୟ ଓ ନିଦ୍ରା ଦ୍ୱାରା ହିଁ) ନିବଧ୍ନାତି (ବନ୍ଧ କରି ରଖେ) ।

## ଅନୁବାଦ—

ହେ ଅର୍ଜୁନ, ତମୋ ଗୁଣକୁ ଏକାନ୍ତରେ ଅଜ୍ଞତାରୁ ଜାତ ବୋଲି ଜାଣିବ । ଏହା ସକଳ ଜୀବକୁ ପ୍ରଭାବିତ କରିଥାଏ । ମାନସିକ ପ୍ରମାଦସବୁ; ଆଳସ୍ୟ ଓ ଅତିଶୟ ନିଦ୍ରାସକ୍ତି ତମୋଗୁଣରହିଁ ପ୍ରତିକ୍ରିୟା ବୋଲି ଜାଣିବ । ଏହିି ସବୁ ଦୁର୍ବଳତା ଦେଇ ହିଁ ତମ ମନୁଷ୍ୟକୁ ବନ୍ଧନରେ ପକାଇ ରଖେ ।

## ବିଶେଷ୍ୟ ଭାଷ୍ୟ—

ତମୋଗୁଣ ସକଳ ଦେଶର ମନୁଷ୍ୟ ସମାଜରେ ସର୍ବାପେକ୍ଷା ଅଧିକ ପରିବ୍ୟାପ୍ତ ଗୁଣ ଏବଂ ମନୁଷ୍ୟର ଅଧିକାଂଶ ଐହିକ ଦୁଃଖର ଜନକ । ଏହାହିଁ ଆମର ସକଳ ଅଜ୍ଞତାର, ସକଳ ଅବୁଝାମଣାର, କୁସଂସ୍କାରର, ଅନ୍ଧବିଶ୍ୱାସର ଏବଂ ତଜ୍ଜନିତ ଦୁଃଖ ଭୋଗର ହେତୁ । କନ୍ଧମାନଙ୍କର ବେଶୀ ହଳଦୀ ହେବ ବୋଲି ହଳଦୀ କିଆରରେ ମେରିଆ ବଳିଦେବା ବା ସତୀତ୍ୱ ବଜାୟ ରଖିବା ପାଇଁ ହିନ୍ଦୁ ବିଧବାମାନଙ୍କୁ ପୋଡିମାରିବା, ବା ପୁରୁଷ ପାଇଁ ବହୁ ବିବାହର ବ୍ୟବସ୍ଥା ରଖି, ସୁକୁମାର ନିରପରାଧା ବାଳିକାମାନଙ୍କ ଉପରେ ନିଷ୍ଠୁର ବୈଧବ୍ୟ ଜବରଦସ୍ତି ଲଦିବା ବା କୋଟି କୋଟି ମନୁଷ୍ୟକୁ ଅଛୁଆଁ ମନେ କରିବା— ଇତ୍ୟାଦି ଘୋର ଅମାନବିକତା ସବୁ ମନୁଷ୍ୟ ମନ ଉପରେ ବୀଭତ୍ସ ତମୋଗୁଣର ପ୍ରଭାବରହିଁ ଫଳ । ଯେଉଁ କଲେରା ରୋଗରେ ସହସ୍ର ସହସ୍ର ଜଗନ୍ନାଥ ଯାତ୍ରୀ ଏଇ କାଲି ପର୍ଯ୍ୟନ୍ତ ପୋକ ମାଛିପରି ରାସ୍ତାକଡରେ ପ୍ରାଣତ୍ୟାଗ କରୁଥିଲେ ଆଜି ବିଜ୍ଞାନର କୃପାରୁ ତାହା ଦୁଃସ୍ୱପ୍ନ ମାତ୍ରରେ ପରିଣତ ହୋଇଛି । ମନୁଷ୍ୟର ବୁଦ୍ଧି ଓ ଦେହକୁ ଜଡୀଭୂତ କରିବା ତମୋଗୁଣର ପ୍ରତ୍ୟକ୍ଷ ଫଳ ଏବଂ ଭାରତବର୍ଷରେ ଏହି ଗୁଣର କୁପ୍ରଭାବ ଯେପରି ଦେଖାଯାଇଛି, ପୃଥିବୀର ଅନ୍ୟ କୌଣସି ଦେଶରେ ହେଲେ ସେପରି ଦେଖାଯାଏ ନାହିଁ । ସାଧାରଣ ଭାରତୀୟ ଏବେ ଉଭୟ ଚିନ୍ତା କରିବାକୁ ଓ କର୍ମ କରିବାକୁ ନାରାଜ । ଫଳରେ, ଧାନଗଛ କପର କରିବାକୁ ହେବ ତାହା ବି ଜାପାନୀ ଓ ଆମେରିକାନ୍ ଆସି ଭାରତୀୟଙ୍କୁ ଶିଖେଇଲେ ଏବଂ ଏତେ ଲଜ୍ଜାକର ଦୁରବସ୍ଥା ଭିତରେ ପଡ଼ ମଧ୍ୟ, ଆମେ

ସମସ୍ତେ ଅଣ୍ଡାଢିବା କୃଷି ଓ ଶିଳ୍ପର ଉତ୍ପାଦନ ବୃଦ୍ଧିରେ ଲାଗିଯାନ୍ତୁ କ'ଣ 'ବନ୍ଦ' ଓ 'ଘେରାଉ' ଓ ଷ୍ଟ୍ରାଇକ ଇତ୍ୟାଦି ଦେଇ ଆମେ ଆମର ଜାତୀୟ ଉତ୍ପାଦନକୁ କମାଉଛୁ କେବଳ ନୁହେଁ, ରେଳ, ବସ୍, ଅଫିସ୍ ସବୁ ଧ୍ୱଂସ କରି ଆମେ ଆମର ସାମାନ୍ୟ ଯାହା ଜାତୀୟ ସମ୍ପଦ ଅଛି ତାକୁହିଁ ନଷ୍ଟ କରି ଚାଲିଛୁ । ତେଣେ ଆଗାମୀକାଲି ଯେଉଁମାନେ ଦେଶର ଦାୟିତ୍ୱ କାନ୍ଧକୁ ନେବେ ସେହି 'ଛାତ୍ର'ମାନେ 'ଛାତ୍ରଦାବୀ' ନାଁରେ ସ୍କୁଲ, କଲେଜ୍; ବିଶ୍ୱବିଦ୍ୟାଳୟ ବନ୍ଦକରି ରାସ୍ତାରେ ସ୍ଲୋଗାନ୍ ଗାଇ ବୁଲୁଛନ୍ତି ଏବଂ କପି କରିହିଁ ଶିକ୍ଷିତ ଓ ଉଚ୍ଚଶିକ୍ଷିତ ବୋଲେଇବା ତାଙ୍କର ନ୍ୟାଯ୍ୟ ଜନ୍ମଗତ ଅଧିକାର ବୋଲି ଦାବୀ କରୁଛନ୍ତି ।

ଭାରତବର୍ଷରେ ସ୍ୱାଧୀନତାର ତମୋଗୁଣ ଓ ତଜ୍ଜନିତ ଅଜ୍ଞତା,ପ୍ରମାଦ, ନିଦ୍ରା (ବୌଦ୍ଧିକ ଓ ଶାରୀରିକ) ଏବଂ ଆଳସ୍ୟ (ବୌଦ୍ଧିକ ଓ ଶାରୀରିକ) ଯେପରି ପରିବ୍ୟାପ୍ତ ହୋଇ ତୁଳନା ଇତିହାସରେ କେବେ ଦେଖା ନ ଥିଲା ବା ଆଜି ସମଗ୍ର ଧରିତ୍ରୀରେ କାହିଁ ହେଲେ ଅନ୍ୟତ୍ର ଦେଖା ମିଳିବନି । ସେହି ଅନୁପାତରେ ଆମର ଦୁଃଖ ପରାଭବ ଓ ଲଜ୍ଜା ମଧ୍ୟ ବିଶ୍ୱଅଲମ୍ପିକ ପ୍ରତିଯୋଗିତାରେ କ୍ଷୁଦ୍ର ଜାପାନ ଓ ଦକ୍ଷିଣ କୋରିଆ ଚଣ୍ଡା ମଣ୍ଡା ସ୍ୱର୍ଣ୍ଣ-ମେଡାଲ ଗୋଟାଇ ନେଇଥିଲା ବେଳେ, ବିରାଟ ଭାରତବର୍ଷ ଗୋଟାଏ ସୁନା-ମେଡାଲ ମଧ୍ୟ ଆଣି ପାରୁନ । କି ଲଜ୍ଜା । ସ୍ୱାମୀ ବିବେକାନନ୍ଦ ଭାରତବର୍ଷରେ ଏହି ପରିବ୍ୟାପ୍ତ ଓ ଘନୀଭୂତ ତମୋଗୁଣର ପ୍ରକାଶରେ ବ୍ୟଥିତ ହୋଇ ଲୋକ ଅକର୍ମା ଓ ଅଳସୁଆ ହେବା ଅପେକ୍ଷା ବରଂ ଡକାୟତ ହେବା ଅଧିକତର କାମ୍ୟ ବୋଲି କହିଛନ୍ତି ଏବଂ ଖାଲି ବସିବସି ଅଜ୍ଞ ଓ ଅନ୍ଧ ଭାବରେ ଗୀତା ପାରାୟଣ କରିବା ଅପେକ୍ଷା ତରୁଣମାନଙ୍କୁ ବରଂ ଫୁଟ୍‌ବଲ୍ ଫିଲ୍ଡ୍‌ରେ ଗୀତା-ପାଠ କରିବାକୁ ହିଁ ଉପଦେଶ ଦେଇଥିଲେ ।

କ'ଣ ଏହାର ପ୍ରତିକାର ? ଜ୍ଞାନ ହିଁ ଏହାର ଏକମାତ୍ର ଉତ୍ତର ଓ ଔଷଧ, ପ୍ରିୟ ପାଠକେ ! ଅତକାୟ ଋଷିଆ ବା ଯୁକ୍ତରାଷ୍ଟ୍ର କଥା ଛାଡ, ଓଡିଶାର ଏକ ଜିଲାଠୁ ବି ସାନ, କ୍ଷୁଦ୍ରାତିକ୍ଷୁଦ୍ର ଇହୁଦୀମାନଙ୍କର ଇଜ୍ରାଏଲ ରାଷ୍ଟ୍ରଟି ଆଜି ଯେ ଏକ ଗୌରବମୟ, ସମୃଦ୍ଧିମୟ ବିଶ୍ୱଶକ୍ତି ରୂପେ ଦଣ୍ଡାୟମାନ ତାର ମୂଳରେ ଏକାନ୍ତ ଭାବରେ ରହିଛି ଜ୍ଞାନର ସାଧନା । ସେ ଜାର୍ଜ ଆଇନଷ୍ଟାଇନ୍ ଓ ୟହୁଦୀ ମେନ୍‌ହୁଇନ୍ ଓ ଫ୍ରୟେଡର ଜାତି । କଠୋର ମାନସିକ ଶ୍ରମପାଇଁ ସେ ଜାତି ପୃଥିବୀର ସର୍ବାଞ୍ଚଳରେ ବିଖ୍ୟାତ । ପୃଥିବୀର ଶ୍ରେଷ୍ଠ ବୈଜ୍ଞାନିକ ଵୁ, ଶ୍ରେଷ୍ଠ ସଙ୍ଗୀତଜ୍ଞ ଵୁ; ଶ୍ରେଷ୍ଠ ଧନୀ ମଧ୍ୟ ଵୁ । ଧନ ଓ ଜନରେ ବହୁଗୁଣ ବଡ ସଂଯୁକ୍ତ ଆରବ ରାଷ୍ଟ୍ରମାନଙ୍କୁ ଏହି ହେତୁ ନା କ୍ଷୁଦ୍ର ଇଜ୍ରାଏଲ ତିନି ଥର ଯୁଦ୍ଧରେ ଲଘା କରି ପକାଇଲା ?

କିନ୍ତୁ ଯେଉଁ ଜାତି ଶିକ୍ଷା ବା' ଏଡୁକେଶନ ବୋଇଲେ କେବଳ ଖଣ୍ଡା ସାର୍ଟିଫିକେଟ-ସଂଗ୍ରହହିଁ ବୁଝେ ଯେଉଁ ଜାତିର ଛାତ୍ର ଆନ୍ଦୋଳନ ହେଉଛି ସ୍କୁଲ କଲେଜକୁ ଗୋଇଠା ମାରି ରାସ୍ତାରେ ରାସ୍ତାରେ ସ୍ଲୋଗାନ ଗାଇ ବୁଲିବା; ଯେଉଁ ଜାତ ଖାଲି ଛୁଟି ରହିବ ଖାଲି ଦାବୀକରି ଶିଖେ, ସେ ଜାତି ଯେ ବରାବର ଦୀନ ଦରିଦ୍ର, ପରାଜିତ, ଅସମ୍ମାନିତ ଓ ଉପହସିତ ରହିବ ଏଥିରେ ବିସ୍ମୟର କାରଣ କ'ଣ ଅଛି ?

ତେଣୁ ସ୍ୱାଧୀନ ଭାରତବର୍ଷର ଏକାନ୍ତ ଆବଶ୍ୟକତା ହେଉଛି ଏହି ଯେ ସେ ଆଜି ସତ୍ତ୍ୱ ଓ ରଜୋଗୁଣରହିଁ ନବିଡ ଅନୁଶୀଳନରେ ଲାଗିଯାଉ । ଆମେ ସତ୍ତ୍ୱ-ଗୁଣୀ ବୋଇଲେ ଭବିଥାଉଁ ସାଧୁ ସନ୍ନ୍ୟାସୀ ବା ସେହିପ୍ରକାର ଲୋକଙ୍କୁ ; କିନ୍ତୁ ପରବର୍ତ୍ତୀ ଶ୍ଳୋକମାନଙ୍କରେ ଗୀତା ସତ୍ତ୍ୱ ଗୁଣର ମୂଖ୍ୟ ପ୍ରକାଶ ଯେ ଜ୍ଞାନ ତାହା ବାରମ୍ବାର ସ୍ପଷ୍ଟ ଘୋଷଣା କରିଛନ୍ତି । ସତ୍ତ୍ୱ-ବାନ୍ ହେବାପାଇଁ ଅ-ସଂସାରୀ ସନ୍ନ୍ୟାସୀ ବା ଭୀରୁ-ନରୀହ ଧରଣର ହିନ-ଅଜ୍ଞ ମନୁଷ୍ୟଟି ମାନ ହେବାପାଇଁ ଗୀତାର ନିର୍ଦ୍ଦେଶ କୌଣସି ଠାରେ ହେଲେ ନାହିଁ । ମହାତ୍ମା ଗାନ୍ଧି ଭୀରୁ, ନରୀହ ଲୋକ ନଥିଲେ; ନ ଥିଲେ ମଧ୍ୟ ବୁଦ୍ଧ, ଖ୍ରୀଷ୍ଟ, ରାମକୃଷ୍ଣ ଓ ବିବେକାନନ୍ଦ । ମନୁଷ୍ୟର ଉଚ୍ଚତମ ଓ ପ୍ରକୃଷ୍ଟ ବିକାଶହିଁ ସତ୍ତ୍ୱଗୁଣ । ସେହି ଅର୍ଥରେ ଆମର ପଠାଣୀ ସାଁମନ୍ତେ, ଭୀମା ଭୋଇ, ଗଙ୍ଗାଧର ମେହେରଙ୍କଠାରୁ ଆରମ୍ଭ କରି ଆଇନ୍‌ଷ୍ଟାଇନ୍, ଫ୍ରୟେଡ ଓ ୟହୁଦୀ ମେନୁଇନ୍ ଆଦି ସତ୍ତ୍ୱବାନ୍ ମନୁଷ୍ୟ—କାରଣ ଏ ପ୍ରତ୍ୟେକଙ୍କ ଭିତରେ ନରତ୍ୱର ଏକ ଏକ ବିଭବର ଚରମ ପ୍ରକାଶ ଘଟିଛି ଏବଂ ସେ ସବୁ ଘଟିଛି । କଠୋର, ନିରବଚ୍ଛିନ୍ନ ମାନସିକ ଶ୍ରମ ଓ ଅଧ୍ୟବସାୟ ଯୋଗୁଁ ଏବଂ ସଂଯମ ଓ ସାଧନା ଯୋଗୁଁ । ବିଶୃଙ୍ଖଳତା, ଉଚ୍ଛୃଙ୍ଖଳତା, ଅଭଦ୍ରତା, ପରିଶ୍ରମକାତରତା ଓ ଅନୈତିକତା ଇତ୍ୟାଦି, ରଜୋଗୁଣର ମଧ୍ୟ ଲକ୍ଷଣ ହୋଇ ନ ପାରେ । କାରଣ, ରଜୋଗୁଣ ଉଚ୍ଚ ଅଭିଳାଷ ଦ୍ୱାରା ପ୍ରଣୋଦିତ ହେବ । ସମସ୍ତ ଧ୍ୱଂସକାରୀ ଗୁଣ ସମ୍ପୂର୍ଣ୍ଣତଃ ତମୋଭବ । ଏହ ଦ୍ୱାରା କୌଣସି ବ୍ୟକ୍ତି କୌଣସି ସମାଜ ବା କୌଣସି ଜାତିର ସାମାନ୍ୟତମ କଲ୍ୟାଣ ତ ସମ୍ଭବ ନୁହେଁ ବରଂ ଏହା ନିଶ୍ଚିତ ଭବରେ ଡାକି ଆଣିବ ସକଳ ଅକଲ୍ୟାଣକୁ ।

ଆଜି ଭାରତୀୟ ଜାତୀୟ ଜୀବନର ସବୁ ସ୍ତର କେବଳ ତମୋମୟ । ପାଠକେ ଧରିନେବେ ଯେ, ସତ୍ତ୍ୱଗୁଣୀ ଲୋକ୍ ସେହି ଯେ ନ୍ୟାୟ-ନୀତି-ପରାୟଣ, ସତ୍ୟ ଜ୍ଞାନାନୁଶୀଳନ-ତତ୍‌ପର, ଶାନ୍ତ ଓ ସ୍ୱାର୍ଥହୀନ ।

ରଜୋଗୁଣୀ ସେହି ଯେ ସର୍ବଦା କର୍ମ ଚଞ୍ଚଳ ଅଥଚ ଯାର କର୍ମଜାଳର

ଉଦ୍ଦେଶ୍ୟ ହେଉଛି କେବଳ ଧନଲାଭ, କ୍ଷମତା ଲାଭ ଇତ୍ୟାଦି । ସବୁ ଲାଭ ପଛରେ ତାର ନିଜର ସ୍ୱାର୍ଥଟି ରହିଥିବ ।

ତମୋଗୁଣୀ ସେହି ଯା'ର ମନ ଓ ଶରୀର ସ୍ପନ୍ଦନହୀନ, ଆଳସ୍ୟ ପରାୟଣ, ଉଦ୍ୟମହୀନ ମୌଳିକ ଚିନ୍ତାହୀନ ଏବଂ ଯା'ର ସମଗ୍ର ଜୀବନ କେବଳ ବାହ୍ୟ ଘଟଣା-ଚକ୍ରର କ୍ରୀଡନକ ମାତ୍ର । ସେ ନିଜକୁ ବା ନିଜର ପରିବେଶକୁ ସାମାନ୍ୟ ଭାବରେ ମଧ୍ୟ ପରିବର୍ତ୍ତନ କରିପାରେନା ।

ଆମେ ଭାରତବର୍ଷର ଲୋକେ ବର୍ତ୍ତମାନ ମୋଟାମୋଟି ଏହି ତୃତୀୟ ସ୍ତରରେ ହିଁ ରହିଛୁ ।

( ୯ )

ସତ୍ତ୍ୱଂ ସୁଖେ ସଞ୍ଜୟତି ରଜଃ କର୍ମଣି ଭାରତ
ଜ୍ଞାନମାବୃତ୍ୟ ତୁ ତମଃ ପ୍ରମାଦେ ସଞ୍ଜୟତ୍ୟୁତ । ୯ ।

[ହେ] ଭାରତ (ଅର୍ଜ୍ଜୁନ) ସତ୍ତ୍ୱଂ (ସତ୍ତ୍ୱ ଗୁଣ) [ମନୁଷ୍ୟକୁ] ସୁଖେ ସଞ୍ଜୟତି (ସୁଖ ସହିତ ଯୋଗ କରାଇଥାଏ ) ରଜଃ କର୍ମଣି (ରଜୋଗୁଣ ଯୋଗ କରାଇଥାଏ କର୍ମ ସହିତ) ଉତ (ଏବଂ) ତମଃ ତୁ ଜ୍ଞାନଂ ଆବୃତ୍ୟ (ତମୋଗୁଣ, ଜ୍ଞାନ ଅର୍ଥାତ ବୁଦ୍ଧି ବିଚାରକୁ ଆଚ୍ଛନ୍ନ କରି ରଖି) ପ୍ରମାଦେ ସଞ୍ଜୟତି ( ସକଳ ପ୍ରକାର ଭ୍ରାନ୍ତିମୟ ବ୍ୟବହାରରେ ନେଇ ଥୁଏ) ।

ଅନୁବାଦ –

ହେ ଅର୍ଜ୍ଜୁନ, ସତ୍ତ୍ୱ ଗୁଣ ଯାହାହେଉ, ମନୁଷ୍ୟକୁ ସୁଖରେ ନେଇ ପହଞ୍ଚାଇ ଥାଏ । ରଜୋଗୁଣ ପହଞ୍ଚାଏ ବିବିଧ କର୍ମ ଚଞ୍ଚଳତାରେ, କିନ୍ତୁ ତମ, ମନୁଷ୍ୟର ସହଜ ବୁଦ୍ଧିକୁ ଅକର୍ମଣ୍ୟ କରି ଦେଇ, ମନୁଷ୍ୟକୁ ଚରବର ନେଇ ପହଞ୍ଚାଏ ଜୀବନର ବିବିଧ ପ୍ରମାଦରେ ।

( ୧୦ )

ରଜସ୍ତମଶ୍ଚାଭିଭୂୟ ସତ୍ତ୍ୱଂ ଭବତି ଭାରତ
ରଜଃ ସତ୍ତ୍ୱଂ ତମଶ୍ଚୈବ ତମଃ ସତ୍ତ୍ୱଂ ରଜସ୍ତଥା । ୧୦ ।

[ହେ] ଭାରତ (ଅର୍ଜ୍ଜୁନ) [ବ୍ୟକ୍ତି ବିଶେଷରେ ମନୁଷ୍ୟମାନଙ୍କର ଠାରେ କେଉଁଠି ] ସତ୍ତ୍ୱଂ ( ସତ୍ତ୍ୱଗୁଣ ) ରଜଃ ତମଃ ଚ ଅଧିଭୂୟ

ଭବତି (ରଜୋତମ ଗୁଣକୁ ଅଭିଭୂତ କରି, ପରାଜିତ କରି ଠିଆ ହୁଏ) [କେଉଁଠି] ରଜଃ ସତ୍ତ୍ୱଂ ତମଃ ଚ (ରଜୋଗୁଣ ସତ୍ତ୍ୱ ଓ ତମକୁ ତଳେ ପକାଇ ପ୍ରବଳ ହୋଇ ଉଠେ) [ଏବଂ କେଉଁଠି] ତମଃ ସତ୍ତ୍ୱଂ ରଜଃ ଏବ (ତମୋଗୁଣ ସତ୍ତ୍ୱ ଓ ରଜକୁ ଅଭିଭୂତ କରି ଦୁର୍ଦ୍ଦମନୀୟ ହୋଇ ଉଠେ।

## ଅନୁବାଦ—

ହେ ଅର୍ଜ୍ଜୁନ, ଏହି ସତ୍ତ୍ୱ, ରଜ, ତମ ତିନୋଟିଯାକ ଗୁଣ ସବୁ ମନୁଷ୍ୟଙ୍କ ଭିତରେ ଅବସ୍ଥାନ କଲେ ହେଁ ବିଶେଷ ବିଶେଷ ମନୁଷ୍ୟ ଠାରେ ବିଶେଷ ବିଶେଷ ଭାବରେ ପ୍ରକଟିତ ହୋଇଥାନ୍ତି । କେଉଁ ବ୍ୟକ୍ତିଠାରେ ସତ୍ତ୍ୱ ଗୁଣ, ରଜ ଓ ତମ ଉଭୟକୁ ପରାଭୂତ କରି ବଳୀୟାନ୍ ହୋଇଉଠେ । କେଉଁ ବ୍ୟକ୍ତିଠାରେ ରଜୋଗୁଣ କେବଳ ତମ ନୁହେଁ ସତ୍ତ୍ୱକୁ ମଧ୍ୟ ତଳେ ପକାଇ ଉପରକୁ ଉଠେ ଏବଂ କେଉଁଠି ମଧ୍ୟ ତମ ରଜ ଓ ସତ୍ତ୍ୱକୁ ତଳକୁ ଠେଲି ଉପରକୁ ଉଠେ ।

## ବିଶେଷ ଭାଷ୍ୟ—

ତେବେ ଏହିପରି ଘଟି ଯିବାର ଆମେ କିପରି ଜାଣିବା ? ମାପ କାଠି କ'ଣ ? ପରବର୍ତ୍ତୀ ଶ୍ଳୋକମାନଙ୍କରେ ତାହାହିଁ ବର୍ଣ୍ଣିତ ହେଉଛି ।

(୧୧)

ସର୍ବ ଦ୍ୱାରେଷୁ ଦେହେଽସ୍ମିନ୍ ପ୍ରକାଶ ଉପଜାୟତେ
ଜ୍ଞାନଂ, ଯଦା ତଦା ବିଦ୍ୟାଦ୍ ବିବୃଦ୍ଧଂ ସତ୍ତ୍ୱ ମିତ୍ୟୁତ । ୧୧ ।

ଯଦା (ଯେତେବେଳେ) ଅସ୍ମିନ୍ ଦେହେ (ଏହି ମନୁଷ୍ୟ ଶରୀରରେ) ସର୍ବଦ୍ୱାରେଷୁ (ସକଳ ଇନ୍ଦ୍ରିୟ ଦେଇ) ଜ୍ଞାନଂ ପ୍ରକାଶଃ ଉପଜାୟତେ (କେବଳ ଜ୍ଞାନ ବା ବୋଧ ହିଁ ପ୍ରକାଶିତ ହୋଇ ରହେ) ତଦା ଉତ (ସେତିକିବେଳେ ହିଁ) ସତ୍ତ୍ୱଂ ବିବୃଦ୍ଧଂ ଇତି ବିଦ୍ୟାତ୍ [ସେହି ମନୁଷ୍ୟ ଠାରେ] [ସତ୍ତ୍ୱଗୁଣ ପ୍ରବୃଦ୍ଧ ଓ ବଳବତ୍ତର ହୋଇଛି ବୋଲି ଜାଣିବ) ।

**ଅନୁବାଦ—**

ହେ ଅର୍ଜ୍ଜୁନ, ଯେତେବେଳେ ତୁମେ ଦେଖିବ ଯେ କୌଣସି ଲୋକର ସକଳ ଇନ୍ଦ୍ରିୟ ଦେଇ ଜ୍ଞାନ ଓ ବିଜ୍ଞାନ ପ୍ରକଟିତ ହୋଇ ଚାଲିଛି ତେବେ ଧରନେବ ଯେ ସେହି ଲୋକଠାରେ ସତ୍ତ୍ୱଗୁଣ ଯଥୋଚିତ ଭାବରେ ପ୍ରବୃଦ୍ଧି ଲାଭ କରିଛି ।

**ବିଶେଷ ଭାଷ୍ୟ—**

ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା, ଉଦର, ଜନନେନ୍ଦ୍ରିୟ, ହାତ ଗୋଡ଼— ଏହିସବୁ ବିବିଧ ଇନ୍ଦ୍ରିୟମାନଙ୍କ ଦେଇ ତ ଆମ୍ଭମାନଙ୍କର ବ୍ୟକ୍ତିତ୍ୱ ପ୍ରକାଶିତ ହୁଏ ? ଯେଉଁ ବ୍ୟକ୍ତିତ୍ୱ ଭିତରେ ସତ୍ତ୍ୱଗୁଣ ବୃଦ୍ଧିପ୍ରାପ୍ତ ହେଲାଣି, ଗୀତା କହନ୍ତି ଯେ ତାର ଏହିସବୁ ଦ୍ୱାର ଦେଇ ତାର ଦୈହିକ କର୍ମ ସମ୍ପାଦିତ ହେବା ସାଥେ ସାଥେ ବୋଧି, ଜ୍ଞାନ ବା ବିଜ୍ଞତା ମଧ୍ୟ ପ୍ରକଟିତ ହୋଇ ଉଠୁଥିବ । ଆମେ ଆମର ମୂର୍ଖତା, ଅଜ୍ଞତା, ପ୍ରମାଦ ଓ ଅବିମୃଶ୍ୟକାରିତା ଆଦି ପ୍ରକାଶ କରିଥାଉଁ ସାଧାରଣତଃ ଜନନେନ୍ଦ୍ରିୟ ଓ ରସନେନ୍ଦ୍ରିୟ ଦେଇ, ପୁଣି ଆମ ମୁହଁରୁ ଯେଉଁକଥା ବାହାରେ, ତା' ଦେଇ ଆମ ନିଜର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟ, ସମାଜରେ ଆମର ମର୍ଯାଦା ଓ କର୍ମକାରିତା, ଆମର ପାରିପାର୍ଶ୍ୱିକ ଅବସ୍ଥା ସହିତ ଆମର ସୁସଂବଂଧ ଇତ୍ୟାଦି ପ୍ରଚୁର ନିର୍ଭର କରେ । ଆମେ ଯେ ଭାବରେ ଆମର ଏହି ଇନ୍ଦ୍ରିୟମାନଙ୍କୁ ବ୍ୟବହାର କରୁ, ପ୍ରତ୍ୟେକ ଇନ୍ଦ୍ରିୟର ବାଞ୍ଛନୀୟ ବ୍ୟବହାର ଅଛି, ପୁଣି ଅଛି ଅବାଞ୍ଛନୀୟ ଓ ଅହିତକର ବ୍ୟବହାର । ଯେ ଜ୍ଞାନୀ, ଯେ ବୁଦ୍ଧ, ଯେ ସତ୍ତ୍ୱଗୁଣସମ୍ପନ୍ନ ତାଙ୍କର ସକଳ ଇନ୍ଦ୍ରିୟ କେବଳ ବାଞ୍ଛନୀୟ ରୀତିରେ, ପ୍ରଜ୍ଞାଯୁକ୍ତ ଭାବରେହିଁ ଆତ୍ମ-ପ୍ରକାଶ କରିଥାଏ । ତାହାହିଁ ଗୀତାଙ୍କ ଅଭିପ୍ରାୟ ଯେତେବେଳେ ସେ କହନ୍ତି, "ଯାହାର ସତ୍ତ୍ୱଗୁଣ ବିବୃଦ୍ଧ, ତାଙ୍କର ସବୁ ଦ୍ୱାର ଦେଇ ଜ୍ଞାନହିଁ ପ୍ରକାଶିତ ହୋଇଥାଏ ।"

ଏବଂ ଆମେ ଠିକ୍ ଏହି କାରଣରୁ ଏହା ଦେଖି ବିସ୍ମିତ ହେବା ଯେ, ସତ୍ତ୍ୱଗୁଣ ସମ୍ପନ୍ନ ବୋଲି ଯେଉଁମାନେ ଇତିହାସରେ ଅବିବାଦୀୟ ଭାବରେ ସମ୍ମାନିତ, ସେମାନେ ସାଧାରଣ ଲେଖାପଢ଼ା ନ କରିଥିଲେ ମଧ୍ୟ, ବା ତାଙ୍କୁ କୌଣସି ଅର୍ଥରେ ବିଦ୍ୱାନ ବା ପାଠୁଆ ଲୋକ ବୋଲି କୁହା ନ ଯାଇ ପାରିଲେ ମଧ୍ୟ, ଜୀବନର ଏପରି ବିଭାଗ ନାହିଁ ଏପରି ସମସ୍ୟା ନାହିଁ, ଯାହା ଉପରେ କି ସେମାନେ ପରମ ସତ୍ୟ ଓ ପରମତତ୍ତ୍ୱ କହିଯାଇ ନାହାନ୍ତି । ନିକଟତମ ଦୃଷ୍ଟାନ୍ତହିଁ, ଗାନ୍ଧିଜୀ । ସବୁପ୍ରକାର ନର-ନାରୀ, ସବୁପ୍ରକାର ସମସ୍ୟା ନେଇ ତାଙ୍କ ପାଖକୁ ସମାଧାନ ପାଇଁ

ଯାଉଥିଲେ ଓ ସମାଧାନ ଘେନ ଫେରୁଥିଲେ । ଯାର ବାକ୍ୟରେ ଇତିହାସର ସର୍ବାଧିକ ଶକ୍ତିଶାଳୀ ସାମ୍ରାଜ୍ୟ ଥରୁଥିଲା, ସେ ଉପଦେଶ ଦେଉଥିଲେ ଛୁଚାକଟା ଓ କାଗଜ ତିଆରଠୁ ଆରମ୍ଭକରି ଦାମ୍ପତ୍ୟ ଜୀବନ, ସ୍ୱାସ୍ଥ୍ୟ ଓ ଚିକିତ୍ସା ଉପରେ ଏବଂ ଜମିରେ କିପରି ଖତ ଦେବାକୁ ହେବ ତା' ଉପରେ ମଧ୍ୟ । ଯିଏ ମହତ୍ ତା' ଦୃଷ୍ଟିରେ କୌଣସି କର୍ମହୀନ ବା କ୍ଷୁଦ୍ର ନୁହେଁ । ତା ସ୍ପର୍ଶରେ ଆମର ଦୈନନ୍ଦିନ ଗତାନୁଗତିକ ଜୀବନଟାହିଁ ବୀରତ୍ୱମୟ ହୋଇଉଠେ ।

ଗାନ୍ଧି, ବୁଦ୍ଧ, ଖ୍ରୀଷ୍ଟ ଓ ମହମ୍ମଦଙ୍କ ଜୀବନୀ ଆଲୋଚନା କଲେ ଆମେ ଠିକ୍ ଏହି ଧରଣକର ଚିତ୍ରହିଁ ଦେଖୁ ଏବଂ ମନେହୁଏ ଯେ, ଏହା ସମ୍ଭବ ହୁଏ, କେବଳ ସେମାନଙ୍କର ବ୍ୟକ୍ତିତ୍ୱ ଭିତରେ ସତ୍ତ୍ୱଗୁଣର ବୃଦ୍ଧି ଫଳରେ—ଠିକ୍ ଯେପରି ଗୀତା ଆଲୋଚ୍ୟମାନ ଶ୍ଳୋକରେ କହିଛନ୍ତି । ତାହାକୁହିଁ ଗୀତା ଅପୂର୍ବ ଆଳଂକାରିକ ରୀତିରେ ବର୍ଣ୍ଣନା କରଛନ୍ତି—ସର୍ବେନ୍ଦ୍ରିୟ ଦେଇ ଜ୍ଞାନ ବା ପ୍ରଜ୍ଞା ପ୍ରକାଶିତ ହେବାର କାରଣ ସତ୍ତ୍ୱର ପ୍ରାବଲ୍ୟ ଘଟିଲେ, ମନୁଷ୍ୟ-ବ୍ୟକ୍ତିତ୍ୱ ସମଗ୍ର ଭାବରେ କେବଳ ସତ୍ୟମୟ ଓ ଜ୍ଞାନମୟ ହୋଇ ଉଠିବ । ସେଠି ଅଜ୍ଞତା ଓ ପ୍ରମାଦର ଅସ୍ତିତ୍ୱହିଁ ନ ଥିବ । ତେଣୁ ସେହି ବୁଦ୍ଧ ବା ମହାତ୍ମା ବା ସତ୍ତ୍ୱବାନ୍ ପୁରୁଷୋତ୍ତମ ଯାହା କହିବେ, ଯାହା କରିବେ, ଯେପରି ଚାଲିବେ, ଯେପରି ବସିବେ ସବୁଠି ସବୁକାମରେ, ସବୁ ବ୍ୟବହାରରେ କେବଳ ପ୍ରଜ୍ଞାହିଁ ପ୍ରକଟିତ ହୋଇ ଚାଲିବ ।

( ୧୨ )

ଲୋଭଃ ପ୍ରବୃତ୍ତିରାରମ୍ଭଃ କର୍ମଣାମଶମଃ ସ୍ପୃହା
ରଜସ୍ୟେତାନି ଜାୟନ୍ତେ ବିବୃଦ୍ଧେ ଭରତର୍ଷଭ ।୧୨।

[ହେ] ଭରତର୍ଷଭ (ଅର୍ଜୁନ) ଲୋଭଃ (ପରଦ୍ରବ୍ୟ ପାଇଁ ଇଚ୍ଛା) ପ୍ରବୃତ୍ତିଃ (ସବୁବେଳେ ବହିର୍ମୁଖୀ ଭାବ) କର୍ମଣାଂ ଆରମ୍ଭଃ (ନାନାକର୍ମ ହାତକୁ ନେବା) ଅଶମଃ (ଅସ୍ଥିରତା) ସ୍ପୃହା (ବିଷୟତୃଷ୍ଣା) ରଜସି ପ୍ରବୃଦ୍ଧେ ଏତାନି ଜାୟନ୍ତେ (ରଜୋଗୁଣ ପ୍ରବୃଦ୍ଧ ହୋଇ ଉଠିଲେ ଏହିସବୁ ଦେଖା ଦେଇଥାନ୍ତି) ।

ଅନୁବାଦ—

ହେ ଅର୍ଜୁନ, ଯାହାଠାରେ ରଜୋଗୁଣ ବୃଦ୍ଧି ପାଇଥିବ, ସେ ଲୋକଠାରେ ଦେଖିବାକୁ ମିଳିବ, ପରଦ୍ରବ୍ୟ ପାଇଁ ଲୋଭ, ସର୍ବଦା ବହିର୍ମୁଖୀ

ଚିନ୍ତା, ନାନାକର୍ମରେ ନିଜକୁ ଜଡ଼ିତ କରିବା, ନାନା ସାଂସାରିକ ତୃଷ୍ଣା ଏବଂ ତଜ୍ଜନିତ ମାନସିକ ଅସ୍ଥିରତା ।

ବିଶେଷ ଭାଷ୍ୟ—

ଅବଶ୍ୟ ଗୀତା, ସାଧକମାନଙ୍କୁ ସାବଧାନ କରାଇ ଦେବାପାଇଁହିଁ ରଜୋଗୁଣର ଆତିଶଯ୍ୟ ହେତୁ ତାହା କିପରି ଅଶୋଭନୀୟ ଭାବରେ ପ୍ରକାଶ ପାଇପାରେ, ତାହାହିଁ ଏଠାରେ ଦେଖାଇ ଦେଇଛନ୍ତି । ଉପରେ ନବମ ଶ୍ଳୋକରେ ଗୀତା ଯେ କହିଛନ୍ତି "ରଜଃ କର୍ମଣି"—ରଜଗୁଣ କର୍ମରେ ପ୍ରକାଶିତ ହୁଏ—ତାହାହିଁ 'ରଜ'ର ପ୍ରକୃତ ଅସ୍ତିତ୍ୱ । କିନ୍ତୁ ସାଧୁ, ନିଷ୍ପାପର କୃଷକ ଯେପରି 'କର୍ମନିରତ' ସେହିପରି ମଧ୍ୟ କର୍ମନିରତ ଡକାଇତ ଓ କଳାବଜାରୀ । ତେଣୁ ଅନିୟନ୍ତ୍ରିତ ହେଲେ ଆମର କର୍ମ, ନିଜ ପରିଶ୍ରମରେ ଦ୍ରବ୍ୟ ଉତ୍ପାଦନ ବା ସଂଗ୍ରହକୁ ନ ଯାଇ, ପରଦ୍ରବ୍ୟ ଅପହରଣ କଥା ଭାବିବ, ସୁଖପାଇଁ ସର୍ବଦା ଧାଇଁବ ଏଣେତେଣେ, ଅର୍ଥାତ୍ ସବୁବେଳେ ବହିର୍ମୁଖୀ ରହିବ । କିନ୍ତୁ 'ଯେହି ସଂସ୍ପର୍ଶଜାଃ ଭୋଗାଃ ଦୁଃଖଯୋନୟଃ ଏବ ତେ" (ଗୀ: ୫/୨୨)—ତେଣୁ ବାହାରୁ ଶାନ୍ତି ଓ ସୁଖ ମିଳିପାରିବନି , ଫଳରେ ବ୍ୟର୍ଥତୃଷ୍ଣା ଓ ଚରମ ଅଶାନ୍ତି । ଅର୍ଥାତ୍ କର୍ମପ୍ରଧାନ ରଜୋଗୁଣ ଆମର ଏକାନ୍ତ ଆବଶ୍ୟକ । ଏପରିକି ରଜୋଗୁଣ ବିନା, ଅର୍ଥାତ୍ କର୍ମପ୍ରବଣତା ବିନା ଅଭିବୃଦ୍ଧ ସତ୍ତ୍ୱଗୁଣ ମଧ୍ୟ ଅକାମୀ । ବୁଦ୍ଧ, ଗାନ୍ଧି, ଖ୍ରୀଷ୍ଟ, ମହମ୍ମଦ ପ୍ରଭୃତି ପୁରୁଷୋତ୍ତମମାନେ ବିସ୍ମୟକର ଭାବରେ କର୍ମପ୍ରବଣ ଓ କର୍ମଠ ଥିଲେ । ସେହିପ୍ରକାର ରଜୋଗୁଣ ଅର୍ଥାତ୍ ସତ୍ତ୍ୱ-ରଞ୍ଜିତ ରଜୋଗୁଣ, ଯାହା ନିଜକୁ ଉନ୍ନୀତ କରାଏ ଓ ଲୋକ ସଂଗ୍ରହ ଲକ୍ଷ୍ୟରେ ଆମର ବ୍ୟକ୍ତିତ୍ୱକୁ ପଞ୍ଚାୟିତ କରିବାରେ ସାହାଯ୍ୟ କରେ, ତାହା ଆମର ପ୍ରତ୍ୟେକର ଆଧ୍ୟାତ୍ମିକ ଜୀବନ ପାଇଁ ଏବଂ ସାମୂହିକ ସାମାଜିକ ସ୍ୱାସ୍ଥ୍ୟ ଓ ଶ୍ରୀବୃଦ୍ଧି ପାଇଁ ମଧ୍ୟ ଏକାନ୍ତ ଆବଶ୍ୟକ । ଆତ୍ମ-ସୁଖ ଓ ସାମାଜିକ ପ୍ରତିପତ୍ତି ପାଇଁହିଁ କେବଳ ଆବଶ୍ୟକ ଯେଉଁ କର୍ମଠତା, ସେ ସବୁ ବନ୍ଧନର କାରଣ ।

( ୧୩ )

ଅପ୍ରକାଶୋଽପ୍ରବୃତ୍ତିଶ୍ଚ ପ୍ରମାଦୋ ମୋହ ଏବ ଚ
ତମସ୍ୟେତାନି ଜାୟନ୍ତେ ବିବୃଦ୍ଧେ କୁରୁନନ୍ଦନ ।୧୩।

[ହେ] କୁରୁନନ୍ଦନ (ଅର୍ଜୁନ) ଅପ୍ରକାଶଃ (ଅନ୍ଧକାର ଅର୍ଥାତ୍ ବୌଦ୍ଧିକ ଜଡ଼ତା ଓ ଅନ୍ଧତା) ଅପ୍ରବୃତ୍ତିଃ (ଆଳସ୍ୟ) ପ୍ରମାଦଃ (କର୍ତ୍ତବ୍ୟକୁ ନ କରି ଅକର୍ତ୍ତବ୍ୟ

କରିବା) ମୋହଃ (ମିଥ୍ୟା ଆକର୍ଷଣ) ଏତାନ ଏବ ଚ ତମସି ବବୃଦ୍ଧେ ଜାୟନ୍ତେ (ଏସବୁ ତମୋଗୁଣର ପ୍ରାବଲ୍ୟ ହେଲେ ଦେଖା ଦେଇଥାନ୍ତି) ।

## ଅନୁବାଦ—

ହେ ଅର୍ଜୁନ, ତମ ଯେଉଁଠି ବିଶେଷ ପ୍ରବଳ, ସେଠି କେବଳ ଉଚିତ ବ୍ୟକ୍ତିତ୍ୱର ଅପ୍ରକାଶ ଅର୍ଥାତ୍ ବୌଦ୍ଧିକ ଓ ଶାରୀରିକ ନିଷ୍କ୍ରିୟତା, ଆଳସ୍ୟରେ ଅତ୍ୟନ୍ତ ସୁଖ-ବୋଧ ଅର୍ଥାତ୍ ଶ୍ରମ-କାତରତା, ବିବିଧ ବୌଦ୍ଧିକ ଭ୍ରାନ୍ତି ଏବଂ ସଂସାର ବିଷୟରେ ଏକାନ୍ତ ମୋହଗ୍ରସ୍ତ ଭାବ ।

## ବିଶେଷ ଭାଷ୍ୟ—

ତମୋଗୁଣ ସମ୍ପର୍କରେ ଉପରେ ଯଥେଷ୍ଟ କୁହାଯାଇଛି । ଆମେ ଗୀତାର ତମୋଗୁଣ ସଂପୃକ୍ତ ଏହି ଓ ପୂର୍ବଶ୍ଳୋକ ସବୁ ମିଶାଇ ସେ ସବୁର ତାତ୍ପର୍ଯ୍ୟକୁ ଆମ ନିଜ ନିଜ ଜୀବନ, ବ୍ୟକ୍ତିତ୍ୱ ଓ ଅଭିଜ୍ଞତାରେ ପ୍ରୟୋଗ କଲେ ଆମେ ନଜେଇ ଜାଣିପାରିବା ଆମେ ପ୍ରତ୍ୟେକେ କେତେ ପରିମାଣରେ ପ୍ରକୃତରେ ତମୋଗ୍ରସ୍ତ । ତେଣୁ ଆଲୋଚନା ନିଷ୍ପ୍ରୟୋଜନ ।

( ୧୪ )

ଯଦା ସତ୍ତ୍ୱେ ପ୍ରବୃଦ୍ଧେତୁ ପ୍ରଳୟଂ ଯାତି ଦେହଭୃତ୍
ତଦୋତ୍ତମବିଦାଂ ଲୋକାନମଳାନ୍ ପ୍ରତିପଦ୍ୟତେ ।୧୪।

ଯଦା ସତ୍ତ୍ୱେ ପ୍ରବୃଦ୍ଧେ (ସତ୍ତ୍ୱଗୁଣ ପ୍ରବୃଦ୍ଧ ହୋଇଥିବା ଅବସ୍ଥାରେ) [ଯଦି] ଦେହଭୃତ୍ ପ୍ରଳୟଂ ଯାତ (ସାଧକ ମୃତ୍ୟୁପ୍ରାପ୍ତ ହୁଅନ୍ତି) ତଦା (ତେବେ) [ସାଧକ] ଉତ୍ତମବିଦାଂ ଅମଳାନ୍ ଲୋକାନ୍ ପ୍ରାପ୍ନୋତି (ସୁଜ୍ଞାନୀମାନଙ୍କ ଆତ୍ମା ପାଇଁ ନିର୍ଦ୍ଦିଷ୍ଟ ନର୍ମଳ ଲୋକ ସବୁକୁ ପ୍ରାପ୍ତ ହୋଇଥାନ୍ତି) ।

## ଅନୁବାଦ—

ହେ ଅର୍ଜୁନ, ସତ୍ତ୍ୱଗୁଣ ପ୍ରବୃଦ୍ଧ ଅବସ୍ଥାରେ ମନୁଷ୍ୟ ଦେହ ତ୍ୟାଗକଲେ, ସୁଜ୍ଞାନୀମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଲୋକ ପ୍ରାପ୍ତ ହୁଏ ।

## ବିଶେଷ ଭାଷ୍ୟ—

ପାଠକେ ଗୀତାର ଅକ୍ଷର ବ୍ରହ୍ମଯୋଗ ନାମକ ଅଷ୍ଟମ ଅଧ୍ୟାୟରେ ବର୍ଣ୍ଣିତ, ଆମେ କେଉଁ ଋତୁରେ ମଲେ ବା ମଲାପରେ କୁଆଡେ ଯାଉ ଓ କଣ

ହେଉ, ସେ ବିଷୟ ସ୍ମରଣ କରନ୍ତୁ । ବର୍ତ୍ତମାନ୍ ସତ୍ତ୍ୱ, ରଜ ଓ ତମ ସମ୍ପର୍କରେ ମଧ୍ୟ ସେହିପରିହିଁ କୁହାଯାଉଛି ।

ଯେ ହେତୁ ଏହା ଅର୍ଥାତ୍ ମଲାପରେ କେଉଁ ମନୁଷ୍ୟ କେଉଁଠିକି ଯାଏ ଇତ୍ୟାଦି ଜ୍ଞାନ, ଆମ ଅଭିଜ୍ଞତାର ବା ପ୍ରମାଣ ଓ ଯୁକ୍ତିର ବାହାରେ, ଏ ସମ୍ପର୍କରେ ଆମେ ଦୃଢ ଭବରେ କିଛିହିଁ କହି ନ ପାରୁ । ପାଠକ ଗୀତାଙ୍କ କଥା ଗ୍ରହଣ କରିପାରନ୍ତି, ନକରି ପାରନ୍ତି ।

କିନ୍ତୁ ଏହା ଯୁକ୍ତିଯୁକ୍ତ ବୋଧ ହେଉଛି ଯେ, ଆମେ ଆମର ଜୀବନଟାଯାକ ଯେପରି ବଞ୍ଚିଥିବା, ଆମ ଚିତ୍ତର ମୌଳିକ ଅଭିମୁଖ୍ୟ ସବୁ ଯେଉଁ ସ୍ତର ବା ଦିଗରେ ଥିବେ, ଆମର ମରଣ-ବିନ୍ଦୁରେ ଆମେ ହୁଏତ ମୁଖ୍ୟତଃ ସେହିପରି ଦେଖାଦେବା । ଅର୍ଥାତ କୃପଣ ସେତେବେଳେ ତା' ଟଙ୍କା କଥା, ଯୌନବିଳାସୀ ଯୌନସୁଖ କଥା, ପ୍ରକୃତ ଦେଶପ୍ରେମୀ ତା' ଜାତିକଥା; ବିଜ୍ଞାନୀ ତା' ଗବେଷଣା କଥା, ସ୍ନେହଶୀଳ ଗୃହସ୍ଥ ତାର ଅସହାୟ ପିଲାପିଲିଙ୍କ କଥାହିଁ ଭବି ବସିବା ବୋଧହୁଏ ସ୍ୱାଭବିକ ହେବ ଏବଂ ଆମର ସେହି ମୁହୂର୍ତ୍ତ କେତୋଟିର ଜମା-ଖର୍ଚ୍ଚ ଉପରେ ବୋଧହୁଏ ଆମର ପରବର୍ତ୍ତୀ ଜୀବନ ଯେ ନିର୍ଭର କରୁଥିବ ଏପରି ଭବିବା ମଧ୍ୟ ଅଯୌକ୍ତିକ ବୋଧ ହେଉନି । ଏଇଥିପାଇଁ ମୃତ୍ୟୁ ବେଳକୁ ଆତ୍ମାକୁ ସତ୍ତ୍ୱଗୁଣାଶ୍ରୟୀ କରିବାପାଇଁ ସବୁଧର୍ମରେ ବ୍ୟବସ୍ଥା ଅଛି । ଆମ ସମାଜରେ ଲୋକ ମଲାବେଳେ ତା ପାଖେ କୀର୍ତ୍ତନ କରିବା, ପ୍ରାର୍ଥନା କରିବା, ଭଗବତ ପାଠ କରିବା ଇତ୍ୟାଦି ଏହି ଲକ୍ଷ୍ୟରେ ହୋଇଥାଏ —ଅର୍ଥାତ ମୁମୂର୍ଷୁର ଚିନ୍ତାଧାରା ଯେପରି ଈଶ୍ୱରଭିମୁଖୀ ରହେ ।

କିନ୍ତୁ ଜୀବନଯାକ ସେ ପ୍ରକାର ପ୍ରବଣତା ନଥିଲେ, ଏ ପ୍ରକାର ବାହ୍ୟ ଉଦ୍ୟମ ସବୁ ବାଂଛିତ ଫଳ ନଦେଇ ମଧ୍ୟ ପାରେ ।

ଓଡ଼ିଶାର ଜଣେ ସୁପ୍ରସିଦ୍ଧ ପଣ୍ଡିତ—ଲେଖକ ମଲାବେଳେ, ଶ୍ରୀ ଶଶିଭୂଷଣ ରାୟ ଓ ବିଶ୍ୱନାଥ କର ପ୍ରଭୃତି ତାଙ୍କର ବନ୍ଧୁମାନେ ତାଙ୍କୁ ସେହି ଶେଷ ମୁହୂର୍ତ୍ତରେ କେବଳ ଈଶ୍ୱରଙ୍କୁହିଁ ଚିନ୍ତା କରନ୍ତୁ ବୋଲି ଯେତେ କହିଲେ ମଧ୍ୟ ଅର୍ଦ୍ଧଚେତନ ଅବସ୍ଥାରେ ସେ କେବଳ 'ପଚିଶ', 'ପଚିଶ' ଉଚ୍ଚାରଣ କରି ଚାଲିଲେ—ଖୁବ୍ ସମ୍ଭବ କୌଣସି ଲୋକଠାରୁ ତାଙ୍କର ପଚିଶ ଟଙ୍କା ପାଇବାର ଥିଲା; ଏବଂ ସେ ଜୀବନଯାକ ଅର୍ଥ-କେନ୍ଦ୍ରିକ ଜୀବନଯାପନ କରି ଆସିଥିବାରୁ ମରଣ-ବିନ୍ଦୁରେ ମଧ୍ୟ, ତାଙ୍କର ଚିତ୍ତ ସେ କେନ୍ଦ୍ରକୁ ଛାଡି ଅନ୍ୟ ଉଚ୍ଚତର କେନ୍ଦ୍ରକୁ ଧରିପାରୁ ନଥିଲା ।

ଆମ ଧର୍ମରେ ଓ କାଥଲିକ୍ ଖ୍ରୀଷ୍ଟାନ ଓ ସୁଫୀ ମୁସଲମାନମାନଙ୍କ ଭିତରେ ମାଳା ଜପିବାର ପ୍ରଥା ସାଧକର ମାନସିକ ପ୍ରବଣତାକୁ ସତ୍ତ୍ୱଗୁଣାନ୍ୱିତ କରାଇବାରେ ଯେ ସାହାଯ୍ୟ କରିବାର କଥା ତାହା ମଧ୍ୟ ଅଯଥାର୍ଥ ମନେ ହେଉନାହିଁ । ବର୍ଷ ବର୍ଷ ଧରି ନୀରବରେ ଜପୁଥିବା ମନ୍ତ୍ର ବା ନାମ, ଆମର ଚିତ୍ତ ଲୋକର ଅଂଶ ହୋଇ ଉଠିବା ଏବଂ ମରଣ କାଳରେ ମଧ୍ୟ ସାଧକ ତାହା ବିସ୍ମୃତ ନ ହେବା ଯୁକ୍ତିଯୁକ୍ତ ମନେ ହେଉଛି । କିନ୍ତୁ ଏଠାରେ ଲକ୍ଷ୍ୟ କରିବାର କଥା ଯେ, ସତ୍ତ୍ୱଗୁଣ ସଂପନ୍ନ ଲୋକକୁ ଗୀତା, ମୃତ୍ୟୁ ପରେ ଉତ୍ତମ ଲୋକ ଦେଲେହେଁ, ମୁକ୍ତି ଦେଇନାହାନ୍ତି । ମୁକ୍ତି ଆସିବ, କେବଳ ମନୁଷ୍ୟ ଯେତେବେଳେ ସତ୍ତ୍ୱଗୁଣ ସହିତ ତିନୋଟିଯାକ ଗୁଣର ଉପରକୁ ଉଠିବ ।

( ୧୫ )

ରଜସି ପ୍ରଳୟଂ ଗତ୍ୱା କର୍ମସଂଗିଷୁ ଜାୟତେ
ତଥା ପ୍ରଲୀନସ୍ତମସି ମୂଢ ଯୋନିଷୁ ଜାୟତେ । ୧୫ ।

ରଜସି ପ୍ରଳୟଂ ଗତ୍ୱା (ରଜୋଗୁଣର ପ୍ରାବଲ୍ୟ ଭିତରେ ମୃତ୍ୟୁ ପ୍ରାପ୍ତ ହେଲେ) [ମନୁଷ୍ୟ] କର୍ମସଂଗିଷୁ (କର୍ମପ୍ରତି ଆସକ୍ତ ମନୁଷ୍ୟମାନଙ୍କ ଭିତରେ) ଜାୟତେ (ଜାତ ହୁଏ) । ତଥା ତମସି ପ୍ରଲୀନଃ (ତମ-ପ୍ରାବଲ୍ୟ ଭିତରେ ମରିଥିବା ବ୍ୟକ୍ତି) ମୂଢ ଯୋନିଷୁ ଜାୟତେ (ଅଜ୍ଞ, ମୂର୍ଖ, ବିବେକହୀନ ପିତାମାତାଙ୍କଠାରେ ଜନ୍ମ ହୁଏ) ।

## ଅନୁବାଦ—

ହେ ଅର୍ଜୁନ, ଯେଉଁପରି ପ୍ରବୃଦ୍ଧ-ରଜ-ଅବସ୍ଥାରେ ମୃତ୍ୟୁ ଘଟିଲେ, ଲୋକ ବିଷୟ-କର୍ମାସକ୍ତ ଲୋକମାନଙ୍କ ଭିତରେ ଜାତ ହେବ ଏବଂ ତମର ପ୍ରାବଲ୍ୟ ଅବସ୍ଥାରେ ମୃତ୍ୟୁ ହେଲେ, ଅଜ୍ଞ, ମୂର୍ଖ, ଅନ୍ଧବିଶ୍ୱାସଗ୍ରସ୍ତ ପିତାମାତାଙ୍କ ଘରେ ଜନ୍ମ ନେବ ।

## ବିଶେଷ ଭାଷ୍ୟ—

ଏ ଶ୍ଳୋକରେ ଥିବା 'ମୂଢ ଯୋନିଷୁ'ର ଅର୍ଥ କେହି କେହି ଟୀକାକାର 'ପଶ୍ୱାଦି ଜୀବନ' ବୋଲି କହିଛନ୍ତି ; କିନ୍ତୁ ସେପରି ଅର୍ଥ କରିବାର କୌଣସି ଯଥାର୍ଥତା ଅଛି ବୋଲି ମନେ ହେଉନି । ମନୁଷ୍ୟ ଜନ୍ମହିଁ, ଜଡ, ଉଦ୍ଭିଦ ଓ ପଶୁ ଜୀବନ ଦେଇ ଦୀର୍ଘ ବିବର୍ତ୍ତନର ଫଳ । ତା'ପରେ ପ୍ରତ୍ୟେକଟି ମନୁଷ୍ୟ—ଜନ୍ମ,

ଭ୍ରମ-ପ୍ରମାଦ ଦେଇ ଆମ୍ଭାକୁ ପୂର୍ଣ୍ଣରୁ ପୂର୍ଣ୍ଣତର କରି ଚାଲିବାର ଆଶା । ତାହାହିଁ ଜନ୍ମ-ଜୀବନ—ଅଭିଜ୍ଞତାର ମୂଲ୍ୟ । ଆମର ଭ୍ରମ-ପ୍ରମାଦର ଦଣ୍ଡ ଓ ସଂଶୋଧନ ପାଇଁ ମନୁଷ୍ୟ-ଜୀବନରେ ହିଁ ଯଥେଷ୍ଟ ଅବକାଶ ଅଛି । ସେଥିପାଇଁ ପୁଣି ପଶୁ-ଜୀବନକୁ ଆତ୍ମାର ପ୍ରତ୍ୟାବର୍ତ୍ତନର କୌଣସି ଆବଶ୍ୟକତା ଅଛି ବୋଲି ମନେ ହେଉନି । ଅନ୍ତତଃ ପ୍ରେତତତ୍ତ୍ୱ ଗବେଷଣାକାରୀ ଥିଓସଫିଷ୍ଟ ବନ୍ଧୁମାନଙ୍କର ଏହି ମତ ।

( ୧୬ )

କର୍ମଣଃ ସୁକୃତସ୍ୟାହୁଃ ସାତ୍ତ୍ୱିକଂ ନିର୍ମଳଂ ଫଳଂ
ରଜସସ୍ତୁ ଫଳଂ ଦୁଃଖମଜ୍ଞାନଂ ତମସଃ ଫଳଂ । ୧୬ ।

[ଜ୍ଞାନୀମାନେ] ସୁକୃତସ୍ୟ କର୍ମଣଃ ( ଉତ୍ତମ ବା ସାତ୍ତ୍ୱିକ କର୍ମର ) ନିର୍ମଳଂ ଫଳଂ ଆହୁଃ (ନିର୍ମଳ ଫଳ ମିଳେ ବୋଲି କହନ୍ତି । ରଜସଃ ତୁ ଫଳଂ ଦୁଃଖଂ (ରାଜସିକ କର୍ମ ସବୁର ଫଳ ଦୁଃଖ ବୋଲି କହିଥାନ୍ତି) । [ଏବଂ] ତମସଃ ତୁ ଫଳଂ ଅଜ୍ଞାନଂ (ତାମସିକ କର୍ମ ସବୁର ଫଳ ଅଧିକ ଅଜ୍ଞାନତା ବୋଲି କହିଥାନ୍ତି ) ।

### ଅନୁବାଦ—

ହେ ଅର୍ଜୁନ, ଉତ୍ତମ ସାତ୍ତ୍ୱିକ କର୍ମର ଫଳ ନିର୍ଦ୍ଦୋଷ ଓ ପୁଣ୍ୟମୟ ହୋଇଥାଏ । ରଜୋମୟ କର୍ମର ଫଳ ହୋଇଥାଏ ଦୁଃଖ, ତମୋଗୁଣମୟ କର୍ମର ଫଳ କେବଳ ଅଧିକ ଅଜ୍ଞତା ବୋଲି ଜାଣିବ ।

### ବିଶେଷ ଭାଷ୍ୟ—

ବାସ୍ତବବାଦୀ ଇଂରେଜଙ୍କର ଏକ ମନୋଜ୍ଞ ପ୍ରବାଦ ହେଉଛି—'Honesty is the best policy ' ଅର୍ଥାତ୍ ବ୍ୟବସାୟିକ ନୀତ ଭାବରେ ମଧ୍ୟ, ସାଧୁତା ହିଁ ଶ୍ରେଷ୍ଠ ପନ୍ଥା (ନୈତିକତାରେ ବିଶ୍ୱାସ ନ ଥାଉ ପଛେ ) ।

ଆମ ଦୈନନ୍ଦିନ ଜୀବନର କାର୍ଯ୍ୟକାରିତାର ମାପକାଠି ଦେଇ ହିଁ, ଆମେ ଆମର ଜୀବନ-ଦର୍ଶନକୁ ବିଚାରି ବସିବା ଆଦୌ ଅଯୌକ୍ତିକ ନୁହେଁ । ଗୀତାଙ୍କର ଜୀବନ ଦର୍ଶନ, କଠୋର ବାସ୍ତବତା ଉପରେ ହିଁ ପ୍ରତିଷ୍ଠିତ । ଏହା ଆଦୌ ଗଜଦନ୍ତ-ମୀନାରୀ ନୁହେଁ । ତେଣୁ ଗୀତାର 'ଯୋଗ' ବଣରେ ଯାଇ ତପସ୍ୟା କରିବା ନୁହେଁ, ତାହା କେବଳ 'କର୍ମସୁ କୌଶଳଂ' ।

ତେବେ ହୁଏତ ପଚାରି ପାରନ୍ତି—ଆମେ ସାତ୍ତ୍ୱିକ ହେବୁ କାହିଁକି ହୋ ? କି ଲାଭ ମିଳିବ ସେଥିରୁ ?

ଗୀତା ତାର ଉତ୍ତର ଆଗରୁ ଦେଇ ଦେଇଛନ୍ତି । ଗୀତା ଘୋଷଣା କରୁଛନ୍ତି ଯେ—ମନୁଷ୍ୟ ଜୀବନର ଲକ୍ଷ୍ୟ ତ ସୁଖ ? ତେବେ ଜାଣିରଖ ଯେ, କେବଳ ସାତ୍ତ୍ୱିକ ଚିନ୍ତା ଓ କର୍ମଦ୍ୱାରା ହିଁ ସ୍ଥାୟୀ ସୁଖ ମିଳିପାରିବ ; ଯେପରି ଚତୁର ଇଂରେଜ ଜାଣିଛି ଯେ, ବ୍ୟବସାୟ କ୍ଷେତ୍ରରେ ମଧ୍ୟ honesty (ସାଧୁତା ହିଁ) best policy (ଶ୍ରେଷ୍ଠ ପଦ୍ଧତି) । ସେହିପରି ସାତ୍ତ୍ୱିକତା ହୀନ ରାଜସିକ କର୍ମ ଆପାତ ସ୍ୱାଦ୍ୟ ହେଲେ ହେଁ ପରିଣାମରେ ଦୁଃଖକର ଏବଂ ତାମସିକ କର୍ମ ସବୁର ପରିଣାମ ଅଧିକ ପାଷଣ୍ଡତା, ଅଧିକ ନରକବାସ ।

ପାଠକେ କହିପାରିବେ କି କୌଣସି ଦେଶରେ, କୌଣସି ଚୋର ବା ଡକାଇତ ସମାଜରେ ଧନବାନ୍ ବୋଲି ପ୍ରତିଷ୍ଠିତ ହୋଇଛି ? ଯେ କୌଣସି ଦେଶ ଓ ସମାଜରେ; ଯେ କେହି ଲୋକ ଯିଏ ଜୀବନରେ ପ୍ରକୃତରେ ଧନଶାଳୀ ଓ ସମୃଦ୍ଧ ହୋଇଛନ୍ତି, ତାଙ୍କ ଜୀବନ ଆଲୋଚନା କଲେ ଆମେ ଦେଖିବା ଯେ, ସେ ଧନ କେବଳ ସାଧୁତା-ମିଶ୍ରିତ-କଠିନ-ପରିଶ୍ରମର ହିଁ ଫଳ । ଏହା ମଧ୍ୟ ସାଧାରଣ ଅଭିଜ୍ଞତା ଯେ, ଅସାଧୁତା-ଲବ୍ଧ ସମ୍ପତ୍ତି ଅଚିରେ ହସ୍ତାନ୍ତରିତ ହୋଇଯାଏ । ଓଡ଼ିଆ ପ୍ରବଚନ—"ଅଧର୍ମ ବିତ୍ତ ବଢେ ବହୁତ, ଗଲାବେଳେ ଯାଏ, ମୂଳ ସହିତ" ଆମ ଜାତୀୟ ଚେତନାର ଗଭୀର ବିଶ୍ଳେଷଣର ଫଳ ।

ତେଣୁ ବାସ୍ତବ ସାଂସାରିକ ବିଚାରରୁ ମଧ୍ୟ, ଗୁଣ୍ଡାମି, କଳାବଜାରି ଓ ଦୁର୍ନୀତିର ତାମସିକ ବା ସାତ୍ତ୍ୱିକତାହୀନ ରାଜସିକ ପନ୍ଥା ଛାଡ଼, ଆମ ସମସ୍ତଙ୍କର ସାତ୍ତ୍ୱିକତା ହିଁ ଏକମାତ୍ର ଜୀବନତତ୍ତ୍ୱ ରୂପେ ଗ୍ରହଣ କରିନେବା ଉଚିତ ।

( ୧୭ )

ସତ୍ତ୍ୱାତ୍ ସଞ୍ଜାୟତେ ଜ୍ଞାନଂ ରଜସୋ ଲୋଭ ଏବ ଚ
ପ୍ରମାଦ ମୋହୌ ତମସୋ ଭବତୋଽଜ୍ଞାନମେବ ଚ । ୧୭ ।

ସତ୍ତ୍ୱାତ୍ ସଞ୍ଜାୟତେ ଜ୍ଞାନଂ (ସତ୍ତ୍ୱଗୁଣରୁ ଜ୍ଞାନ ଜାତ ହୋଇଥାଏ) । ରଜସୋ ଲୋଭ ଏବ ଚ ରଜୋଗୁଣରୁ ଲୋଭର ଜନ୍ମ ହୁଏ । ପ୍ରମାଦମୋହୌ ଅଜ୍ଞାନଂ ଚ ତମସୋ ଭବତଃ (ମୋହ, ପ୍ରମାଦ ଓ ଅଜ୍ଞାନ ଆଦି ତମୋଗୁଣରୁ ଜାତ ହୋଇଛନ୍ତି ) ।

ଅନୁବାଦ—

ଜ୍ଞାନ ଆପେ ଜାତ ହୁଏ, ସତ୍ତ୍ୱଗୁଣ ସବୁରୁ । ଲୋଭର ଆବିର୍ଭାବ ହୁଏ ରଜୋଗୁଣରୁ । ତମୋଗୁଣରୁ କେବଳ ମୋହ, ପ୍ରମାଦ ଓ ଅଜ୍ଞାନାଦି ଜାତ ହୋଇଥାନ୍ତି ।

( ୧୮ )

ଊର୍ଦ୍ଧ୍ୱଂ ଗଚ୍ଛନ୍ତି ସତ୍ତ୍ୱସ୍ଥା ମଧ୍ୟେ ତିଷ୍ଠନ୍ତି ରାଜସାଃ
ଜଘନ୍ୟ ଗୁଣବୃତ୍ତିସ୍ଥା ଅଧୋଗଚ୍ଛନ୍ତି ତାମସାଃ । ୧୮ ।

ସତ୍ତ୍ୱସ୍ଥା (ସତ୍ତ୍ୱଗୁଣ ପ୍ରଧାନ ଲୋକେ) ଊର୍ଦ୍ଧ୍ୱଂ ଗଚ୍ଛନ୍ତି ( ଉପରକୁ ଉଠନ୍ତି । ରାଜସାଃ ମଧ୍ୟେ ତିଷ୍ଠନ୍ତି ( ରଜୋଗୁଣାନ୍ୱିତ ଲୋକେ ମଝିରେ ରହନ୍ତି ) । ଜଘନ୍ୟ ଗୁଣବୃତ୍ତିସ୍ଥାଃ ତାମସାଃ (ନିକୃଷ୍ଟ ଗୁଣ ବୃତ୍ତି ସମ୍ପନ୍ନ ତାମସିକ ଲୋକେ) ଅଧଃ ଗଚ୍ଛନ୍ତି (ନିମ୍ନଗତ ପ୍ରାପ୍ତ ହୁଅନ୍ତି) ।

ଅନୁବାଦ—

ହେ ଅର୍ଜୁନ, ଏହିପରି ଭାବରେ ସତ୍ତ୍ୱବନ୍ତ ଲୋକେ ଊର୍ଦ୍ଧ୍ୱ ଲୋକକୁ ଉଠିଥାନ୍ତି, ରଜୋଗୁଣ ସମ୍ପନ୍ନଲୋକେ ମଧ୍ୟ ଲୋକମାନଙ୍କରେ ରହନ୍ତି ଏବଂ ଘୃଣ୍ୟ ନୀଚ କର୍ମମାନଙ୍କରେ ପ୍ରବୃତ୍ତ ତମୋଗୁଣୀ ମନୁଷ୍ୟମାନେ ଅଧୋଗତି ହିଁ ଲାଭ କରିଥାନ୍ତି ।

ବିଶେଷ ଭାଷ୍ୟ—

ଟୀକାକାରମାନେ ଏହି ଶ୍ଳୋକର ଊର୍ଦ୍ଧ୍ୱ, ମଧ୍ୟ ଓ ଅଧଃକୁ ସ୍ୱର୍ଗ, ପୃଥିବୀ ଓ ନରକ ବୋଲି ଅର୍ଥ କରିଛନ୍ତି । ଅର୍ଥାତ୍ ମୃତ୍ୟୁ ପରେ ସତ୍ତ୍ୱଗୁଣୀ, ରଜୋଗୁଣୀ ଓ ତମୋଗୁଣୀ ଲୋକଙ୍କ ଆତ୍ମାର ଗତି କ'ଣ ହୁଏ—ତାହାରି ସୂଚନା ; କିନ୍ତୁ ଏହା ତ ପ୍ରମାଣର ଓ ଆମ ଅଭିଜ୍ଞତାର ବାହାରେ । କାହାର ଆତ୍ମା ମଲାପରେ କୁଆଡେ ଯାଉଛି, କେଉଁଠି ରହିଛି ଠିକ୍‌ପରି କିଏ କହିବ ?

କିନ୍ତୁ ମନସ୍ତତ୍ତ୍ୱ ଦୃଷ୍ଟିରୁ ଦେଖିଲେ ଗୀତାର ଏହି ଶ୍ଳୋକଟି ଆମର ଏହି ଜୀବନରେ ହିଁ ଅକ୍ଷରେ ଅକ୍ଷରେ ସତ୍ୟ ବୋଲି ମନେ ହେବ । କାରଣ ଏହା ଅତ୍ୟନ୍ତ ଜଣାଶୁଣା କଥା ଯେ, ସବୁ ଦେଶରେ ସମାଜ, କେବଳ ସତ୍ତ୍ୱଗୁଣୀ ଲୋକଙ୍କୁ ସବୁଠାରୁ ଅଧିକ ସମ୍ମାନ ଦେଇଥାଏ, କାରଣ ଏ ଶ୍ରେଣୀର ଲୋକେ

ସାଧାରଣ ମନୁଷ୍ୟର ସାଧାରଣ ଦୋଷ-ଦୁର୍ବଳତାର ଉପରକୁ ଉଠିଯାଇଥାନ୍ତି । ନିକଟ ଅତୀତରେ ସମଗ୍ର ବିଶ୍ୱର ଦେଦୀପ୍ୟମାନ ଓ ସୁପରୀକ୍ଷିତ ଦୃଷ୍ଟାନ୍ତ ହୋଇଛନ୍ତି ଗାନ୍ଧିଜୀ । ତାଙ୍କର ଜୀବନ ଓ ମୃତ୍ୟୁରେ ସକଳ ସତ୍ତ୍ୱଗୁଣାନ୍ୱିତ ଗାନ୍ଧିଜୀ ସମଗ୍ର ମାନବ ଜାତିର ବହୁ ଊର୍ଦ୍ଧ୍ୱରେ ଥିବା ଏକ ଆତ୍ମା ବୋଲି ପ୍ରମାଣିତ କରିଯାଇଛନ୍ତି ।

ଏ ଶ୍ରେଣୀର ତଳକୁ ରହନ୍ତି ସେହିମାନେ ଯେଉଁମାନେ କର୍ମତତ୍ପର —ଯେପରିକି ଏବର ଦଳୀୟ ନେତା ସବୁ, ଯିଏ ଆଜି ଏଠି କାଲି ସେଠି, ସକାଳେ ବକ୍ତୃତା, ଉପରଓଳି ବକ୍ତୃତା ଇତ୍ୟାଦି ଦ୍ୱାରା ଜଗତକୁ ଅନ୍ତତଃ 'ଦେଖାଇ' ପାରନ୍ତି ଯେ, ସେମାନେ ଅନ୍ୟମାନଙ୍କ ପାଇଁହିଁ ଅହରହ କାମ କରି ଚାଲିଛନ୍ତି । ଏମାନେ ଦଳପତି, ନେତା, କାରପଟ୍‌ଦାର, ମାମଲତକାର ବା ମନ୍ତ୍ରୀ ଇତ୍ୟାଦି ହୋଇ ସମାଜର ମଧ୍ୟ-ସ୍ଥାନରେ ହିଁ ରହିଯାନ୍ତି ।

ଏମାନଙ୍କ ତଳକୁ ଅଜ୍ଞ, ଚିନ୍ତାହୀନ, ସର୍ବଦା ଅନ୍ୟଦ୍ୱାରା ନୀତ ଓ ପରିଚାଳିତ ସମାଜର ନିମ୍ନଗୋଷ୍ଠୀ ।

ଏ ହେଲା ସାମାଜିକ ଊର୍ଦ୍ଧ୍ୱ, ମଧ୍ୟ ଓ ଅଧଃ, କିନ୍ତୁ ପ୍ରତ୍ୟେକ ବ୍ୟକ୍ତିର ଭିତରେ ମଧ୍ୟ ଊର୍ଦ୍ଧ୍ୱ ମଧ୍ୟ ଓ ଅଧଃ ନିଶ୍ଚିତ ଭାବରେ ଅଛି ବୋଲି ପାଠକେ ମନେ ରଖିବେ ।

ଆମେ ଏପରି ଲୋକଙ୍କୁ ଜାଣିଛୁ ଯେ ବାହାରକୁ ବଡ ନେତା ବା ମନ୍ତ୍ରୀ ହୋଇଛନ୍ତି; ଖ୍ୟାତ ଦଳପତି, ପୁଣି ସାହିତ୍ୟିକ, ଐତିହାସିକ, ଦାର୍ଶନିକ ଇତ୍ୟାଦି ଇତ୍ୟାଦି; କିନ୍ତୁ ଭିତରେ ସେ ଏକ ଈର୍ଷାନ୍ୱିତ, ଭୀଷଣ ସ୍ୱାର୍ଥ-କେନ୍ଦ୍ରିକ, ଷଡଯନ୍ତ୍ରକାରୀ ଆତତାୟୀ ।

ଏ ଲୋକ ନିଜର ପ୍ରଚାର-ସଂସ୍ଥା ସୃଷ୍ଟିକରି ଲୋକଙ୍କୁ ଭୁଲେଇ ରଖିପାରେ (ଯାହା ମଧ୍ୟ ଆଦୌ ସତ୍ୟ ନୁହେଁ; କାରଣ ସମସ୍ତ ଆତ୍ମ ପ୍ରଚାର ସତ୍ତ୍ୱେ ଲୋକେ ସତ୍ୟଟାର ଜାଣନ୍ତି ସେ କ'ଣ) । କିନ୍ତୁ ସେ ତ ଆଉ ଈଶ୍ୱରଙ୍କୁ ଠକି ଦେଇ ପାରିବନି ? କାରଣ ଈଶ୍ୱର ଅନ୍ତର୍ଯ୍ୟାମୀ ।

ତେଣୁ ଏ ଲୋକ ବାହାରକୁ 'ମଧ୍ୟ'ରେ ରହି ରାଜସିକର ସମ୍ମାନ ପାଉଥିଲେ ମଧ୍ୟ; ଏହାର କଳୁଷିତ ଭିତରଟା, ଯାକୁ ରଖିଛି ତାମସିକ 'ଅଧଃ'ରେ ଏବଂ ଏ ଲୋକ ତାର ଷଡଯନ୍ତ୍ରମାନଙ୍କରେ ଯେତିକି ଯେତିକି ଅଗ୍ରଗାମୀ ହେଉଥିବ୍, ତାର ମାନସିକ, ଆତ୍ମିକ ଓ ଚାରିତ୍ରିକ ଅଧଃପତନ ସେତିକି ସେତିକି ନିମ୍ନଗାମୀ ହେବା ସୁନିଶ୍ଚିତ ।

ଅନ୍ୟ ପକ୍ଷରେ ଆମେ ସାଧୁ, ନିପୁଣ ଓ ଈଶ୍ୱରଶ୍ରୟୀ ଏକ ପ୍ରାଇମେରୀ ସ୍କୁଲ ଶିକ୍ଷକ ବା ବ୍ୟବସାୟୀ ବା କୃଷକକୁ ଭେଟିବା, ଯେ ତାର ଅଭ୍ୟନ୍ତରରେ ପ୍ରକୃତରେ ଉଦ୍ଧ୍ୱର୍ଷ ଓ ନିତ୍ୟ ଉଦ୍ଧ୍ୱର୍ଗ ।

ସତ୍ତ୍ୱ, ରଜ ଓ ତମ ଏହି ତିନୋଟି ପ୍ରାକୃତିକ ଗୁଣ ଏକାନ୍ତରେ ମାନସିକ । ବାହାରର ଦାରିଦ୍ର୍ୟ ବା ଆଡମ୍ବର ସହିତ ଏ ସବୁର ଘନିଷ୍ଠ ସଂପର୍କ ନାହିଁ । କେତୋଟି ସରଳ ବ୍ୟକ୍ତିର ଭିତରେ ସତ୍ତ୍ୱ ଓ ରଜ ଏକତ୍ର ସମଭାବରେ ପ୍ରକାଶିତ ହେବାର ଆମେ ଦେଖିବା । କେବଳ ରଜ ଓ ତମର ମିଶ୍ରଣହିଁ ସମାଜର ସାଧାରଣ ଚିତ୍ର ।

( ୧୯ )

ନାନ୍ୟଂ ଗୁଣେଭ୍ୟଃ କର୍ତ୍ତାରଂ ଯଦା ଦ୍ରଷ୍ଟାନୁ ପଶ୍ୟତି
ଗୁଣେଭ୍ୟଶ୍ଚ ପରଂ ବେତ୍ତି ମଦ୍‌ଭାବଂ ସୋଽଧିଗଚ୍ଛତି । ୧୯ ।

ଯଦା ଦ୍ରଷ୍ଟା (ଯେତେବେଳେ ସାକ୍ଷୀ ରୂପକ ଆତ୍ମା) ଗୁଣେଭ୍ୟଃ (ଏହି ତିନିଗୁଣଙ୍କଠାରୁ) ଅନ୍ୟ କର୍ତ୍ତାରଂ ନ ଅନୁପଶ୍ୟତି (ଅନ୍ୟ କାହାକୁ କର୍ତ୍ତା ବୋଲି ନ ଦେଖନ୍ତି, ଅର୍ଥାତ୍ ନିଜଠାରେ କର୍ତ୍ତାଭାବ ଅଭିମାନ ନରଖି, ସକଳ କର୍ମ ଗୁଣମାନଙ୍କର ସ୍ୱାଭାବିକ ପ୍ରକ୍ରିୟା ବୋଲି ମନେ କରନ୍ତି) [ପୁଣି] ଗୁଣେଭ୍ୟଃ ଚ ପରଂ ବେତ୍ତି ଗୁଣମାନଙ୍କଠାରୁ ଆଉ କେହି ଶ୍ରେଷ୍ଠ ଅଛନ୍ତି ବୋଲି ଜାଣନ୍ତି; ଯାହାଙ୍କର ନିୟମ ନିର୍ଦ୍ଦେଶରେହିଁ ଗୁଣମାନେ କାମ କରି ଚାଲିଥାନ୍ତି) [ସେତେବେଳେ] ସଃ ମଦ୍‌ଭାବଂ ଅଧିଗଚ୍ଛତି (ସେ ମୋ-ଭାବ ଅର୍ଥାତ ବ୍ରହ୍ମଭାବ ବା ଈଶ୍ୱରଭାବ ପ୍ରାପ୍ତ ହୋଇଥାନ୍ତି) ।

ଅନୁବାଦ—

ହେ ଅର୍ଜ୍ଜୁନ, ଯେତେବେଳେ ମନୁଷ୍ୟ ଗୁଣମାନଙ୍କୁ ହିଁ ଜୀବନର ସକଳ କର୍ମର କର୍ତ୍ତା ବୋଲି ମନେକରି ନିଜେ କେବଳ ଦ୍ରଷ୍ଟାରୂପେ ରହେ ଏବଂ ଏହି ଗୁଣମାନଙ୍କ ଉପରେ ମଧ୍ୟ ଆଉ ଯେଉଁ ଜଣେ ସର୍ବମୟ କର୍ତ୍ତା ଅଛି ତାଙ୍କୁ ବି ଜାଣେ, ସେତେବେଳେ ସେ ମଦ୍‌ଭାବ (ଈଶ୍ୱର ଭାବ)କୁ ପ୍ରାପ୍ତ ହୋଇଥାନ୍ତି ।

( ୨୦ )

ଗୁଣାନେତାନତୀତ୍ୟ ତ୍ରୀନ୍ ଦେହୀ ଦେହ ସମୁଦ୍ଭବାନ୍
ଜନ୍ମ-ମୃତ୍ୟୁ-ଜରା-ଦୁଃଖୈର୍ବିମୁକ୍ତୋଽମୃତ ମଶ୍ନୁତେ । ୨୦ ।

ଦେହୀ (ମନୁଷ୍ୟ) ଦେହ ସମୁଦ୍ଭବାନ୍ ଏତାନ୍ ତ୍ରୀନ୍ ଗୁଣାନ୍ ଅତୀତ୍ୟ (ଦେହରୁ ଉଦ୍ଭୂତ ଏହି ତନିଗୁଣର ଉର୍ଦ୍ଧ୍ୱକୁ ଉଠିଗଲେ) ଜନ୍ମ-ମୃତ୍ୟୁ ଜରା-ଦୁଃଖୈଃ ବିମୁକ୍ତଃ (ଜନ୍ମ-ମରଣ-ଜରା-ଜନିତ-ଦୁଃଖାଦିରୁ ବିମୁକ୍ତ ହୋଇ) ଅମୃତଂ ଅଶ୍ନୁତେ ଅମୃତ ହିଁ ଭୋଗକରେ, ଅର୍ଥାତ୍ ଜନ୍ମ-ମୃତ୍ୟୁବଦ୍ଧ କ୍ଷଣସ୍ଥାୟୀ ଜୀବନ ପରିବର୍ତ୍ତେ ଶାଶ୍ୱତ ଆନନ୍ଦମୟ ଜୀବନ ଲାଭକରେ)।

## ଅନୁବାଦ—

ହେ ଅର୍ଜ୍ଜୁନ, ମନୁଷ୍ୟ ନିଜ ଦେହ ସହିତ ଜଡ଼ିତ ଏହି ତିନିଗୁଣରୁ ଉର୍ଦ୍ଧ୍ୱକୁ ଉଠି ପାରିଲେ ଜନ୍ମ-ମୃତ୍ୟୁ-ଜରା-ଦୁଃଖରୁ ବିମୁକ୍ତ ହୋଇ ଶାଶ୍ୱତ-ଆନନ୍ଦମୟ ମୃତ୍ୟୁହୀନ ଜୀବନ ଯାପନ କରିବ ।

## ଅର୍ଜ୍ଜୁନ ଉବାଚ

( ୨୧ )

କୈର୍ଲିଙ୍ଗୈ ସ୍ତ୍ରୀନ୍ ଗୁଣାନେତାନତୀତୋ ଭବତି ପ୍ରଭୋ
କିମାଚାରଃ କଥଂ ଚୈତାଂ ସ୍ତ୍ରୀନ୍ ଗୁଣାନତିବର୍ତ୍ତତେ । ୨୧ ।

ଅର୍ଜ୍ଜୁନ ଉବାଚ (ଅର୍ଜ୍ଜୁନ କହିଲେ) । [ହେ] ପ୍ରଭୋ, କୈଃ ଲିଙ୍ଗୈଃ (କେଉଁ କେଉଁ ଚିହ୍ନଦ୍ୱାରା) [ମନୁଷ୍ୟ] ଏତାନ ତ୍ରୀନ୍ ଗୁଣାନ୍ ଅତୀତଃ ଭବତ (ଏହି ତିନଗୁଣକୁ ଅତିକ୍ରମ କରିଛନ୍ତି ବୋଲି) [ଜଣାଯିବ ?] । କିଂ ଆଚାରଃ (କପରି ଆଚାରଯୁକ୍ତ ହୋଇ) କଥଂ ଚ (କେଉଁ ରୀତିରେ) [ମନୁଷ୍ୟ] ଏତାନ୍ ତ୍ରୀନ୍ ଗୁଣାନ୍ (ଏହି ଗୁଣତ୍ରୟକୁ ଅତିବର୍ତ୍ତତେ (ଅତିକ୍ରମ କରନ୍ତି ?) ।

## ଅନୁବାଦ—

ଅର୍ଜ୍ଜୁନ କହିଲେ, ହେ କୃଷ୍ଣ, କେଉଁ କେଉଁ ଚିହ୍ନଦ୍ୱାରା କେହି ଲୋକ ତ୍ରିଗୁଣାତୀତ ହୋଇଛନ୍ତି ବୋଲି ଜାଣିହେବ ? ତାଙ୍କର ସାଧାରଣ ଆଚାର କପର ? କେଉଁ ରୀତିରେ ବା ସେ ଏହି ତିନିଗୁଣକୁ ଅତିକ୍ରମ କରନ୍ତି ?

## ଶ୍ରୀ ଭଗବାନୁବାଚ

( ୨୨ )

ପ୍ରକାଶଂ ଚ ପ୍ରବୃତ୍ତିଂ ଚ ମୋହମେବ ଚ ପାଣ୍ଡବ
ନ ଦ୍ୱେଷ୍ଟି ସଂପ୍ରବୃତ୍ତାନି ନନିବୃତ୍ତାନି କାଙ୍କ୍ଷତି । ୨୨ ।

ଶ୍ରୀ ଭଗବାନ୍ ଉବାଚ (ଭଗବାନ୍ ଶ୍ରୀକୃଷ୍ଣ କହିଲେ) [ହେ] ପାଣ୍ଡବ (ଅର୍ଜୁନ) [ଯେ] ପ୍ରକାଶଂ ଚ (ସତ୍ତ୍ୱ ଲକ୍ଷଣାତ୍ମକ ପ୍ରକାଶ ବା ଜ୍ଞାନ) ପ୍ରବୃତ୍ତିଂ ଚ (ରଜଃ ଲକ୍ଷଣଯୁକ୍ତ କର୍ମପ୍ରବଣତା) ମୋହଂ ଏବ ଚ (ବା ତାମସିକ ମୂଢତା) ସଂପ୍ରବୃତ୍ତାନ (ନିଜ ଜୀବନରେ ଆପେ ଘଟିଗଲେ) ନ ଦ୍ୱେଷ୍ଟି (ସେଥିପ୍ରତି ବିରାଗ ପ୍ରକାଶ କରନ୍ତି ନାହିଁ [ଆଉ] ନ କାଙ୍କ୍ଷତି (ନଥିଲେ ସେ ସବୁକୁ ଖୋଜି ଚାହାନ୍ତି ନାହିଁ) [ସେହିହିଁ ଗୁଣାତୀତ ବୋଲି ଜାଣିବ] ।

## ଅନୁବାଦ—

ଶ୍ରୀକୃଷ୍ଣ କହିଲେ, ହେ ଅର୍ଜୁନ, ଯେ ସତ୍ତ୍ୱଗୁଣାତ୍ମକ ଜ୍ଞାନତା, ରଜୋଗୁଣାତ୍ମକ କର୍ମ-ପ୍ରବଣତା ବା ଏପରିକି ତମୋଗୁଣାତ୍ମକ ପ୍ରମାଦ ନିଜ ଜୀବନରେ ଘଟିଗଲେ କୌଣସି ବିରକ୍ତି ପ୍ରକାଶ କରନ୍ତି ନାହିଁ ବା ନଥିଲେ ମଧ୍ୟ ସେଥିପାଇଁ ଆକାଙ୍କ୍ଷା କରନ୍ତି ନାହିଁ, ତାଙ୍କୁହିଁ ତ୍ରିଗୁଣାତୀତ ମନେ କରିବ ।

( ୨୩ )

ଉଦାସୀନ ବଦାସୀନୋ ଗୁଣୈ ର୍ଯୋ ନ ବିଚାଲ୍ୟତେ
ଗୁଣାବର୍ତ୍ତନ୍ତ ଇତ୍ୟେବଂ ଯୋଽବତିଷ୍ଠତି ନେଙ୍ଗତେ । ୨୩ ।

ଯଃ (ଯେ) ଉଦାସୀନବତ୍ ଆସୀନଃ (ସବୁ କଥାରେ ଉଦାସୀନ ପରି ରହି) ଗୁଣୈଃ ନ ବିଚାଲ୍ୟତେ (ସତ୍ତ୍ୱ, ରଜ, ତମ ଏହି ତିନୋଟିଯାକ ଗୁଣ ଭିତରୁ କେଉଁ ଗୋଟିକର ପ୍ରଭାବ ଦ୍ୱାରା ନିଜକୁ ବିଚଳିତ କରି ନଥାନ୍ତି) [ଏବଂ ମନେକରନ୍ତି ଯେ] ଗୁଣାଃ ବର୍ତ୍ତନ୍ତ ଇତି ଏବଂ (ଗୁଣମାନେହିଁ ତାଙ୍କ ନିଜ କାମ କରି ଚାଲିଛନ୍ତି, କରୁଥାନ୍ତି) [ଏବଂ] ଯଃ ଯେ ଅବତିଷ୍ଠତି ଏହି ଭାବରେ ସମାଜରେ ଅବସ୍ଥାନ କରନ୍ତି,) [ଅଥଚ] ନ ଇଙ୍ଗତେ (କୌଣସି ଘଟଣାରେ ବିଚଳିତ ହୁଅନ୍ତି ନାହିଁ) [ତାଙ୍କୁହିଁ ଗୁଣାତୀତ ମନେ କରିବ] ।

## ଅନୁବାଦ—

ଯେ ସଂସାରରେ ଉଦାସୀନ ଭାବରେ ରହି ତିନୋଟିଯାକ ଗୁଣ ମାନଙ୍କରୁ କୌଣସିଟି ଦ୍ୱାରା ବିଚଳିତ ହୁଅନ୍ତି ନାହିଁ, ଏବଂ 'ଗୁଣମାନେ ତାଙ୍କ କାମ କରି ଚାଲିଛନ୍ତି, ମୁଁ କାହିଁକି ସେଥିରେ ମଜ୍ଜିବି ? ଏପରି ମନେକରି ଦୃଢ-ଚିତ୍ତ ରହନ୍ତି ତାଙ୍କୁହିଁ ତ୍ରିଗୁଣାତୀତ ମନେ କରିବ ।

( ୨୪ )

ସମ ଦୁଃଖ ସୁଃଖ ସ୍ୱସ୍ଥଃ ସମଲୋଷ୍ଟ୍ରାଶ୍ମକାଂଚନଃ
ତୁଲ୍ୟ ପ୍ରିୟା ପ୍ରିୟୋ ଧୀରସ୍ତୁଲ୍ୟ ନିନ୍ଦାତ୍ମ ସଂସ୍ତୁତିଃ । ୨୪ ।

[ଯେ] ସମଦୁଃଖ ସୁଖଃ(ଦୁଃଖରେ ଓ ସୁଖରେ ସମଜ୍ଞାନ ବିଶିଷ୍ଟ) ସ୍ୱସ୍ଥଃ (ଆତ୍ମସ୍ଥ) ସମଲୋଷ୍ଟ୍ରାଶ୍ମକାଂଚନଃ (ମାଟି, ପଥର ଓ ସୁନା ପ୍ରତି ଯାହାଙ୍କର ସମାନ ଜ୍ଞାନ) ତୁଲ୍ୟ ପ୍ରିୟାପ୍ରିୟଃ (ଯାହାଙ୍କ ନିକଟରେ ପ୍ରିୟ ଓ ଅପ୍ରିୟ ସମାନ) ଧୀରଃ (ଦୃଢବୁଦ୍ଧି) ତୁଲ୍ୟ ନିନ୍ଦାତ୍ମ ସଂସ୍ତୁତିଃ(ନିଜର ନିନ୍ଦା ଓ ସ୍ତୁତିରେ ଯାହାଙ୍କର ସମାନ ଜ୍ଞାନ) [ସେହିହିଁ ଗୁଣାତୀତ ମନେ କରିବ] ।

## ଅନୁବାଦ—

ହେ ଅର୍ଜୁନ, ଯେ ସୁଖ ଓ ଦୁଃଖରେ ସମଚିତ୍ତ, ସର୍ବଦା ଆତ୍ମସ୍ଥ, ଯାହାଙ୍କ ଦୃଷ୍ଟିରେ ଢେଳା, ପଥର ଓ ସୁନା ସମାନ-ମୂଲ୍ୟ, ଯାହାଙ୍କ ପାଖରେ ଶତ୍ରୁ ଓ ମିତ୍ର ସମାନ, ଯେ ସବୁ ଅବସ୍ଥାରେ ଧୀର ଏବଂ ଯାହାଙ୍କ ପ୍ରତି ନିନ୍ଦା ଓ ସ୍ତୁତି ସମାନ, ସେହିହିଁ ତ୍ରିଗୁଣାତୀତ ।

( ୨୫ )

ମାନାପମାନୟୋ ସ୍ତୁଲ୍ୟ ସ୍ତୁଲ୍ୟ ମିତ୍ରାରି ପକ୍ଷୟୋଃ
ସର୍ବାରମ୍ଭ ପରିତ୍ୟାଗୀ ଗୁଣାତୀତ ସ ଉଚ୍ୟତେ ।୨୫ ।

[ଯେ] ମାନାପମାନୟୋଃ ତୁଲ୍ୟଃ (ମାନ ଓ ଅପମାନରେ ସମଭାବାପନ୍ନ) ମିତ୍ରାରିପକ୍ଷୟୋଃ ତୁଲ୍ୟଃ (ମିତ୍ରପକ୍ଷ ଓ ଶତ୍ରୁପକ୍ଷ ପ୍ରତି ସମାନ ବିଚାର ସଂପନ୍ନ) ସର୍ବାରମ୍ଭ ପରିତ୍ୟାଗୀ (ଆତ୍ମଲାଭ ମୂଳକ ଯୋଜନାକୁ ଯେ ପରିତ୍ୟାଗ କରନ୍ତି) ସଃ ଗୁଣାତୀତଃ ଉଚ୍ୟତେ (ସେହିହିଁ ଗୁଣାତୀତ ବୋଲି କୁହାଯାଏ) ।

## ଅନୁବାଦ—

ହେ ଅର୍ଜୁନ, ଯେ ମାନ ଅପମାନରେ ସମଭାବ, ଶତ୍ରୁ ଓ ମିତ୍ରଠାରେ ସମାନ, ଯେ ଫଳାଶା ରଖି କୌଣସି କାମ ଆରମ୍ଭ କରନ୍ତି ନାହିଁ ସେହି କେବଳ ଗୁଣାତୀତ ବୋଲି ଧରାଯିବେ ।

## ବିଶେଷ ଭାଷ୍ୟ—

ଉପରର ୨୨, ୨୩, ୨୪, ୨୫ ଶ୍ଳୋକମାନଙ୍କରେ ଗୀତା ଯେଉଁ "ଗୁଣାତୀତ"ଙ୍କର ବର୍ଣ୍ଣନା ଦେଲେ, ସେହିହିଁ ଗୀତାର ଆଦର୍ଶ ମନୁଷ୍ୟ ଏବଂ

ଦ୍ୱିତୀୟ ଅଧ୍ୟାୟରେ "ସ୍ଥିତ ପ୍ରଜ୍ଞ" ନାମରେ ଏବଂ ଦ୍ୱାଦଶ ଅଧ୍ୟାୟରେ 'ଭକ୍ତ'ର ଲକ୍ଷଣ ଭାବରେ ସେହି ଏକା କଥାହିଁ ପରେ ପରେ ବର୍ଣ୍ଣିତ ହୋଇଛି ମାତ୍ର । ତେଣୁ ଗୀତାଙ୍କର ସୂଚନା ଏହି ଯେ, କର୍ମଯୋଗ, ଜ୍ଞାନଯୋଗ, ରାଜଯୋଗ ଓ ଭକ୍ତିଯୋଗ ଇତ୍ୟାଦି ନାନା ଭାବରେ ଏହି ଆଦର୍ଶ-ଅବସ୍ଥାକୁ ମନୁଷ୍ୟ ଆସିପାରେ, ଯଦିଓ ଗୀତା, ଭକ୍ତିଯୋଗକୁହିଁ ସହଜ ଓ ସୁଖକର ପନ୍ଥାରୂପେ ବର୍ଣ୍ଣନା କରି ଆସିଛନ୍ତି । ପରବର୍ତ୍ତୀ ଶ୍ଳୋକରେ 'ଗୁଣାତୀତତା' ଲାଭପାଇଁ ମଧ୍ୟ ଗୀତା ସେହି ପନ୍ଥାକୁହିଁ ନିର୍ଦ୍ଦେଶ କରିବେ ।

( ୨୬ )

ମାଂଚ ଯୋଽବ୍ୟଭିଚାରେଣ ଭକ୍ତି ଯୋଗେନ ସେବତେ
ସ ଗୁଣାନ୍ ସମତୀତ୍ୟୈତାନ୍ ବ୍ରହ୍ମ ଭୂୟାୟ କଳ୍ପତେ । ୨୬ ।

ଯଃ (ଯେ) ମାଂ (ମତେ) ଅବ୍ୟଭିଚାରେଣ ଭକ୍ତିଯୋଗେନ (ଐକାନ୍ତିକ ଭକ୍ତିରେ) ସେବତେ (ଉପାସନା କରନ୍ତି) ସଃ (ସେ) ଏତାନ୍ ଗୁଣାନ୍ ସମତୀତ୍ୟ (ଏହି ସବୁ ଗୁଣକୁ ଅତିକ୍ରମ କରି) ବ୍ରହ୍ମ ଭୂୟାୟ କଳ୍ପତେ (ବ୍ରହ୍ମ ମିଳନ ପାଇବାରେ ଯୋଗ୍ୟତା ଲାଭ କରନ୍ତି) ।

ଅନୁବାଦ—

କିନ୍ତୁ ହେ ଅର୍ଜ୍ଜୁନ, ଯିଏ ଅନନ୍ୟ ଭକ୍ତିରେ ମତେ (ଈଶ୍ୱରଙ୍କୁ) ଭଜନା କରିବ, ସେ ମଧ୍ୟ ଏହି ତ୍ରିଗୁଣକୁ ଅତିକ୍ରମ କରି ବ୍ରହ୍ମ ମିଳନର ଯୋଗ୍ୟତା ଅର୍ଜ୍ଜନ କରଥାନ୍ତି ।

( ୨୭ )

ବ୍ରହ୍ମଣୋହି ପ୍ରତିଷ୍ଠାହମମୃତସ୍ୟାବ୍ୟୟସ୍ୟ ଚ
ଶାଶ୍ୱତସ୍ୟ ଚ ଧର୍ମସ୍ୟ ସୁଖସ୍ୟୈକାନ୍ତିକସ୍ୟ ଚ । ୨୭ ।

ହି ଯେହେତୁ ଅହଂ (ମୁଁ ହିଁ) [କେବଳ] ବ୍ରହ୍ମଣଃ (ବ୍ରହ୍ମର) ପ୍ରତିଷ୍ଠା (ଆଶ୍ରୟ) [ନୁହେଁ] [ମୁଁ] ଅବ୍ୟୟସ୍ୟ ଅମୃତସ୍ୟ ଚ (ଅବିନାଶୀ ଅମୃତତ୍ୱର) [ପୁଣି] ଶାଶ୍ୱତସ୍ୟ ଧର୍ମସ୍ୟ ଚ (ସନାତନ ଧର୍ମର) [ଏବଂ] ଐକାନ୍ତିକସ୍ୟ ସୁଖସ୍ୟ ଚ (ଐକାନ୍ତିକ ସୁଖର ମଧ୍ୟ) [ପ୍ରତିଷ୍ଠା ବା ଆଶ୍ରୟ ଅଟେ] ।

**ଅନୁବାଦ—**

କାରଣ, ହେ ଅର୍ଜ୍ଜୁନ, ମୁଁ କେବଳ ବ୍ରହ୍ମର ଆଶ୍ରୟ ନୁହେଁ, ମୁଁ **ଅକ୍ଷୟ** ଅମୃତତ୍ତ୍ୱର ଏବଂ ଶାଶ୍ୱତ ଧର୍ମର ମଧ୍ୟ ଆଶ୍ରୟ ବୋଲି ଜାଣିବ ।

**ବିଶେଷ ଭାଷ୍ୟ—**

ଏହା ଏହି ଅଧ୍ୟାୟର ଶେଷ ଶ୍ଳୋକ । ଏଠାରେ ଲେଖକପରି ଅଧୀର ଭଷ୍ୟ ନ ଶୁଣି, ପାଠକଙ୍କ ସମ୍ମୁଖରେ ବ୍ରହ୍ମ ବା ଈଶ୍ୱର ତ୍ରିଗୁଣାତୀତ ସାଧକର ଅନ୍ତରରେ ଆବିର୍ଭୂତ ହେଲେ କି କି ଲକ୍ଷଣ ପ୍ରକାଶ ପାଏ, ଏ ସମ୍ପର୍କରେ ପରମାଭିଙ୍କ ପରମହଂସ ରାମକୃଷ୍ଣଙ୍କର ନମ୍ର **ଅମୃତମୟ** ଗୋଟିଏ ବଚନହିଁ ପରିବେଷଣ କରି, ପାଠକମାନଙ୍କ ଠାରୁ **ଅଧ୍ୟାୟ** ଆଲୋଚନାରୁ ବିଦାୟ ନେଉଛୁ—

"ଈଶ୍ୱର ଭକ୍ତର ହୃଦ୍‌ଦେଶରେ ବିରାଜିତ ହେଲେ କି କି ଲକ୍ଷଣ ପ୍ରକାଶିତ ହୁଏ ? ସୂର୍ଯ୍ୟ ଉଦୟ ପୂର୍ବରୁ ଅରୁଣ ଦେଖା ଦିଅନ୍ତି । ସେହିପରି ନିଃସ୍ୱାର୍ଥଭାବ, କର୍ତ୍ତୃତ୍ୱାଭିମାନଶୂନ୍ୟତା ପବିତ୍ରତା ଇତ୍ୟାଦି ଗୁଣସବୁ ଈଶ୍ୱରାବତରଣ ପୂର୍ବରୁ ସାଧକଠାରେ ପ୍ରକଟିତ ହୋଇ ଉଠନ୍ତି ।"



ଇତିଶ୍ରୀ ମହାଭାରତେ ଶତ ସହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମ ପର୍ବଣି ଶ୍ରୀ ମଦ୍‌ ଭଗବଦ୍‌ ଗୀତା ସୂପନିଷତ୍ସୁ ବ୍ରହ୍ମ ବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନ ସଂବାଦେ ଗୁଣତ୍ରୟ ବିଭାଗ ଯୋଗୋ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

## ପଞ୍ଚଦଶ ଅଧ୍ୟାୟ

# ପୁରୁଷୋତ୍ତମ ଯୋଗ

### ଅଧ୍ୟାୟ ଦୀପିକା

'ପୁରୁଷୋତ୍ତମ' ଶବ୍ଦଟିର ଦୁଇଟି ଅର୍ଥ ହୋଇପାରେ । ଗୋଟିଏ ଅର୍ଥ ଏବଂ ସାଧାରଣ ଅର୍ଥ ହେଲା, ପୁରୁଷମାନଙ୍କ-ଭିତରେ-ଉତ୍ତମ, ଅର୍ଥାତ୍, ଲୋକୋତ୍ତମ ବା ନରୋତ୍ତମ । ଏହି ଅର୍ଥରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଅଷ୍ଟମ (୧), ଦଶମ (୧୫) ଏବଂ ଏକାଦଶ ଅଧ୍ୟାୟ (୩) ରେ ଆଗରୁ 'ପୁରୁଷୋତ୍ତମ' ବୋଲି ସମ୍ବୋଧନ କରି ସାରିଛନ୍ତି । ଶ୍ରୀକୃଷ୍ଣ ମଧ୍ୟ ଅର୍ଜୁନକୁ ସେହି ଅର୍ଥରେ 'ପୁରୁଷର୍ଷଭ' ଓ 'ପୁରୁଷବ୍ୟାଘ୍ର' ବୋଲି ସମ୍ବୋଧନ କରିଛନ୍ତି ।

କିନ୍ତୁ ପୁରୁଷୋତ୍ତମ ଶବ୍ଦଟିର ଧର୍ମୀୟ ଅର୍ଥହେଲା ଈଶ୍ୱର । ଏହି ଅର୍ଥରେ ଅଷ୍ଟମ ଅଧ୍ୟାୟ ଦଶମ ଶ୍ଳୋକରେ କୁହାଯାଇଛି ଯେ—(ଏପରି ଏପର କଲେ) ।

ସତଂ ପରଂ ପୁରୁଷମୁପୈତ ଦିବ୍ୟଂ । (ସେହି ସାଧକ ସେହି ଦିବ୍ୟ ଓ ଶ୍ରେଷ୍ଠ ପୁରୁଷଙ୍କୁ ପ୍ରାପ୍ତ ହୁଅନ୍ତ ।

ସେହି ଅର୍ଥରେ ଏକାଦଶ ଅଧ୍ୟାୟର (୧୮) ରେ ଈଶ୍ୱରଙ୍କୁ 'ସନାତନ ପୁରୁଷ' ବୋଲି ମଧ୍ୟ କୁହାଯାଇଛି—ସନାତନ ସ୍ତ୍ୱଂ ପୁରୁଷୋମତୋ ମେ ।

ଏ ବିଶ୍ୱର ସ୍ରଷ୍ଟା ଈଶ୍ୱରଙ୍କୁ ଏକ 'ପୁରୁଷ' (ସ୍ତ୍ରୀ ନୁହେଁ) ରୂପରେ କଳ୍ପନା କରିବା ବେଦ ବେଳୁହିଁ ଆରମ୍ଭ ହୋଇ ଯାଇଥିଲା । ଋଗ୍‌ବେଦର ପ୍ରସିଦ୍ଧ 'ପୁରୁଷସୂକ୍ତ'ର "ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍" ହିଁ ବହୁ ଶତାବ୍ଦୀ ପରେ ଗୀତାର ଏକାଦଶ ଅଧ୍ୟାୟରେ "ବିଶ୍ୱରୂପ", ଭବରେ ପରିଚିତ ହୋଇ ଦଣ୍ଡାୟମାନ ।

ସାଂଖ୍ୟଦର୍ଶନର ପ୍ରବର୍ତ୍ତକ କପିଳ ପୁଣି ଆଗରୁ ଉପସ୍ଥାପିତ କରିସାରିଥିଲେ ଯେ, ବିଶ୍ୱ ସୃଷ୍ଟିରେ ପୁରୁଷ ଏକ 'ବ୍ୟକ୍ତି' ନୁହେଁ; ତାହା ଏକ ଶକ୍ତି । ସେହିପରି ଆଉ ଏକ ଶକ୍ତି ପ୍ରକୃତି । ଏହି ଦୁଇ ଶକ୍ତି, ପ୍ରକୃତି ଓ ପୁରୁଷର ଯୋଗାଯୋଗ ଫଳରେ ହିଁ ଏ ସୃଷ୍ଟି ଚିର-ପ୍ରବହମାନ ରହିଛି । ସୃଷ୍ଟିରେ ଏପରି କୌଣସି

ଜୀବ ବା ବସ୍ତୁ ନାହାନ୍ତି , ଯେଉଁଠି ପୁରୁଷ ଓ ପ୍ରକୃତି ସାଂଖ୍ୟର ଏହି ଦୁଇ ସୃଜନୀ ଶକ୍ତି ଓତ'ପ୍ରୋତ ଭାବରେ ଜଡ଼ିତ ନାହାନ୍ତି ।

ଇତି ମଧ୍ୟରେ ଋଗ୍‌ବେଦର "ନାସଦୀୟ ସୂକ୍ତ'ର ପ୍ରଭାବ ଭାରତୀୟ ଚିନ୍ତାଧାରାର ଆଉ ଏକ ଦିଗରେ ମଧ୍ୟ କାମ କରି ଚାଲିଥିଲା । ସେହି ସୂକ୍ତର ମୌଳିକ ଜିଜ୍ଞାସା—ଏ ସୃଷ୍ଟି କିଏ କଲା ? ଏ ଆଦ୍ୟରେ ସତ୍ ଥିଲା ନା ଅ-ସତ୍ ଥିଲା ?—ଇତ୍ୟାଦି ଚାଲିଆସିଛି ଉପନିଷଦ୍ ଯୁଗକୁ । ଛାନ୍ଦୋଗ୍ୟ ଉପନିଷଦରେ ପିତା ଆରୁଣି ଓ ପୁତ୍ର ଶ୍ୱେତକେତୁଙ୍କ ଭିତରେ ଏହି ତର୍କ ହୋଇ ଶେଷ ସିଦ୍ଧାନ୍ତ ହୋଇଛି ଯେ—ସତରୁ ହିଁ ସତ୍ ଆସିଛି ; ଅ-ସତ୍ ସତ୍‌ରୁ ସମ୍ଭବ ହୋଇ ନ ପାରେ ଏବଂ ସେହି ସତ୍ ହେଉଛନ୍ତି "ବ୍ରହ୍ମ" ।

କିନ୍ତୁ 'ବ୍ରହ୍ମ' ଏକ ସୂକ୍ଷ୍ମ ବସ୍ତୁ ବା ଶକ୍ତି ମାତ୍ର । ତାଙ୍କୁ ଲୋକେ ଉପାସନା କରିବେ କିପରି ? ତେଣୁ କ୍ଳୀବଲିଙ୍ଗୀ 'ବ୍ରହ୍ମ'କୁ ଦିନାକେତେ ପୁଂଲିଙ୍ଗ 'ବ୍ରହ୍ମା' କରାଗଲା । କିନ୍ତୁ କେଜାଣି କାହିଁକି ଦ୍ରାବିଡ଼ ଦେବତା 'ଶଙ୍କର' ଓ ଋଗ୍‌ବେଦୀୟ ଦେବତା 'ବିଷ୍ଣୁ' ଲୋକଙ୍କ ମନକୁ ଯେପରି ଆକର୍ଷଣ କରିପାରିଲେ ବସ୍ତୁ-ମନୁଷ୍ୟାୟିତ-ବ୍ରହ୍ମ (ବ୍ରହ୍ମା) ସେପରି କରିପାରିଲେ ନାହିଁ ।

କଠୋପନଷଦ୍‌ରେ ଆମେ ବିଶୁଦ୍ଧ 'ବ୍ରହ୍ମ' ର ଯେଉଁ ଗୁଣାବଳି ବର୍ଣ୍ଣିତ ହେବାର ଦେଖୁ ଶ୍ୱେତାଶ୍ୱେତର ଉପନଷଦରେ ଶଙ୍କରଙ୍କୁ କେନ୍ଦ୍ର କରି, ଏବଂ ଗୀତାରେ ବିଷ୍ଣୁ ( ଶ୍ରୀକୃଷ୍ଣ )ଙ୍କୁ କେନ୍ଦ୍ର କରି ଠିକ୍ ସେହି ଗୁଣାବଳି ହିଁ ବର୍ଣ୍ଣିତ । ଗୀତାରେ "ଯେନ ସର୍ବମିଦଂ ତତଂ" (୮ । ୨୨) (ଯେଉଁ ପୁରୁଷଙ୍କ ଦ୍ୱାରା ଏହି ସମସ୍ତ ଜଗତ୍ ପୂର୍ଣ୍ଣ) କୁହାଗଲା ବେଳକୁ ଶ୍ୱେତାଶ୍ୱେତରରେ ମଧ୍ୟ ଠିକ୍ ସେହିପରି କୁହାଯାଇଛି—"ତେନେଦଂ ପୂର୍ଣ୍ଣଂ ପୁରୁଷେଣ ସର୍ବଂ" ସେହି ପୁରୁଷଙ୍କ ଦ୍ୱାରା ଏହି ସମସ୍ତ ଜଗତ୍ ପରିବ୍ୟାପ୍ତ) ।

ଧରିନେବାକୁ ହେବ ଯେ, ଏହି ଦୁଇଟିଯାକ ଉପନଷଦରେ, କଠୋପନଷଦର କ୍ଳୀବଲିଙ୍ଗୀ ବ୍ରହ୍ମ ହିଁ, ପୁରୁଷ ସାମାନ ଓ ମନୁଷ୍ୟ ଗୁଣାଂଳକୃତ ହୋଇ ଉଠିଛନ୍ତି ଏବଂ ସେହି ହେତୁରୁ ହିଁ ଏ ଦୁଇ ଉପନିଷଦର କେନ୍ଦ୍ର ଦେବତା, ଶଙ୍କର ଓ ବିଷ୍ଣୁ, ଭାରତର ଜନ ଚେତନାରେ ପ୍ରିୟ ହୋଇ ଉଠିଛନ୍ତି ।

ସାଂଖ୍ୟର 'ପୁରୁଷ' ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ହେଲା, 'ପୁର-ବାସୀ' "ପୁରି ଶେତେ, ତସ୍ମାତ୍ ପୁରୁଷଃ" । ଭାରତୀୟ ଚିନ୍ତା ଆମର ଏହି ଶରୀରକୁ

ନବଦ୍ୱାରଯୁକ୍ତ ଏକ ପୁରୁ ବା ଦୁର୍ଗ ବୋଲି କଳ୍ପନା କରିଥିଲା । ସେହି ପୁର ଭିତରେ ରହି ଯିଏ ପୁରକୁ ଚାଳିତ କରୁଛି, ସେହି ହେଲା ପୁରୁଷ, ଅର୍ଥାତ୍ ଆତ୍ମା ବା ଜୀବ ।

କିନ୍ତୁ ସାଂଖ୍ୟ ମତରେ ଯେତେ ଜୀବ ସେତେ ପୁରୁଷ । ଏହି ଅଗଣିତ ପୁରୁଷଙ୍କର ପୁଣି ନିୟାମକ କିଏ ? ତେଣୁ ସକଳ ପୁରୁଷଙ୍କ ଭିତରେ ଶ୍ରେଷ୍ଠ ଏକ 'ପୁରୁଷୋତ୍ତମ'ର କଳ୍ପନା କରଯାଇ ସେହି ନାମ ଦିଆଗଲା ଈଶ୍ୱରଙ୍କୁ । ଅର୍ଥାତ୍ ଆମେ ପୁଣି ଫେରି ଆସିଲୁ ଋଗ୍‌ବେଦର ସେହି 'ପୁରୁଷସୂକ୍ତ'କୁ ସେହି ସହସ୍ର ଶୀର୍ଷାଃ ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍'' କୁ ।

ସେହି ପୁରୁଷସୂକ୍ତରେ ମଧ୍ୟ କୁହାଯାଇଥିଲା ଯେ—

ଏତାବାନସ୍ୟମହିମା ତୋ ଜ୍ୟାୟାଂଶ୍ଚ ପୁରୁଷଃ
ପାଦୋଽସ୍ୟ ବିଶ୍ୱଭୁତାନି ତ୍ରିପାଦସ୍ୟାମୃତଂଦିବି ।

(ପରିଦୃଶ୍ୟମାନ ଜଗତ୍ ତାଙ୍କର ମହିମା ହେଲେହେଁ ସେହି ପୁରୁଷ ଏହିଠାରୁ ବହୁ ଭାବରେ ଶ୍ରେଷ୍ଠ, ଏହି ସମଗ୍ର ସୃଷ୍ଟି ତାଙ୍କର ଚତୁର୍ଥାଂଶ ମାତ୍ର । ତାଙ୍କର ତିନି-ଚତୁର୍ଥାଂଶ, ସୃଷ୍ଟିର ବାହାରେ, ଅ-ମୃତ ଭାବରେ ବିରାଜିତ ରହିଛି) । ଏବଂ ଠିକ୍ ସେହି ଭାବହିଁ ଗୀତାର ଏହି ଅଧ୍ୟାୟରେ ଓ ଅନ୍ୟତ୍ର ପ୍ରତିଧ୍ୱନିତ ହୋଇଛି—

ଯସ୍ମାତ କ୍ଷରମତୀ ତୋଽହମକ୍ଷରାଦପିଚୋତ୍ତମଃ
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମ ।

(ଯେ ହେତୁରୁ କ୍ଷରରୁ ଅତୀତ ଓ ଅକ୍ଷରରୁ ଉତ୍ତମ, ତେଣୁ ଉଭୟ ଶାସ୍ତ୍ର (ବେଦ) ଓ ଲୋକ ଚିତ୍ତରେ ମୁଁ ''ପୁରୁଷୋତ୍ତମ'' ବୋଲି ପ୍ରସିଦ୍ଧ) ।

ଏହି ହେଉଛି ଭାରତୀୟ ଚିନ୍ତାଧାରରେ ପୁରୁଷୋତ୍ତମ-ରୂପକ ଭାବ-କଳ୍ପର ଇତିହାସ । ବହୁ ଶତାବ୍ଦୀ ଧରି, ଏହା ଋଗ୍‌ବେଦରୁ ଆରମ୍ଭ ହୋଇ, କପିଳଙ୍କ ସାଂଖ୍ୟ ଦେଇ ଗୀତା ପର୍ଯ୍ୟନ୍ତ ବିସ୍ତୃତ । କେତେକ ପୁଣି ଏ ଭାବ-କଳ୍ପକୁ ଟାଣି ଓଟାରି ଆଣି ପୁରୀ ଜଗନ୍ନାଥଙ୍କଠାରେ ଶେଷ କରୁଛନ୍ତି । କିନ୍ତୁ 'ଜଗନ୍ନାଥ' ବା 'ଲୋକନାଥ' (ପୁରୀର ପ୍ରସିଦ୍ଧତମ ଶିବ) ବୌଦ୍ଧ ସାହିତ୍ୟରେ ଗୌତମ ବୁଦ୍ଧଙ୍କର ସୁପରିଚିତ ବିଶେଷଣ ସବୁ ଏବଂ 'ପୁରୁଷୋତ୍ତମ' ଶବ୍ଦ ଜଗନ୍ନାଥଙ୍କଠାରେ କେବେ ଆରୋପିତ ହେଲା ତାହା ଗବେଷଣାର ବସ୍ତୁ । ଜଗନ୍ନାଥଙ୍କର ଶୈଶବ ରୂପୀ ଶବର-ଉପାସିତ ଦେବତା ନିଶ୍ଚୟ 'ପୁରୁଷୋତ୍ତମ' ବୋଲାଉ ନ ଥିଲେ । ସେତେବେଳେ ସେ ଥିଲେ ମାତ୍ର ନୀଳମାଧବ । ପୁଣି ଯିଏ ଏହି ସମଗ୍ର ସୃଷ୍ଟିରେ

ଥିବା କ୍ଷର ଓ ଅକ୍ଷର ଉଭୟରୁ ଅତୀତ ଓ ଉତ୍ତମ, ଯେ ଜଗତ ଓ ଈଶ୍ୱରୂପ, ସିଏ ଭାରତବର୍ଷର ଅଗଣିତ ମନ୍ଦିରମାନଙ୍କ ଭିତରୁ ଗୋଟିଏ ମନ୍ଦିରର ଅନ୍ଧକାର ଭିତରେ ଗୋଟିଏ ମନୁଷ୍ୟ-ଗଠିତ ପ୍ରତିମାରେ ପୁରୁଷୋତ୍ତମ ଭାବରେ ପରିଚିତ ହେବେ; ଏହାର କି ଯୁକ୍ତିଯୁକ୍ତତା ବା ଯାଥାର୍ଥ୍ୟ ଥାଇପାରେ ତାହା ବିଷ୍ଟରଣୀୟ ।

ପାଠକ ପାଠିକାମାନଙ୍କର କୌତୁହଳାର୍ଥେ ଏଠାରେ କହି ରଖିବା ଉଚିତ ଯେ, ଋଗ୍‌ବେଦରୁ ଗୀତା ପର୍ଯ୍ୟନ୍ତ ଭାରତୀୟ ଚିନ୍ତା ଈଶ୍ୱରଙ୍କୁ ଯେପରି ଏକ ମହାଶକ୍ତିଶାଳୀ 'ପୁରୁଷ' ବା ଅଙ୍ଗିର ମଣିଷ ବୋଲି କଳ୍ପନାକରି ଆସିଛି, ସେହିପରି ସମାନ୍ତରାଳ ଭାବରେ କଳ୍ପନା ମଧ୍ୟ କରି ଆସିଛି ପ୍ରଚଣ୍ଡ ଶକ୍ତୀରୂପିଣୀ ଏକ ସ୍ତ୍ରୀ ଋପରେ । କେନୋପନିଷଦରେ ଆମେ ପ୍ରଥମେ 'ହୈମବତୀ' (ସୁବର୍ଣ୍ଣଭୂଷିତା) ବହୁ ଶୋଭମାନା (ଅସାଧାରଣ ସୁନ୍ଦରୀ) ଉମାଙ୍କୁ ଭେଟୁ । ସେଠାରେ ସେ କିନ୍ତୁ ବ୍ରହ୍ମବିଦ୍ୟା ପରିବେଷିକା । ପରେ ଏହି ଉମା ଦ୍ରାବିଡ-ଦେବତା ଶିବଙ୍କର ପତ୍ନୀ ହେଲେ ଏବଂ ପରେ ପରେ ଚଣ୍ଡୀ, ଶକ୍ତି, ରୁଦ୍ରାଣୀ, କାଳୀ ପ୍ରଭୃତି ନାମ ଧାରଣ କରି, ସୃଷ୍ଟିର ସକଳ ଓଜ ଓ ବଳୀଷିକାର ଉତ୍ସ ସ୍ୱରୂପ ହିନ୍ଦୁ ଭାରତର ସର୍ବତ୍ର ସମ୍ମାନିତ ଓ ପୂଜିତ ହେଉଛନ୍ତି ।

ତେଣୁ ବିଷ୍ଟର କରି ବସିଲେ, ବସ୍ତୁତଃ ସାଂଖ୍ୟର ପୁରୁଷହିଁ କ୍ରମେ 'ପୁରୁଷୋତ୍ତମ' ହେଲାପରି ମନେହୁଏ ଏବଂ ସାଂଖ୍ୟର 'ପ୍ରକୃତି'ହିଁ ପରେ ଭାରତୀୟ କଳ୍ପନାରେ 'ଶକ୍ତି' ରୂପିଣୀ ନାରୀ ହୋଇ ଉଠିଛି, ଯାହା ନିକଟରେ ପୁରୁଷ, ପରାସ୍ତ ଓ ନିର୍ଜୀବ । ପାଠକମାନଙ୍କୁ ଅନୁରୋଧ, ଏହି ବିଷ୍ଟରଗୁଡ଼ିକୁ ମନରେ ରଖି ବର୍ତ୍ତମାନ ଅଧ୍ୟାୟ ଆରମ୍ଭ କରିବାକୁ ଅଧ୍ୟାୟ ଆରମ୍ଭରେ ହିଁ ପାଠକେ ପୁରୁଷୋତ୍ତମଙ୍କୁ ନ ଭେଟି ଭେଟିବେ ସଂସାର ରୂପକ 'ଅଶ୍ୱତ୍ଥ' ବୃକ୍ଷକୁ ।

### ଶ୍ରୀ ଭଗବାନୁବାଚ

### ( ୧ )

ଊର୍ଦ୍ଧ୍ୱମୂଳ ମଧଃଶାଖମଶ୍ୱତ୍ଥଂ ପ୍ରାହୁରବ୍ୟୟଂ
ଛନ୍ଦାଂସି ଯସ୍ୟ ପର୍ଣ୍ଣାନି ଯସ୍ତଂବେଦ ସବେଦବିତ୍ । ୧ ।

ଶ୍ରୀ ଭଗବାନ ଉବାଚ (ଭଗବାନ ଶ୍ରୀକୃଷ୍ଣ କହିଲେ) । ଊର୍ଦ୍ଧ୍ୱମୂଳଂ (ଚେର-ଉପରକୁ ଥିବା) ଅଧଃଶାଖଂ (ଡାଳସବୁ-ତଳକୁ-ଓହଳି ରହିଥିବା) ଅଶ୍ୱତ୍ଥଂ (ସଂସାର୍‌ରୂପକ ଅଶ୍ୱତଥ୍ ଗଛକୁ) [ଜ୍ଞାନୀମାନେ] ଅବ୍ୟୟଂ

(ଅବିନାଶୀ) [ ବୋଲି କହନ୍ତି ] । ଯସ୍ୟ ( ଯାହାର କ ) ଛନ୍ଦାଂସି ପର୍ଣ୍ଣାନି (ବେଦର ସୂକ୍ତ ସମୂହ ପତ୍ରାବଳି ) । ତଂ ଯଃ ବେଦ (ଏପରି ଅଶ୍ୱତ୍ଥ ବୃକ୍ଷକୁ ଯେ ଜାଣନ୍ତି) ସଃ ବେଦବିତ୍ (ସେହି ହିଁ ବେଦଜ୍ଞ ବୋଲି କୁହାଯାଏ) ।

## ଅନୁବାଦ—

ଶ୍ରୀକୃଷ୍ଣ କହିଲେ ହେ ଅର୍ଜୁନ, ଜ୍ଞାନୀମାନେ ଏହି ଚିର-ବର୍ତ୍ତମାନ ସଂସାରକୁ ଏକ ଓଲଟ-ଅଶ୍ୱତ୍ଥ-ବୃକ୍ଷ ରୂପେ କଳ୍ପନା କରିଥାନ୍ତି । ବେଦର ବିଭିନ୍ନ ମନ୍ତ୍ରାବଳି ଏହି ବୃକ୍ଷର ପତ୍ର ପୁଷ୍ପାଦି ହେଲେ ହେଁ, ଏହାର ମୂଳ ଉପରକୁ ଓ ଡାଳସବୁ ତଳକୁ ବିସ୍ତୃତ । ଏହି ପ୍ରକାର ସଂସାର-ରୂପକ ଓଲଟା ଅଶ୍ୱତ୍ଥକୁ ଯିଏ ଉତ୍ତମ ରୂପେ ଜାଣେ, ତାକୁଇ ପ୍ରକୃତ ବେଦବିତ୍ ବା ଜ୍ଞାନୀ ବୋଲି ଜାଣିବ ।

## ବିଶେଷ ଭାଷ୍ୟ—

ସଂସାରକୁ ଏକ ଓଲଟ-ଅଶ୍ୱତ୍ଥ ବୃକ୍ଷ ପରି କଳ୍ପନା କରିବା ଆମେ କଠୋପନିଷଦର ଦ୍ୱିତୀୟ ଅଧ୍ୟାୟ, ତୃତୀୟ ବଲ୍ଲୀର ପ୍ରଥମ ଶ୍ଳୋକରେ ମଧ୍ୟ ଦେଖୁ । ଗୀତାର ଏ ଭବ-କଳ୍ପ ଆଦୌ ମୌଳିକ ଚିନ୍ତା ନୁହେଁ । କିନ୍ତୁ ଏ ଗଛଟି ବିଶେଷ ଭାବରେ ଅଶ୍ୱତ୍ଥ କାହିଁକି ହେବ, ଏ ସମ୍ପର୍କରେ ଦଶମ ଅଧ୍ୟାୟରେ ଥିବା "ଅଶ୍ୱତ୍ଥ ସର୍ବ ବୃକ୍ଷାଣାଂ" (ମୁଁ ସବୁ ଗଛ ଭିତରେ ଅଶ୍ୱତ୍ଥ) ଉପରେ ଆମର ଆଲୋଚନା ପାଠକେ ସ୍ମରଣ କରିବେ । ଟୀକାକାର ମାନେ ଅଶ୍ୱତ୍ଥ ଶବ୍ଦର ଅର୍ଥ "ଯାହା କଥା ଆଗାମୀ କାଲି ପର୍ଯ୍ୟନ୍ତ ରହେନା" ବୋଲି ବର୍ଣ୍ଣନା କରି, ତାହାକୁ କ୍ଷଣସ୍ଥାୟୀ ସଂସାରର ଉତ୍ତମ ପ୍ରତୀକ ବୋଲି ପ୍ରତିପାଦିତ କଲାବେଳକୁ ଆମେ ସ୍ମରଣ କରିବା ଉଚିତ୍ ମଧ୍ୟ ହେବ ଯେ, ଅଶ୍ୱତ୍ଥ ପ୍ରକୃତରେ ଏକ ଅ-ମର ଗଛ ଓ ପୁଣି ଏକ ମାରାତ୍ମକ ଗଛ । ପୁଣି କଠୋପନିଷଦର ସରଳ ମୋଟାମୋଟି ଉପମା ସ୍ଥାନରେ ଗୀତା ଅଶ୍ୱତ୍ଥ ଗଛର ପତ୍ର ମୂଳ ଓ ଶାଖାମାନଙ୍କୁ ମଧ୍ୟ ବୈଦିକ ଭବ-କଳ୍ପ ସହିତ ମିଳାଇବାକୁ ଯାଇ ଯଥାର୍ଥ ସଙ୍ଗତି ରକ୍ଷିପାରି ନାହାନ୍ତି କହିବାକୁ ହେବ ।

କଠୋପନିଷଦର ଆଲୋଚ୍ୟମାନ ଶ୍ଳୋକଟିର ଅର୍ଥ ହେଲା ଏହିପରି— "ଏହି ସଂସାର ରୂପକ ସନାତନ ଅଶ୍ୱତ୍ଥ ବୃକ୍ଷର ମୂଳଟା ଉପରକୁ ଏବଂ ଶାଖାଗୁଡ଼ିକ ତଳକୁ । ସେହି ମୂଳ ହିଁ ଶୁଭ୍ରଜ୍ୟୋତି, ତାହାହିଁ ବ୍ରହ୍ମ, ଏବଂ ତାହାହିଁ ଅବିନାଶୀ । ସେହି ମୂଳହିଁ ସମସ୍ତ ଲୋକର ଆଶ୍ରୟ । ତାହାକୁ କେହି ଅତିକ୍ରମ କରି ପାରନ୍ତି ନାହିଁ ।"

ଏ ଚିନ୍ତାରେ ଈବାନ୍ଦୀୟ କିଛି ନାହିଁ ; କିନ୍ତୁ ପାଠକେ ଦେଖିବେ ଯେ ଗୀତାର ଆଲୋଚ୍ୟମାନ ଏହି ଶ୍ଳୋକ ଓ ପର ଶ୍ଳୋକରେ ଥିବା ଉପମାଗୁଡ଼କ କଷ୍ଟକଳ୍ପିତ ହୋଇଯାଇଛ ।

ଗୀତାର ଏହି ଉଦ୍ଭ-କଳ୍ପର ମୋଟ କଥା ହେଲା ଏହିପରି । ସଂସାର ଏକ ବୃକ୍ଷ । ବୃକ୍ଷର ଯେପରି ଶାଖା-ପ୍ରଶାଖା ଓ ପତ୍ରାବଳି ଅଛି, ଏହାର ସେପରି ଅଛି । କନ୍ତୁ ଗଛର ମୂଳ ହିଁ ତ ମୂଳକଥା । ସେ ଅଦୃଶ୍ୟ ହେଲେହେଁ ତାରି ଯୋଗୁଁ ଗଛ ଠିଆ ହୋଇଛି ଓ ବଞ୍ଚିଛି । ସଂସାରରୂପକ ବୃକ୍ଷର ମୂଳ ସିନା ତଳକୁ ଥାଏ, ସଂସାରରୂପକ ବୃକ୍ଷର ମୂଳ ଉପରକୁ, କାରଣ ସଂସାର ତାର ଜୀବନ-ରସ ସଂଗ୍ରହ କରୁଛି; ଉର୍ଦ୍ଧ୍ୱସ୍ଥ ବ୍ରହ୍ମରୁ ।

କନ୍ତୁ କେହି ପଚାରି ପାରେ ଯେ, ବ୍ରହ୍ମ ଯେତେବେଳେ ସର୍ବବ୍ୟାପ୍ତ, ସେତେବେଳେ ତାଙ୍କର ଉପର କ'ଣ, ତଳ କ'ଣ ? ଜନନୀ ବସୁନ୍ଧରର ପ୍ରତ୍ୟେକ ଅଣୁ ହିଁ ତ ବ୍ରହ୍ମମୟ । ତେଣୁ ସଂସାରରୂପକ ବୃକ୍ଷ ବଞ୍ଚି ରହିବାପାଇଁ 'ଉର୍ଦ୍ଧ୍ୱମୂଳ' ହେବ କାହିଁକ ? ପୁଣି, ସଂସାରରୂପକ ଏହି ବୃକ୍ଷର ପତ୍ରଗୁଡ଼କ ବେଦ ବା କିପରି ହେବେ ? ସଂସାର କହିଲେ କ'ଣ କେବଳ ଭାରତବର୍ଷର ହିନ୍ଦୁ ବ୍ରାହ୍ମଣ୍ୟ-ସମାଜକୁ ବୁଝାଇବ, ନା ସମଗ୍ର ଧରଣୀର ସକଳ ଧର୍ମମତର ନିଖିଳ ମାନବ-ଗୋଷ୍ଠୀକୁ ବୁଝାଇବ ?

ଗୀତା ଦ୍ୱିତୀୟ ଅଧ୍ୟାୟରେ 'ବେଦବାଦରତା'ମାନଙ୍କୁ ଅବିପଶ୍ଚିତ (ମୂର୍ଖ) ଓ 'କାମାତ୍ମନଃ' (ବାସନାବହୁଳ) କହି ସେମାନଙ୍କୁ ନାପସନ୍ଦ କରିଛନ୍ତି । ବେଦର ଯଜ୍ଞାଦି କର୍ମକାଣ୍ଡକୁ ମଧ୍ୟ ଗୀତା ପସନ୍ଦ କରିନାହାନ୍ତି । କିନ୍ତୁ ଏହି ସଂସାର-ରୂପକ ଓଲଟ-ଅଶ୍ୱତ୍ଥ-ବୃକ୍ଷକୁ ଜାଣିଗଲେ ଲୋକ 'ବେଦବିତ୍' ରୂପକ ସମ୍ମାନଜନକ ବିଶେଷଣ ପାଇଯିବ ବୋଲି ଗୀତା ଏଠାରେ କହିବାର କି ତାତ୍ପର୍ଯ୍ୟ ?

ବାରମ୍ବାର ଗୀତା ପାଠ କଲେ ବୁଦ୍ଧିମାନ ପାଠକଙ୍କ ଚିତ୍ତରେ ଆସ୍ତେ ଆସ୍ତେ ଏହି ଅବବୋଧ ଆସିବ ଯେ, ପ୍ରଥମାଂଶରେ ଗୀତା ଯେପରି ବିସ୍ମୟକର ଭାବରେ ବିପ୍ଳବାତ୍ମକ ଜୀବନ ଦର୍ଶନ ଆମ ଆଗରେ ଥୋଇଛନ୍ତି, ଯାହାକ ବୈଦିକ-ବ୍ରାହ୍ମଣ୍ୟ ଧର୍ମର ସମସାମୟିକ ସକଳ ପ୍ରଚଳିତ ସଂସ୍କାର (conventions)କୁ ଧୂଳିସାତ୍ କରି ପକାଇଛ କହିଲେ ଚଳେ, ଶେଷ ଆଡ଼କୁ ଗୀତା ସେପରି ନିଜର ସେ ପ୍ରଖର ମୌଳିକତା ହୁଏତ ରକ୍ଷା କରିପାର ନାହାନ୍ତି । ଗୀତାର ଉତ୍ତରାଂଶରେ ଆମେ ଏଠି ସେଠି ବ୍ରାହ୍ମଣ୍ୟ-ବୈଦିକ ରକ୍ଷଣ-

ଶୀଳତାର କଛି କିନ୍ତୁ ବଉଦ୍ଧର ଭେଟିବା । ହୁଏତ ଏହା ଗଛଟି ଭିତରେ ଚିନ୍ତାର ଉରସାମ୍ୟ ରକ୍ଷା କରିବା ପାଇଁ, ହୋଇଥାଇ ପାରିଥାଏ । କାରଣ ବୌଦ୍ଧଧର୍ମ ଛଡ଼ା ଈଶ୍ୱର ଅନ୍ୟ ସକଳ ଧର୍ମହିଁ ଏକ ଏକ 'କମ୍ପ୍ରମାଇଜ' (compromise) ବା ଆପୋଷ ମୀମାଂସା ମାତ୍ର । ପୌତ୍ତଳିକତାର ପରମ ବିରୋଧୀ ମହମ୍ମଦ, 'ମେକ୍କା'ର କାବାମନ୍ଦିରସ୍ଥ ଏକ ଉଲ୍କା ପଥରକୁ ସମ୍ମାନ ଦେଇଗଲେ— ଆରବ ଜାତୀୟତାର କେନ୍ଦ୍ରବିନ୍ଦୁ ରୂପେ । ଗୀତା ମଧ୍ୟ ସେହିପରି ପ୍ରଥମାଂଶର ବୈଦିକ-ବ୍ରାହ୍ମଣ୍ୟ ବିରୋଧୀ ପ୍ରଖର ବୈପ୍ଳବିକତାକୁ ପରିହାର କରି ଦ୍ୱିତୀୟାଂଶରେ କେତେଗୁଡ଼ଏ ବୈଦିକ-ବ୍ରହ୍ମଣ୍ୟ ଉବକଲ୍ପକୁ ଯେପରିକି ବାଧ୍ୟ ହୋଇ ପୁଣି ଗ୍ରହଣ କରି ନେଇଛନ୍ତି ।

ସେ ଯାହାହେଉ, ଆମକୁ ଶ୍ଳୋକ ପରେ ଶ୍ଳୋକ ଧରି ଗତି କରି-ବାକୁ ହେବ । ଗୀତାର କୌଣସି ଟୀକାକାର ଜୀବନ-ରୂପୀ ଓଲଟ-ଅଶ୍ୱତ୍ଥ ବୃକ୍ଷର-ଶାଖା-ପତ୍ରାଦି ବେଦର ମନ୍ତ୍ରାଦି କାହିଁକ ହେବ, ତାର କୌଣସି ସନ୍ତୋଷଜନକ ବ୍ୟାଖ୍ୟା ଦେଇପାରି ନାହାନ୍ତି । ଉପରେ, ଲେଖକ ତାର ନିଜ ବିଷ୍ଣରଧାରର ପ୍ରତିକ୍ରିୟା ହିଁ ପରିବେଷଣ କରିଛି । ତାକୁଇ ମନେ ରଖି, ପରବର୍ତ୍ତୀ ଶ୍ଳୋକକୁ ଯିବାକୁ ପାଠକମାନଙ୍କୁ ଅନୁରୋଧ ।

( ୨ )

ଅଧଶ୍ଚୋର୍ଦ୍ଧ୍ୱଂ ପ୍ରସୃତା ସ୍ତସ୍ୟ ଶାଖା
ଗୁଣ-ପ୍ରବୃଦ୍ଧା ବିଷୟ ପ୍ରବାଳାଃ
ଅଧଶ୍ଚ ମୂଳାନ୍ୟନୁ ସନ୍ତତାନ
କର୍ମାନୁବନ୍ଧୀନି ମନୁଷ୍ୟ ଲୋକେ । ୨ ।

ତସ୍ୟ (ତାହାର) ଗୁଣ ପ୍ରବୃଦ୍ଧାଃ ବିଷୟ ପ୍ରବାଳାଃ ଶାଖାଃ (ସତ୍ତ୍ୱରଜ ତମାଦି ଗୁଣମାନଙ୍କ ଦ୍ୱାରା ଅଭିବୃଦ୍ଧ ଏବଂ ବିଷୟ ବା ଇନ୍ଦ୍ରିୟ-ଭୋଗମାନଙ୍କ ଯୋଗୁଁ ପଲ୍ଲବାୟମାନ ଶାଖା ସବୁ) ଅଧଃ ଉର୍ଦ୍ଧ୍ୱଂଚ ପ୍ରସୃତାଃ (ତଳ ଓ ଉପର ଆଡ଼କୁ ବିସ୍ତୃତ । ମନୁଷ୍ୟ ଲୋକେ [ସମସ୍ତ] (ଏହି ମର୍ତ୍ତ୍ୟ ଲୋକରେ) କର୍ମାନୁବନ୍ଧୀନି ମୂଳାନି [ସେହି ସଂସାର ବୃକ୍ଷ ଅଶ୍ୱତ୍ଥର] (କର୍ମଫଳାନ୍ୱିତ ଚେର ସବୁ) ଅଧଃ ଚ ଅନୁସନ୍ତତାନ (କ୍ରମଶଃ ନମ୍ନ ଆଡ଼କୁହିଁ ବିସ୍ତୃତ ହୋଇ ରହିଥାନ୍ତି) ।

**ଅନୁବାଦ—**

ହେ ଅର୍ଜୁନ, ସେହି ଓଲଟା ଅଶ୍ୱତ୍ଥର ଶାଖାସବୁ ସତ୍ତ୍ୱ-ରଜ-ତମାଦି ଗୁଣମାନଙ୍କ ଯୋଗୁଁ ଅଭିବୃଦ୍ଧ ଏବଂ ବିଷୟ-ଭୋଗାଦି ଫଳରେ ପଲ୍ଲବାୟମାନ । ଏଗୁଡ଼ିକ ତଳ ଓ ଉପର, ଉଭୟ ଆଡ଼େ ବିସ୍ତାରିତ, କିନ୍ତୁ ମନୁଷ୍ୟ ଲୋକର କର୍ମଫଳାନୁଯାୟୀ ଏହି ଗଛର ଚେରସବୁ ତଳକୁହିଁ ବିସ୍ତୃତ ।

**ବିଶେଷ ଭାଷ୍ୟ—**

ଆମେ ଲକ୍ଷ୍ୟ କରିବା ଯେ, ଏହି ଦ୍ୱିତୀୟ ଶ୍ଳୋକଟିରେ ଗୀତାର ଅଶ୍ୱତ୍ଥ ଆଉ ପୂରା ଓଲଟା ନରହି, ଏକ ନିମ୍ନ-ମୂଳ ଓ ଊର୍ଦ୍ଧ୍ୱ-ଶାଖା-ବିଶିଷ୍ଟ ସାଧାରଣ ଗଛ ହୋଇ ପଡ଼ିଛି । ଗୀତା ପ୍ରଥମ ଶ୍ଳୋକର ଭବ-କଳ୍ପକୁ ଧରି ରଖିପାରି ନାହାନ୍ତି । ଏ ଶ୍ଳୋକରେ ସଂସାର-ଅଶ୍ୱତ୍ଥର ଶାଖାଗୁଡ଼ିକ ଉଭୟ ତଳ ଓ ଉପର ଆଡ଼କୁ ବର୍ଦ୍ଧିତ ଏବଂ ଚେରଗୁଡ଼ିକ ବରାବର ତଳକୁ ବିସ୍ତୃତ ହୋଇଥିବାର କୁହାଯାଉଛି ।

ଏ ଶ୍ଳୋକରେ ପୁଣି "ଛନ୍ଦାଂସି ଯସ୍ୟ ପର୍ଣ୍ଣାନି" (ଯାହାର ପତ୍ରଗୁଡ଼ିକ ବେଦ) ନାହିଁ, ତା ସ୍ଥାନରେ ଆମେ ଦେଖୁ ଇନ୍ଦ୍ରିୟ-ଭୋଗ (ବିଷୟ)-ରୂପକ ପତ୍ର ସବୁକୁ (ପ୍ରବାଳାଃ) ଯାହାକି ଅଧିକ ସଙ୍ଗତ ବୋଧ ହେଉଛି । ପୁଣି ସଂସାର-ରୂପକ ଅଶ୍ୱତ୍ଥର ଚେରଗୁଡ଼ିକ "କର୍ମାନୁବନ୍ଧୀନି" (କର୍ମଫଳ ସଂପୃକ୍ତ) ଏବଂ ସର୍ବଦା ନିମ୍ନଗାମୀ, ଅର୍ଥାତ୍ ଏହି ସଂସାରରେ ଆମେ କର୍ମ ଯୋଗୁଁ ଓ କର୍ମର ଫଳ ଆଶା କରିହିଁ କ୍ରମେ କ୍ରମେ ସଂସାର ବଦ୍ଧ ହୋଇ ଥାଉଁ । ଏ ଅର୍ଥ ମଧ୍ୟ ଅତି ସଙ୍ଗତ ।

ତେଣୁ ଦ୍ୱିତୀୟ ଶ୍ଳୋକର ଅଶ୍ୱତ୍ଥ ଏକ ଯୁକ୍ତିସଙ୍ଗତ କଳ୍ପନା ।

କିନ୍ତୁ ଯା ସଙ୍ଗେ 'ପୁରୁଷୋତ୍ତମ'ଙ୍କର କି ସଂପର୍କ ? ପର ଶ୍ଳୋକରେ ତାହା ସୂଚିତ ହେଉଛି ।

( ୩—୪ )

ନ ରୂପମସ୍ୟେହ ତଥୋପଲଭ୍ୟତେ
ନାନ୍ତୋ ନ ଚାଦିର୍ନ ଚ ସଂପ୍ରତିଷ୍ଠା ।
ଅଶ୍ୱତ୍ଥମେନଂ ସୁବିରୂଢ଼ମୂଳ—
ମସଙ୍ଗ ଶସ୍ତ୍ରେଣ ଦୃଢ଼େନ ଛିତ୍ତ୍ୱା । ୩ ।

ତତଃ ପଦଂ ତତ୍ ପରିମାର୍ଗିତବ୍ୟଂ
ଯସ୍ମିନ୍ଗତା ନ ନିବର୍ତ୍ତନ୍ତିଭୂୟଃ
ତମେବ ଚାଦ୍ୟଂ ପୁରୁଷଂ ପ୍ରପଦ୍ୟେ
ଯତଃ ପ୍ରବୃତ୍ତିଃ ପ୍ରସୃତା ପୁରାଣୀ । ୪ ।

ଇହ (ଏହି ସଂସାରରେ) ଅସ୍ୟ (ଏହି ଅଶ୍ୱତ୍ଥର ରୂପଂ ନ ଉପଲଭ୍ୟତେ (ରୂପ କେହି ଜାଣି ପାରନ୍ତି ନାହିଁ) । ତଥା (ସେହିପରି) [ଏହାର] ନ ଆଦିଃ, ନ ଅନ୍ତଃ, ନ ସଂପ୍ରତିଷ୍ଠା (ଆରମ୍ଭ, ସ୍ଥିତି ବା ଶେଷ ମଧ୍ୟ) [କେହି ଜାଣନ୍ତି ନାହିଁ] । [ଅଥଚ] ଏନଂ ସୁଦୃଢମୂଳଂ ଅଶ୍ୱତ୍ଥଂ (ଏହି ସୁଦୃଢମୂଳ ଅଶ୍ୱତ୍ଥ ବୃକ୍ଷକୁ) [ସେହିପରି] ଦୃଢେନ ଅସଙ୍ଗ ଶସ୍ତ୍ରେଣ ଛିତ୍ୱା (ଦୃଢ ବୈରାଗ୍ୟ ରୂପକ ଅସ୍ତ୍ରଦ୍ୱାରା ହାଣି ପାରିଲେହିଁ) ତତଃ (ତାପରେ) ଯସ୍ମିନ୍ ଗତାଃ ଭୂୟଃ ନ ନିବର୍ତ୍ତନ୍ତେ (ଯେଉଁଠାକୁ ଗଲେ ଲୋକେ ଆଉ ଫେରନ୍ତି ନାହିଁ, ଅର୍ଥାତ୍ ସେମାନଙ୍କର ଆଉ ପୁନର୍ଜନ୍ମ ହୁଏ ନାହିଁ) ଯତଃ ଏଷା ପୁରାଣୀ ପ୍ରବୃତ୍ତିଃ ପ୍ରସୃତା (ଯେଉଁଠାରୁ ଏହା ସନାତନ ସଂସାର-ସ୍ରୋତ ପ୍ରବାହିତ) [ଏ ପ୍ରକାର] ତମ୍ ଏବ ଚ ଆଦ୍ୟଂ ପୁରୁଷଂ ପ୍ରପଦ୍ୟେ (ସେହି ଆଦି ପୁରୁଷଙ୍କୁ ମୁଁ ଶରଣ ରୂପେ ଗ୍ରହଣ କରୁଛି) [ଏହି ସଂକଳ୍ପ କରି] ତତ ପଦଂ ପରିମାର୍ଗିତବ୍ୟଂ(ସେହି ଧାମ ଅନ୍ୱେଷଣ କରିବାକୁ ହେବ)।

**ଅନୁବାଦ—**

ହେ ଅର୍ଜ୍ଜୁନ, ଏହା ସ୍ୱାଭାବିକ ଯେ ଏ ସଂସାରରେ କେହି ଏହି ଓଲଟା ଅଶ୍ୱତ୍ଥ ରୂପ ବା ଏହାର ଆଦି, ମଧ୍ୟ ବା ଅନ୍ତ ଜାଣନ୍ତି ନାହିଁ । ଅଥଚ ଏହି ଦୃଢମୂଳ ଅଶ୍ୱତ୍ଥକୁ ସେହିପରି ଦୃଢ ବୈରାଗ୍ୟ-ଅସ୍ତ୍ର ଦ୍ୱାରା ହାଣି ପାରିଲେହିଁ ତା' ଫଳରେ "ଯାହାଙ୍କ ଠାରୁ ଏହି ସନାତନ ସଂସାର-ସ୍ରୋତ ପ୍ରବାହିତ; ମୁଁ ସେହି ଆଦି ପୁରୁଷଙ୍କ ଠାରେ ଶରଣ ନେଉଛି" ଏହି ପ୍ରତିଜ୍ଞା କରି, ମୃତ୍ୟୁପରେ ଯେଉଁଠାକୁ-ଗଲେ-ଆଉ-ଫେରିବାକୁ-ହୁଏ ନାହିଁ, ସେହି ଲକ୍ଷ୍ୟ ଆଡକୁ ଗତି କରିବାକୁ ହେବ ।

**ବିଶେଷ ଭାଷ୍ୟ—**

ସଂସାର ହେଲା ଏକ ଦୃଢମୂଳ ଅଶ୍ୱତ୍ଥ ବୃକ୍ଷ । ଏହାର ଚିରନିମ୍ନଗାମୀ ଚେରସବୁ ହେଲା ଆମର ବାସନା ଓ ବାସନାଜନିତ କର୍ମର ଫଳ ସବୁ, ଏହାର ଶାଖାସବୁ ହେଲା ସତ୍ତ୍ୱ ରଜ ତମ ଆଦି ପ୍ରାକୃତିକ ଗୁଣାବଳି ଏବଂ ପତ୍ରସବୁ ହେଲା ଇନ୍ଦ୍ରିୟ ଭୋଗ ସମୂହ । ଏ ଗଛକୁ ଆଖିରେ ଦେଖି ନ ପାରିଲେ ମଧ୍ୟ ଜାଣିବାକୁ

ହେବ ଯେ ଆମେଇ ଏହି ଗଛ, କିନ୍ତୁ ଗୀତା ଆମର ପାର୍ଥିବ-ବନ୍ଧନକୁ ଆମ ଚିତ୍ତରେ ଗଭୀର ଭାବରେ ଚିତ୍ରିତ କରିବା ପାଇଁ ଏହି ଅଶ୍ୱତ୍‌ଥ-ବୃକ୍ଷର ରୂପକ ଠିଆ କରାଇ କହୁଛନ୍ତି ଯେ, ଆମେ ଆମରି ସାଧନାରେ ବୈରାଗ୍ୟ-ଅସ୍ତ୍ର ସାହାଯ୍ୟରେ ଏହି ଅଶ୍ୱତ୍‌ଥକୁ ସଂପୂର୍ଣ୍ଣ ନିପାତ ନ କଲେ, ମର୍ତ୍ତ୍ୟଲୋକର ଆର ପଟେ ଥିବା ପରମ ଧାମ ଓ ପରମ-ପୁରୁଷଙ୍କୁ ପାଇପାରିବାନି—ଆମେ ଅବ୍ୟୟ ଅଶ୍ୱତ୍‌ଥ ବୃକ୍ଷ ପରି ଏଇଠି ମରୁଥିବା ଓ ପୁଣି ଜନ୍ମୁଥିବା ଓ ପୁଣି ମରୁଥିବା ।

( ୫ )

ନିର୍ମାନ ମୋହା ଜିତ ସଙ୍ଗ ଦୋଷା
ଅଧ୍ୟାତ୍ମ ନିତ୍ୟା ବିନିବୃତ୍ତକାମାଃ

ଦ୍ୱନ୍ଦ୍ୱୈର୍ବିମୁକ୍ତାଃ ସୁଖ ଦୁଃଖ ସଂଜ୍ଞୈ
ର୍ଗଚ୍ଛନ୍ତ୍ୟମୁଢାଃ ପଦମବ୍ୟୟଂ ତତ୍ । ୫ ।

ନିର୍ମାନ ମୋହାଃ (ମାନ ଓ ମୋହ ବର୍ଜିତ) ଜିତ ସଙ୍ଗ ଦୋଷାଃ (ଆସକ୍ତି ଦୋଷ ଶୂନ୍ୟ) ଅଧ୍ୟାତ୍ମନିତ୍ୟାଃ (ଆତ୍ମ ଜ୍ଞାନରେ ରତ) ବିନିବୃତ୍ତକାମାଃ (କାମନା ବର୍ଜିତ) ସୁଖ ଦୁଃଖ ସଂଜ୍ଞୈଃ ଦ୍ୱନ୍ଦ୍ୱୈଃ ବିମୁକ୍ତାଃ (ସୁଖ ଦୁଃଖ ରୂପକ ଦ୍ୱନ୍ଦ୍ୱରୁ ବିମୁକ୍ତ) ଅମୁଢା ଚ (ମୋହ ବର୍ଜିତ ଜ୍ଞାନୀଗଣ) ତତ୍ ଅବ୍ୟୟଂ ପଦଂ ଗଚ୍ଛନ୍ତି (ସେହି ଅବ୍ୟୟ ପଦ ପ୍ରାପ୍ତ ହୋଇଥାନ୍ତି) ।

ଅନୁବାଦ—

ହେ ଅର୍ଜୁନ, ମାନ-ମୋହ-ବର୍ଜିତ, ଆସକ୍ତି ଦୋଷଶୂନ୍ୟ, ନିତ୍ୟ ଆଧ୍ୟାତ୍ମିକ ଚିନ୍ତାରେ ରତ; କାମନାବର୍ଜିତ, ସୁଖ-ଦୁଃଖ-ରୂପକ ଦ୍ୱନ୍ଦ୍ୱରୁ ମୁକ୍ତ ଏବଂ ମୋହ ବର୍ଜିତ ଜ୍ଞାନୀଗଣହିଁ ସେହି ଅବ୍ୟୟ ପଦ ପ୍ରାପ୍ତ ହୋଇଥାନ୍ତି ।

( ୬ )

ନ ତତ୍ ଭାସୟତେ ସୂର୍ଯ୍ୟୋ ନ ଶଶାଂକୋ ନ ପାବକଃ
ଯଦ୍ ଗତ୍ୱା ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ । ୬ ।

ଯତ୍ ଗତ୍ୱା (ଯେଉଁଠିକି ଗଲେ) [ସେହି ଜ୍ଞାନୀମାନେ] ନ ନିବର୍ତ୍ତନ୍ତେ (ଏ ସଂସାରକୁ ଆଉ ଫେରନ୍ତି ନାହିଁ) ତତ୍ (ତାହାକୁ) ସୂର୍ଯ୍ୟଃ ନ ଭାସୟତେ (ସୂର୍ଯ୍ୟ ପ୍ରକାଶ କରନ୍ତି ନାହିଁ ଅର୍ଥାତ୍ ଯାହା ଆପେ ଆପେ, ସ୍ୱୟଂ-ଭାସିତ)

ନ ଶଶାଂକଃ (ଚନ୍ଦ୍ର ମଧ୍ୟ ପ୍ରକାଶ କରନ୍ତ ନାହିଁ) ନ ପାବକଃ (ଅଗ୍ନି ମଧ୍ୟ)। ତତ୍ ମମ ପରମଂ ଧାମ (ତାହାହିଁ ମୋର ପରମ ଧାମ)।

**ଅନୁବାଦ—**

ହେ ଅର୍ଜ୍ଜୁନ, ସେହି ଯେ ଶ୍ରେଷ୍ଠ ଲୋକ ଯେଉଁଠାକୁ ଲୋକ ଥରେ ଗଲେ ଆଉ ଫେରନ୍ତ ନାହିଁ, ଜାଣିରଖ ଯେ ସେ ସ୍ଥାନ ସୂର୍ଯ୍ୟ, ଚନ୍ଦ୍ର ବା ଅଗ୍ନି ଦ୍ୱାର ଆଲୋକତ ନୁହେଁ—ତାହା ସ୍ୱୟଂ ଉଦ୍‌ଭସିତ ।

**ବିଶେଷ ଭାଷ୍ୟ—**

କଠୋପନିଷଦ୍ (୨।୨।୧୫)ରେ ସମାନ୍ତରଳ ଶ୍ଲୋକ—

ନ ତତ୍ର ସୂର୍ଯ୍ୟୋ ଭତି ନ ଚନ୍ଦ୍ରତାରକଂ
ନେମା ବିଦ୍ୟୁତୋ ଭନ୍ତ କୁତୋଽୟମଗ୍ନିଃ
ତମେବ ଭନ୍ତମନୁଭତି ସର୍ବଂ
ତସ୍ୟ ଭସା ସର୍ବମିଦଂ ବିଭତି ।

(ସେହି ବ୍ରହ୍ମକୁ ସୂର୍ଯ୍ୟ ପ୍ରମାଣ କରେ ନାହିଁ ବା କରନ୍ତ ନାହିଁ ଚନ୍ଦ୍ର ତାରକା ଓ ବିଦ୍ୟୁତ୍ ସକଳ। ସେଠି ଏ ଅଗ୍ନି ବା କ କରିବ ? ସେ ସ୍ୱୟଂ ପ୍ରକାଶିତ ବୋଲି ହିଁ ତଦନୁଯାୟୀ ସକଳ ବସ୍ତୁ ଦୀପ୍ତିମାନ ହୋଇଥାନ୍ତି । ତାଙ୍କର ଆଲୋକରେହିଁ ବିଶ୍ୱର ସକଳ ବସ୍ତୁ ପ୍ରକାଶିତ)।

ଶ୍ୱେତାଶ୍ୱତର ଉପନଷଦ୍ (୬।୧୪।)ରେ ଅବିକଳ ଏହି ଶ୍ଲୋକହିଁ ଉଦ୍ଧୃତ ଏବଂ ସେହିପରି ମଧ୍ୟ ମୁଣ୍ଡକୋପନଷଦ୍ (୨।୨।୧୦)ରେ ।

ପ୍ରଭେଦ ଏତକ ଯେ, କଠ ଓ ମୁଣ୍ଡକରେ ବିଶୁଦ୍ଧ ବ୍ରହ୍ମଙ୍କର ବା ଶ୍ୱେତାଶ୍ୱତରରେ ଈଶଈଶାନ (ଶିବ)ଙ୍କର ଅଧିଷ୍ଠାନ ସଂପର୍କରେ ଥିବା ସେ ପ୍ରକାର ବର୍ଣ୍ଣନା, ଗୀତାରେ ଏକାବେଳେକେ ବ୍ୟକ୍ତି-କେନ୍ଦ୍ରକ ହୋଇଉଠିଛି— "ତଦ୍ଧାମ ପରମଂ ମମ"—ସେହି ହେଉଛି ମୋରି ଶ୍ରେଷ୍ଠ-ଗୁଣ-ସଂପନ୍ନ ଧାମ ଯେଉଁଠାକୁ ଗଲ ପରେ ଜୀବ ଆଉ ପୁନର୍ଜନ୍ମ ପାଏନା। ଅର୍ଥାତ୍ ଆଉ ଯେଉଁଠାକୁ (ବ୍ରହ୍ମଲୋକ ବା ଶିବ ଲୋକକୁ) ଯାଉନା କାହିଁକ, ସେ ସବୁ ସ୍ଥାନରୁ ଜୀବ ନିଶ୍ଚେ ପୁଣି ଫେରିବ। ଜୀବର ପୁନର୍ଜନ୍ମ ନ ହେବା ନିଶ୍ଚିତ, କେବଳ ବିଷ୍ଣୁ (କୃଷ୍ଣ) ଲୋକ ବା ବୈକୁଣ୍ଠକୁ ଗଲେ ।

ଏସବୁ ଯେ କେବଳ ଉତ୍କଟ ପ୍ରୋପାଗାଣ୍ଡା (Propaganda) ବା ପ୍ରଚାର୍ ମାତ୍ର, ବୁଦ୍ଧିମାନ ପାଠକ, ଆଶାକରୁ ତାହା ସହଜରେ ବୁଝିପାରିବେ ।

( ୭ )

ମମୈବାଂଶୋ ଜୀବ ଲୋକେ ଜୀବଭୂତଃ ସନାତନଃ
ମନଃଷଷ୍ଠାଣୀନ୍ଦ୍ରିୟାଣି ପ୍ରକୃତିସ୍ଥାନ କର୍ଷତି । ୭ ।

ମମ ଏବ ସନାତନଃ ଅଂଶଃ (ମୋର ଏକ ସନାତନ ଅଂଶ) ଜୀବଭୂତଃ (ଜୀବରୂପ ଧାରଣ କରିବାରୁ) [ତାହା] ଜୀବଲୋକେ ଜୀବୀମାନଙ୍କ ସ୍ତରରେ ଅର୍ଥାତ୍ ସଂସାରରେ) ପ୍ରକୃତି ସ୍ଥାନି ମନଃ ଷଷ୍ଠାଣି ଇନ୍ଦ୍ରିୟାଣି (ପ୍ରକୃତିରେ ଅବସ୍ଥିତ ମନ ସହିତ ପଞ୍ଚ ଇନ୍ଦ୍ରିୟକୁ) କର୍ଷତି [ନିଜ ଆଡକୁ] (ଆକର୍ଷଣ କରିଥାଏ) ।

## ଅନୁବାଦ—

ହେ ଅର୍ଜୁନ, ମୋର ଏକ ସନାତନ ଅଂଶହିଁ ଜୀବ ହୋଇ ଜନ୍ମ ନଏ । କିନ୍ତୁ ଜୀବ ସ୍ତରକୁ ଆସିଯିବାରେ ମନସହିତ ପ୍ରକୃତିସ୍ଥ ପଞ୍ଚେନ୍ଦ୍ରିୟଯାକ ତାକୁ (ମୋର ଅଂଶ ହେବା ସତ୍ତ୍ୱେ) କଷ୍ଟ ଦେଇ ଚାଲନ୍ତି ।

( ୮ )

ଶରୀରଂ ଯଦବାପ୍ନୋତି ଯଚ୍ଚାପ୍ୟୁତ୍କ୍ରାମତୀଶ୍ୱରଃ
ଗୃହୀତ୍ୱୈତାନି ସଂଯାତ ବାୟୁର୍ଗନ୍ଧାନିବ ବା ଶୟାତ୍ । ୮ ।

ଈଶ୍ୱରଃ ( ମୋର ଅଂଶ ସ୍ୱରୂପ ଆତ୍ମା ) ଯତ୍ ( ଯେତେବେଳେ ) ଶରୀରଂ (ଶରୀରକୁ) ଅବାପ୍ନୋତି (ପ୍ରାପ୍ତ ହୁଅନ୍ତ) ଯତ୍ ଚ ଅପି ଉତ୍କ୍ରାମତି (ଯେତେବେଳେ ବା ସେହି ଶରୀରକୁ ତ୍ୟାଗ କରି ଚାଲିଯାନ୍ତ) [ସେତେ-ବେଳେ] ବାୟୁଃ ଆଶୟାତ୍ ଗନ୍ଧାନ୍ ଇବ (ପବନ ପୁଷ୍ପାଦି ଆଧାରରୁ ଗନ୍ଧକଣା ସବୁ ନେଇପରି) ଏତାନି ଗୃହୀତ୍ୱା (ଏହି ଛଅ ଇନ୍ଦ୍ରିୟକୁ ଗ୍ରହଣ କରି) ସଂଯାତି (ଗମନ କରନ୍ତ) ।

## ଅନୁବାଦ—

ହେ ଅର୍ଜୁନ, ଈଶ୍ୱର ଯେତେବେଳେ ଶରୀର ଗ୍ରହଣ କରନ୍ତ ବା ଶରୀର ତ୍ୟାଗ କରନ୍ତ, ସେତେବେଳେ, ବାୟୁ ପୁଷ୍ପାଦିରୁ ସୁରଭି ସଂଗ୍ରହ କଲାପରି ଏହି ମନ ଓ ଇନ୍ଦ୍ରିୟମାନଙ୍କୁ ସାଥିରେ ବହନ କରିଥାନ୍ତ ।

( ୯ )

ଶ୍ରୋତ୍ରଂ ଚକ୍ଷୁଃ ସ୍ପର୍ଶନଂ ଚ ରସନଂ ଘ୍ରାଣମେବ ଚ
ଅଧିଷ୍ଠାୟ ମନଶ୍ଚାୟଂ ବିଷୟାନୁପ ସେବତେ । ୯ ।

ଅୟଂ (ଆତ୍ମାରୂପୀ ମୋର ଏହି ଅଂଶ) ଶ୍ରୋତ୍ରଂ (କାନ) ଚକ୍ଷୁଃ (ଆଖି) ସ୍ପର୍ଶନଂ ଚ (ଏବଂ ଚର୍ମ) ରସନଂ (ଜିଭ) ଘ୍ରାଣଂ ଏବ ଚ (ଓ ନାସିକା) ମନଃ ଚ (ଏବଂ ମନକୁ) ଅଧିଷ୍ଠାୟ (ଆଶ୍ରୟ କରି) ବିଷୟାନ୍ ଉପସେବତେ (ପାର୍ଥିବ ବିଷୟ ସବୁ ଉପଭୋଗ କରେ)।

**ଅନୁବାଦ—**

ହେ ଅର୍ଜ୍ଜୁନ, ଆତ୍ମାରୂପୀ ମୋର ସେହି ଅଂଶ, ଚକ୍ଷୁ, କର୍ଣ୍ଣ, ତ୍ୱକ୍, ଜିହ୍ୱା ଏବଂ ନାସିକାଦି ଜ୍ଞାନେନ୍ଦ୍ରିୟ ଓ ମନକୁ ଆଶ୍ରୟ କରିହିଁ ପାର୍ଥିବ ବିଷୟ-ମାନଙ୍କୁ ଉପଭୋଗ କରିଥାଏ ।

( ୧୦ )

ଉତ୍କ୍ରାମନ୍ତଂ ସ୍ଥିତଂ ବାପି ଭୁଂଜାନଂ ବା ଗୁଣାନ୍ୱିତଂ
ବିମୂଢା ନାନୁପଶ୍ୟନ୍ତି ପଶ୍ୟନ୍ତି ଜ୍ଞାନ ଚକ୍ଷୁଷଃ । ୧୦ ।

ଉତ୍କ୍ରାମନ୍ତଂ (ଏକ ଦେହରୁ ଅନ୍ୟ ଦେହକୁ ଗମନଶୀଳ) ସ୍ଥିତଂ ବା ଅପି (ଅଥବା ସେ ଦେହରେ ଅବସ୍ଥିତ ହୋଇ) ଭୁଂଜାନଂ ବା ଗୁଣାନ୍ୱିତଂ (ବିଷୟ ଭୋଗ ରତ ବା ତ୍ରିଗୁଣ ଜଡ଼ିତ) [ଏହି ଆତ୍ମାକୁ] ବିମୂଢାଃ ନ ଅନୁପଶ୍ୟନ୍ତି (ମୂଢ଼ ଲୋକେ ଦେଖିପାରନ୍ତି ନାହିଁ) । [କିନ୍ତୁ] ଜ୍ଞାନଚକ୍ଷୁଷଃ ପଶ୍ୟନ୍ତି (ଜ୍ଞାନ ଚକ୍ଷୁ ବିଶିଷ୍ଟ ଲୋକେ ଦେଖି ପାରନ୍ତି) ।

**ଅନୁବାଦ—**

ହେ ଅର୍ଜ୍ଜୁନ, ଦେହୀ ହୋଇ ସତ୍ତ୍ୱ ରଜ-ତମାଦି ଗୁଣାନ୍ୱିତ ହୋଇ-ଥିବା ଅବସ୍ଥାରେ, ବିଷୟାଦି ଭୋଗ କରୁଥିଲାବେଳେ ବା ମୃତ୍ୟୁ ଦେଇ ଏକ ଦେହରୁ ଦେହାନ୍ତରକୁ ଯାଉଥିବାବେଳେ, ମୋହମୂଢ଼ ମନୁଷ୍ୟ ଈଶ୍ୱରାଂଶ ସେହି ଆତ୍ମାକୁ ସଂପୂର୍ଣ୍ଣ ବିସ୍ମୃତ ହୋଇ ଯାଇଥାନ୍ତି । କିନ୍ତୁ ଜ୍ଞାନ ଚକ୍ଷୁବନ୍ତ ପଣ୍ଡିତ ଲୋକମାନେ, ଦେହର ସକଳ ଅବସ୍ଥା ତଳେ ଦେହୀ ଅର୍ଥାତ୍ ଈଶ୍ୱରାଂଶ ରୂପୀ ଆତ୍ମାକୁହିଁ ଦେଖି ପାରିଥାନ୍ତି ।

( ୧୧ )

ଯତନ୍ତୋ ଯୋଗିନ ଶ୍ଚୈନଂ ପଶ୍ୟନ୍ତ୍ୟାତ୍ମନ୍ୟବସ୍ଥିତଂ
ଯତନ୍ତୋଽପ୍ୟକୃତାତ୍ମାନୋ ନୈନଂ ପଶ୍ୟନ୍ତ୍ୟଚେତସଃ । ୧୧ ।

ଯତନ୍ତଃ ଯୋଗିନଃ ଚ (ଯତ୍ନଶୀଳ ଯୋଗୀମାନେ ମଧ୍ୟ) ଏବଂ ଆତ୍ମନି ଅବସ୍ଥିତଂ ପଶ୍ୟନ୍ତି (ଏହି ଆତ୍ମାକୁ ନିଜ ଭିତରେ ଅବସ୍ଥିତ ଥିବାର ଦେଖନ୍ତି) । [କିନ୍ତୁ] ଯତନ୍ତଃ ଅପି (ଯତ୍ନ କରି ମଧ୍ୟ) ଅକୃତାତ୍ମାନଃ ଅଚେତସଃ (ନିଜକୁ ଉତ୍ତମ ରୂପେ ଗଢ଼ି ନ ପାରିଥିବା ଅବିବେକୀମାନେ) ଏବଂ ନ ପଶ୍ୟନ୍ତି (ଏହାକୁ ଦେଖି ପାରନ୍ତି ନାହିଁ) ।

**ଅନୁବାଦ —**

ହେ ଅର୍ଜୁନ, ଯୋଗୀଜନ ଯୋଗ ସାଧନା ଫଳରେ ନିଜ ଭିତରେ ଅବସ୍ଥିତ ସେହି ଈଶ୍ୱରଙ୍କୁହିଁ ଶେଷରେ ଦେଖିଥାନ୍ତି, ଯଦିଓ ଅବିବେକୀ ଲୋକେ ନିଜକୁ ଉତ୍ତମ ରୂପେ ଗଢ଼ି ନ ପାରିଥିବା ହେତୁ ଚେଷ୍ଟା କରି ମଧ୍ୟ ତାଙ୍କୁ ଦେଖିପାରନ୍ତି ନାହିଁ ।

( ୧୨ )

ଯଦାଦିତ୍ୟଗତଂ ତେଜୋ ଜଗଦ୍‌ଭାସୟତେଽଖିଳଂ
ଯଚ୍ଚନ୍ଦ୍ରମସି ଯଚ୍ଚାଗ୍ନୌ ତତ୍‌ତେଜୋ ବିଦ୍ଧି ମାମକଂ । ୧୨ ।

ଆଦିତ୍ୟ ଗତଂ ଯତ୍ ତେଜଃ (ସୂର୍ଯ୍ୟରେ ଥିବା ଯେଉଁ ତେଜ) ଅଖିଳଂ ଜଗତ୍ ଭାସୟତେ (ସମଗ୍ର ସଂସାରକୁ ଆଲୋକିତ କରିଥାଏ) ଯତ୍ ଚନ୍ଦ୍ରମସି ଯତ୍ ଚ ଅଗ୍ନୌ (ପୁଣି ଯେଉଁ ତେଜ ଚନ୍ଦ୍ର ଓ ଅଗ୍ନିରେ ଥାଏ) ତତ୍ ସର୍ବଂ ମାମକଂ ବିଦ୍ଧି (ସେ ସବୁକୁ ମୋରି ତେଜ ବୋଲି ଜାଣିରଖ) ।

**ଅନୁବାଦ—**

ହେ ଅର୍ଜୁନ, ମୁଁ ଯେ କେବଳ ପ୍ରତ୍ୟେକ ଜୀବଠାରେ ଅବସ୍ଥିତ ତାହା ନୁହେଁ, ସୂର୍ଯ୍ୟର ଯେଉଁ ତେଜ ସମଗ୍ର ଜଗତ୍‌କୁ ଉଦ୍‌ଭାସିତ କରୁଛି ଏବଂ ଯେଉଁ ଆଲୋକ ଜଗତ ପାଉଛି ଚନ୍ଦ୍ରରୁ ଓ ଅଗ୍ନିରୁ, ସେ ସବୁ ମଧ୍ୟ କେବଳ ମୋରି ଆଲୋକ ।

( ୧୩ )

ଗା ମାବିଶ୍ୟ ଚ ଭୂତାନି ଧାରୟାମ୍ୟହ ମୋଜସା
ପୁଷ୍ଣାମି ଚୌଷଧୀଃ ସର୍ବାଃ ସୋମୋଭୂତ୍ୱା ରସାତ୍ମକଃ । ୧୩ ।

ଅହଂ ଚ (ମୁଁ ମଧ୍ୟ) ଓଜସା ଗାଂ ଆବିଶ୍ୟ (ଶକ୍ତିଦ୍ୱାରା ପୃଥିବୀରେ ପ୍ରବିଷ୍ଟ ହୋଇ) ଭୂତାନି ଧାରୟାମି (ଜୀବମାନଙ୍କୁ ବଞ୍ଚାଇ ରଖେ)। ରସାତ୍ମକଃ ସୋମଃ ଚ ଭୂତ୍ୱା (ପୁଣି ରସମୟ ଚନ୍ଦ୍ର ହୋଇ) ସର୍ବାଃ ଓଷଧୀଃ(ସମସ୍ତ ଉଦ୍ଭିଦ-ମାନଙ୍କୁ ପୁଷ୍ଣାମି (ପୋଷଣ କରିଥାଏ)।

**ଅନୁବାଦ—**

ହେ ଅର୍ଜୁନ, ମୁହିଁ ହିଁ ପୃଥିବୀରେ ପ୍ରବେଶ କରି ମୋର ଜୀବନଦାୟୀ ଶକ୍ତି ବଳରେ ପୃଥିବୀର ସମଗ୍ର ଜୀବସଂଘକୁ ଏବଂ ଚନ୍ଦ୍ରକୁ ରସାତ୍ମକ କରି ତା ଦେଇ ଉଦ୍ଭିଦମାନଙ୍କୁ ପୋଷଣ କରିଥାଏ।

**ବିଶେଷ ଭାଷ୍ୟ—**

ଶ୍ୱେତାଶ୍ୱତର ଉପନିଷଦରେ ଆମେ ଠିକ୍ ଏହି କଥା ଶୁଣିବାକୁ ପାଇବା—

ଯୋ ଦେବୋଗ୍ନୌ ଯୋ ଅପ୍ସୁ
ଯୋ ବିଶ୍ୱଂ ଭୁବନ ମାବିବେଶ
ଯୋ ଓଷଧୀଷୁ ଯୋ ବନସ୍ପତିଷୁ
ତସ୍ମୈ ଦେବାୟ ନମୋନମଃ (୨।୧୭)

(ଯେଉଁ ଦେବତା ଅଗ୍ନିରେ ଓ ଜଳରେ, ଯେ ସମଗ୍ର ଭୁବନକୁ ଅଧିକାର କରି ରହିଛନ୍ତି, ଯେ ବୃକ୍ଷ-ଲତାଦି ସକଳ ଉଦ୍ଭିଦ ଭିତରେ ମଧ୍ୟ ଅବସ୍ଥିତ, ତାଙ୍କୁ ବାରମ୍ବାର ନମସ୍କାର କରେ)।

( ୧୪ )

**ଅହଂ ବୈଶ୍ୱାନରୋ ଭୂତ୍ୱା ପ୍ରାଣିନାଂ ଦେହମାଶ୍ରିତଃ**
**ପ୍ରାଣାପାନ ସମାଯୁକ୍ତଃ ପଚାମ୍ୟନ୍ନଂ ଚତୁର୍ବିଧଂ। ୧୪।**

ଅହଂ ବୈଶ୍ୱାନରଃ ଭୂତ୍ୱା ( ମୁଁ ଅଗ୍ନିରୂପେ ) ପ୍ରାଣିନାଂ ଦେହଂ ଆଶ୍ରିତ୍ୟ (ପ୍ରାଣୀମାନଙ୍କର ଦେହକୁ ଆଶ୍ରୟ କରି) ପ୍ରାଣାପାନ ସମାଯୁକ୍ତଃ (ପ୍ରାଣ ଓ ଅପାନ ବାୟୁ ସହିତ ସଂଯୁକ୍ତ ହୋଇ) ଚତୁର୍ବିଧଂ ଅନ୍ନଂ ପଚାମି (ଚାରି ପ୍ରକାର ଖାଦ୍ୟକୁ ପରିପାକ କରଏ)।

## ଅନୁବାଦ—

ହେ ଅର୍ଜୁନ, ମୁଁ ପ୍ରାଣୀମାନଙ୍କ ଭିତରେ ଅଗ୍ନିରୂପେ ରହି ଏବଂ ପ୍ରାଣ ଓ ଅପାନ ବାୟୁ ସହିତ ସମାଯୁକ୍ତ ହୋଇ ସେମାନଙ୍କର ଚାରିପ୍ରକାର ଖାଦ୍ୟକୁ ମଧ୍ୟ ପରିପାକ କରଇଥାଏ ।

## ବିଶେଷ ଭାଷ୍ୟ—

ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ଓ ପେୟ ଭେଦରେ ଖାଦ୍ୟ ଚାରି ପ୍ରକାର । କେତେକ ଖାଦ୍ୟକୁ ଆମେ ଚୋବାଇଖାଉ—ସେ ସବୁ ଚର୍ବ୍ୟ । ଯାହାକୁ ଚୋଷି ଖାଉ ସେ ଚୋଷ୍ୟ, ଯାହାକୁ ଚାଟି ଖାଉ ସେ ଲେହ୍ୟ, ଯାହା ପିଉ ତାହା ପେୟ । ଭାତ, ରୁଟି, ସବ୍ଜୀ, ମାଛ,ମାଂସ,ଦୁଧ,ଦହି ଇତ୍ୟାଦି ନାନା ପ୍ରକାର ଚର୍ବ୍ୟ,ଚୋଷ୍ୟ ଲେହ୍ୟ ଓ ପେୟ ଶ୍ରେଣୀର ଖାଦ୍ୟ ଆମେ ପ୍ରତ୍ୟହ ଖାଉ । ସେ ସବୁ ପେଟକୁ ଯାଇ ଓ ସେଠାରେ ରହସ୍ୟମୟ ଭାବରେ ରକ୍ତରେ ପରିଣତ ହୋଇ ଆମକୁ ଜୀବିତ ଓ ପରିପୁଷ୍ଟ ରଖନ୍ତି । ଖାଦ୍ୟ ସବୁ କିପରି ଜୀର୍ଣ୍ଣ ହୋଇ ରକ୍ତରେ ପରିଣତ ହୁଅନ୍ତି, ତାହା ଏପର୍ଯ୍ୟନ୍ତ ଏକ ରହସ୍ୟାବୃତ ପ୍ରକ୍ରିୟା ହୋଇ ରହିଛି । ଆଧୁନିକ ବିଜ୍ଞାନ ମଧ୍ୟ ସେ ସମ୍ପର୍କରେ ଅଜ୍ଞ । ତେଣୁ ଏହା ଯେ ଏକ ବିସ୍ମୟଜନକ ଐଶ୍ୱରିକ କ୍ରିୟା ଏଥିରେ ସନ୍ଦେହ ନାହିଁ । ଭାରତୀୟମାନେ ଏହି ପ୍ରକ୍ରିୟାକୁ 'ଜଠରାଗ୍ନି' ନାମ ଦେଇଥିଲେ । ପ୍ରାଣ ଓ ଅପାନ ବାୟୁ ଜୀର୍ଣ୍ଣକ୍ରିୟାରେ ଜଠରାଗ୍ନିକୁ ସାହାଯ୍ୟ କରନ୍ତି ବୋଲି ମଧ୍ୟ କୁହାଯାଏ ।

( ୧୫ )

ସର୍ବସ୍ୟ ଚାହଂ ହୃଦି ସନ୍ନିବିଷ୍ଟୋ
ମତ୍ତଃ ସ୍ମୃତିର୍ଜ୍ଞାନମପୋହନଂ ଚ
ବେଦୈଶ୍ଚ ସର୍ବୈରହମେବ ବେଦ୍ୟୋ—
ବେଦାନ୍ତକୃଦ୍ ବେଦବିଦେବ ଚାହଂ । ୧୫ ।

ଅହଂ ଚ ସର୍ବସ୍ୟ ହୃଦି ସନ୍ନିବିଷ୍ଟଃ ( ମୁଁ ମଧ୍ୟ ସମସ୍ତଙ୍କ ହୃଦୟରେ ସନ୍ନିବିଷ୍ଟ ଅଛି ) ମତ୍ତଃ ସ୍ମୃତିଃ ଜ୍ଞାନଂ ( ମୋଠାରୁ ସ୍ମୃତି ଓ ଜ୍ଞାନ ) [ ପୁଣି ] ଅପୋହନଂ ଚ ( ସେ ଦୁହିଁଙ୍କର ଅଭାବ ମଧ୍ୟ ) [ ଘଟିଥାଏ ] । ଅହଂ ଏବ ସର୍ବୈଃ ବେଦୈଃ ବେଦ୍ୟଃ ( ମୁହିଁ ହିଁ ସକଳ ବେଦର ଜ୍ଞାତବ୍ୟ ତତ୍ତ୍ୱ ) । ଅହଂ ଏବ ( ମୁଁ ମଧ୍ୟ ) ବେଦାନ୍ତକୃତ୍ ବେଦବିଦ୍ ( ବେଦାନ୍ତ ରଚୟିତା ଓ ବେଦାର୍ଥବେତ୍ତା ) ।

**ଅନୁବାଦ—**

ହେ ଅର୍ଜୁନ, ମୁଁ ମଧ୍ୟ ସମସ୍ତଙ୍କ ହୃଦୟରେ ବିରାଜିତ । ମନୁଷ୍ୟର ସ୍ମୃତି, ଜ୍ଞାନ ଓ ଜ୍ଞାନ ହ୍ରାସ ରୂପକ ଉଭୟ ପ୍ରକ୍ରିୟା ମୋଠାରୁ ହିଁ ଆସିଥାଏ ବୋଲି ଜାଣିବ । ଯେଉଁଥିପାଇଁ ବେଦ ( ଶାସ୍ତ୍ର ) ଅଧ୍ୟୟନ କରିବାର କଥା, ସେହି ଜ୍ଞାନ ହିଁ ମୁହିଁ । ମୁଁ କେବଳ ବେଦବିଦ୍ ନୁହେଁ, ବେଦାନ୍ତର ସ୍ରଷ୍ଟା ମଧ୍ୟ ।

**ବିଶେଷ ଭାଷ୍ୟ—**

ସାଧାରଣତଃ ଧର୍ମମାନଙ୍କରେ ଦେଖାଯାଏ ଯେ, ଯେତେ'ସବୁ ଭଲ କଥା ସେ ସବୁ ଈଶ୍ୱରଙ୍କର ଦାନ ବୋଲି କୁହାଯାଏ । ମନ୍ଦ କଥା ବେଳକୁ ଶାସ୍ତ୍ର ନୀରବ ବା କୁହାଯାଏ ଯେ, ତାହା ଆମ ନିଜର କର୍ମଫଳ ବା ଏକ କଳ୍ପିତ ସଇତାନ'ର କର୍ମ । ଗୀତାରେ ମଧ୍ୟ ଏଭଳି ଦେଖ ଦେଇଛି । ପଞ୍ଚମ ଅଧ୍ୟାୟର ପଞ୍ଚଦଶ ଶ୍ଳୋକଟି ଏଥିଲାଗି ପ୍ରସିଦ୍ଧ—

ନାଦତ୍ତେ କସ୍ୟଚିତ୍ ପାପଂ ନଚୈବ ସୁକୃତଂ ବିଭୁଃ
ଅଜ୍ଞାନେନାବୃତଂ ଜ୍ଞାନଂ ତେନ ମୁହ୍ୟନ୍ତି ଜନ୍ତବଃ ।

(ଭଗବାନ୍ କାହାର ପାପ ବା ପୁଣ୍ୟ ଗ୍ରହଣ କରନ୍ତି ନାହିଁ । ଜ୍ଞାନ, ଅ-ଜ୍ଞାନ ଦ୍ୱାରା ଆବୃତ ହୋଇଥିବାରୁ ଜୀବମାନେ ମୋହଗ୍ରସ୍ତ ହୋଇ କାହାକୁ ପାପ, କାହାକୁ ପୁଣ୍ୟ ମନେକରି ଆଚରଣ କରନ୍ତି ।)

କିନ୍ତୁ ପ୍ରଶ୍ନ ହୋଇପାରେ ଯେ, ଜ୍ଞାନ ତ ଈଶ୍ୱରଙ୍କ ଦାନ, ତେବେ ଅ-ଜ୍ଞାନ ବା ପ୍ରମାଦ କେଉଁଠୁ ଆସିଲା ?

ଈଶ୍ୱର ଯଦି ଏ ଜଗତରେ ସବୁ, ତେବେ ଜ୍ଞାନ ସହିତ ସେ ମଧ୍ୟ ଅଜ୍ଞାନ ବୋଲି କହିବା ହିଁ ଏକାନ୍ତ ଯୁକ୍ତିଯୁକ୍ତ ହେବ । ଗୀତା ଏହି ଯୁକ୍ତିଯୁକ୍ତତା ମଧ୍ୟ ସ୍ୱୀକାର କରିଛନ୍ତି; କିନ୍ତୁ କେବଳ କେତୋଟି ସ୍ଥାନରେ । ଦଶମ ଅଧ୍ୟାୟରେ ଈଶ୍ୱର ନିଜକୁ 'ଦ୍ୟୁତଂ ଛଳୟତାମସ୍ମି' (ଠକମାନଙ୍କଠାରେ ଦେଖା ଦେଉଥିବା ଅସାଧାରଣ ଅକ୍ଷକ୍ରୀଡ଼ା-ଶକ୍ତି, ମୁଁ) ବା ମୃତ୍ୟୁଃ ସର୍ବହରଶ୍ଚାହଂ (ମୁଁ ମଧ୍ୟ ସର୍ବହରଣକାରୀ ମୃତ୍ୟୁ) ଇତ୍ୟାଦି କହିବାରେ ସେହି ଯୁକ୍ତିଯୁକ୍ତତା ପ୍ରକାଶିତ ହୋଇଛି । ଏଠାରେ ମଧ୍ୟ, ଈଶ୍ୱର ମନୁଷ୍ୟର ସ୍ମୃତି ଓ ଜ୍ଞାନ ଏବଂ ସେହି ଉଭୟର ଅଭାବର ମଧ୍ୟ ହେତୁ ବୋଲି ସେ ନିଜେ କହିବାଦ୍ୱାରା ଗୀତାର ସେହି ଯୁକ୍ତିଯୁକ୍ତତା ଦୃଢ଼ୀଭୂତ ହୋଇଛି । ଅର୍ଥାତ୍ ଏ ସଂସାରରେ ଜ୍ଞାନ ଅଛି ; ଅ-ଜ୍ଞାନ ବି ଅଛି ; ସ୍ମୃତି ଅଛି, ସ୍ମୃତି-ବିଭ୍ରମ ମଧ୍ୟ ଅଛି । ସେମାନଙ୍କ ଭିତରୁ

ଆମେ କାହାକୁ ବାଛିବା, ସେ ଦାୟିତ୍ୱ ଆମର ଏବଂ ସେହି ଅନୁସାରେ ଆମେ କର୍ମଫଳ ଭୋଗିବା ।

ବେଦାନ୍ତ (ବ୍ରହ୍ମସୂତ୍ର) କାର ବ୍ୟାସ ଭାରତୀୟ ସଂସ୍କୃତର ଧାରକ ବୋଲି ପରିଚିତ । ଏବେ ଭାରତୀୟ ସଂସ୍କୃତି ବୋଇଲେ ଯାହା ବୁଝାଏ ସେ ସବୁର ମୂଳରେ ବ୍ୟାସଦେବଙ୍କ କୃତିତ୍ୱ । ସେଥିପାଇଁ ଗୀତା ପାରାୟଣକାରୀମାନେ "ନମୋସ୍ତୁତେ ବ୍ୟାସ ବିଶାଳବୁଦ୍ଧେ" (ହେ ବିଶାଳ ବୁଦ୍ଧି ବ୍ୟାସ, ତୁମକୁ ନମସ୍କାର , ଏହି ବାକ୍ୟ ପ୍ରତ୍ୟହ ଉଚ୍ଚାରଣ କରିଥାନ୍ତି । ଐଶ୍ୱରିକ ପ୍ରେରଣା ନ ହେଲେ, "ବିଶାଳବୁଦ୍ଧି" ଏମନ୍ତ ନୁହେଁ, କି ତାହା କାର୍ଯ୍ୟକାରୀ ମଧ୍ୟ ହୋଇ ପାରିବ ନାହିଁ । ତେଣୁହିଁ ଗୀତା କହୁଛନ୍ତି ଯେ, ବେଦାନ୍ତର କର୍ତ୍ତା ପ୍ରକୃତରେ ବ୍ୟାସ ନୁହନ୍ତି, ତା ପଛରେ ମୁଁ (ଈଶ୍ୱର)ଅଛି । ବେଦଵଦ୍‌ମାନେ କେବଳ ଶ୍ରୁତିବେଦ -ଯେ-ଘୋଷିଥିବ, ସେ ନୁହନ୍ତି । ଏହାର ବ୍ୟଂଜନାର୍ଥ ହେଲା ତତ୍ତ୍ୱଜ୍ଞ ବା ଜ୍ଞାନୀ । ତାହା ମଧ୍ୟ ଈଶ୍ୱର ପ୍ରେରଣା ବିନା ଅସମ୍ଭବ ।

ଏହି ସର୍ବବ୍ୟାପ୍ତ ଈଶ୍ୱର କିନ୍ତୁ ଦ୍ୱିବିଧ ରୀତିରେ ବିଶ୍ୱରେ ପ୍ରକାଶିତ ହୁଅନ୍ତି । ପରଶ୍ଳୋକରେ ତାହାହିଁ କୁହାଯାଇଛି ।

( ୧୬ )

ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ
କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ । ୧୬ ।

କ୍ଷରଃ ଅକ୍ଷରଃ ଚ ଦ୍ୱୌ ଏବ ଇମୌ ପୁରୁଷୌ ଲୋକେ (କ୍ଷର ଓ ଅକ୍ଷର ନାମରେ ଈଶ୍ୱର ଦୁଇଟି ପୁରୁଷ ବା ଶକ୍ତି ରୂପରେ ଏ ଜଗତରେ ପ୍ରତିଷ୍ଠିତ) । ସର୍ବାଣି ଭୂତାନି (ସର୍ବ ଭୂତରେ) [ଯେ ପ୍ରତିଷ୍ଠିତ ସେ] କ୍ଷରଃ କ୍ଷର) । କୂଟସ୍ଥଃ ଅକ୍ଷରଃ (ଯେ ଏ ମାୟା ଭିତରେ କୂଟ ବା ପର୍ବତ ପରି ଅଟଳ ଭାବରେ ସ୍ଥିତ, ତାଙ୍କୁ ଅକ୍ଷର କୁହାଯାଏ) ।

ଅନୁବାଦ—

ହେ ଅର୍ଜୁନ, ଏ ସୃଷ୍ଟିରେ ଈଶ୍ୱର ଦୁଇଟି 'ପୁରୁଷ' ବା ଶକ୍ତି (ଜଡ ଓ ଚେତନ ବା ଦେହ ଓ ଆତ୍ମା) ରୂପେ ବିରାଜିତ । ସମଗ୍ର ଜୀବସଙ୍ଘ 'କ୍ଷର' ପୁରୁଷରହିଁ ପ୍ରକାଶ । କିନ୍ତୁ ଏହି ସୃଷ୍ଟି ଲୟର ମାୟା ଭିତରେ ଯେଉଁ ପୁରୁଷ ଅବିଚଳିତ (କୂଟସ୍ଥ) ରୂପେ ବିରାଜିତ, ତାଙ୍କୁ କୁହାଯାଏ ଅକ୍ଷର ।

(୧୭)

ଉତ୍ତମଃ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ
ଯୋ ଲୋକତ୍ରୟମାବିଶ୍ୟ ବିଭର୍ତ୍ତ୍ୟ ବ୍ୟୟ ଈଶ୍ୱରଃ । ୧୭ ।

ଅନ୍ୟଃ ତୁ (କ୍ଷର ଓ ଅକ୍ଷରଠାରୁ ଭିନ୍ନ) ଉତ୍ତମଃ ପୁରୁଷଃ (ଶ୍ରେଷ୍ଠ ପୁରୁଷ) ପରମାତ୍ମା ଇତି ଉଦାହୃତଃ (ପରମାତ୍ମା ନାମରେ କଥିତ) । ଯଃ ଈଶ୍ୱରଃ ଅବ୍ୟୟଃ (ଯେଉଁ ଈଶ୍ୱର ନିର୍ବିକାର ଭବରେ) ଲୋକତ୍ରୟଂ ଆବିଶ୍ୟ (ତିନି ଲୋକରେ ପ୍ରବିଷ୍ଟ ରହି) ବିଭର୍ତ୍ତି (ପାଳନ କରୁଅଛନ୍ତି) ।

**ଅନୁବାଦ—**

କିନ୍ତୁ କ୍ଷର ଓ ଅକ୍ଷରଠାରୁ ଭିନ୍ନ ଉତ୍ତମତର ପୁରୁଷ ଅଛନ୍ତି ଯାହାଙ୍କର ଅନ୍ୟ ନାମ ପରମାତ୍ମା । ସେହି ଅବ୍ୟୟ ଈଶ୍ୱର ତ୍ରିଲୋକ-ପରିବ୍ୟାପ୍ତ ହୋଇ ସମସ୍ତଙ୍କୁ ପାଳନ କରିଥାନ୍ତି ।

(୧୮)

ଯସ୍ମାତ୍ କ୍ଷରମତୀ ତୋଽହମକ୍ଷରାଦପି ଚୋତ୍ତମଃ
ଅତୋଽସ୍ମି ଲୋକେ ବେଦେଚ ପ୍ରଥିତଃ ପୁରୁଷୋତ୍ତମଃ । ୧୮ ।

ଯସ୍ମାତ୍ (ଯେ ହେତୁରୁ) ଅହଂ (ମୁଁ) କ୍ଷରଂ ଅତୀତଃ (କ୍ଷରରୁ ଅତୀତ) ଅକ୍ଷରାତ୍ ଅପି ଉତ୍ତମଃ (ଅକ୍ଷର ଠାରୁ ମଧ୍ୟ ଉତ୍କୃଷ୍ଟ) । [ସେହି ହେତୁରୁ] ଲୋକେ (ଜନ ଚେତନାରେ) [ଏବଂ] ବେଦେଚ (ଶାସ୍ତ୍ରାବଳିରେ ମଧ୍ୟ) ପୁରୁଷୋତ୍ତମ ଇତି ପ୍ରଥିତଃ ଅସ୍ମି (ମୁଁ ପୁରୁଷୋତ୍ତମ ବୋଲି କୁହାଯାଇଥାଏ ।)

**ଅନୁବାଦ—**

ହେ ଅର୍ଜୁନ, ଯେ ହେତୁ ମୁଁ କ୍ଷରରୁ ଅତୀତ ଏବଂ ଅକ୍ଷରଠାରୁ ଉତ୍ତମତର ତେଣୁ ଉଭୟ ଜନ-ଚେତନା ଏବଂ ବେଦରେ (ଶାସ୍ତ୍ରମାନଙ୍କରେ) ମଧ୍ୟ ମୋର ଅନ୍ୟ ନାମ 'ପୁରୁଷୋତ୍ତମ' ।

**ବିଶେଷ ଭାଷ୍ୟ—**

ମୁଣ୍ଡକୋପନିଷତ୍ (୨/୧/୨)ରେ ସମାନ୍ତରାଳ ବାଣୀ—"ଅକ୍ଷରାତ୍ ପରତଃ ପରଃ"—ସେହି ପୁରୁଷ ଅକ୍ଷରଠାରୁ ମଧ୍ୟ ଶ୍ରେଷ୍ଠ । ଶ୍ୱେତାଶ୍ୱତର (୧/୮) ଓ (୩/୧୫)ରେ ମଧ୍ୟ ସମାନ୍ତରାଳଭାବ ଲକ୍ଷଣୀୟ—

"ସଂଯୁକ୍ତମେତତ୍ କ୍ଷରମକ୍ଷରଂ ଚ
ବ୍ୟକ୍ତାବ୍ୟକ୍ତଂ ଭରତେ ବିଶ୍ୱମୀଶଃ
ଅନୀଶ୍ଚାତ୍ମା ବଧ୍ୟତେ ଭୋକ୍ତୃଭାବାତ୍
ଜ୍ଞାତ୍ୱାଦେବଂ ମୁଚ୍ୟତେ ସର୍ବପାଶୈଃ ।"

(କ୍ଷର ଓ ଅକ୍ଷର ଏବଂ ବ୍ୟକ୍ତ ଓ ଅବ୍ୟକ୍ତ ଅର୍ଥାତ ଦେହ ଓ ଆତ୍ମା ଉଭୟରେ ସଂଯୁକ୍ତ ଏହି ବିଶ୍ୱକୁ ପରମେଶ୍ୱର ହିଁ ଧାରଣ କରିଅଛନ୍ତି । ସେହି ପରମାତ୍ମା ହିଁ ଅନୀଶ୍ୱର (ଜୀବ) ଉଭୟରେ ଭୋକ୍ତୃତ୍ୱ ଅବଲମ୍ବନ କରି ସଂସାରରେ ଆବଦ୍ଧ ହୋଇଥାନ୍ତି । ପୁଣି ସେହି ହିଁ ପରମେଶ୍ୱରଙ୍କୁ ଜାଣିଲେ ପରେ ସକଳ ବନ୍ଧନ କାଟି ମୁକ୍ତ ହୋଇଯାନ୍ତି ।

ପୁରୁଷ ଏବେଦଂ ସର୍ବଂ ଯଦ୍ଭୂତଂ ଯଚ୍ଚ ଭବ୍ୟଂ
ଉତାମୃତତ୍ୱସ୍ୟେଶାନୋ ଯଦନ୍ନେ ନାତି ରୋହତି

(ଯାହା ଅଛି ବର୍ତ୍ତମାନ; ଯାହା ଅତୀତ ଓ ଯାହା ଭବିଷ୍ୟତ୍ ସେ ସବୁହିଁ କେବଳ ପୁରୁଷ । ସେହିହିଁ ଅମୃତତ୍ୱର ପ୍ରଭୁ । ଏବଂ ଯାହା କିଛି ଏ ଜଗତରେ ଖାଦ୍ୟଖାଇ ବଞ୍ଚନ୍ତି ସେମାନଙ୍କର ସେ ମଧ୍ୟ ବିଧାତା) ।

( ୧୯ )

ଯୋ ମାମେବ ମସଂମୂଢୋ ଜାନାତି ପୁରୁଷୋତ୍ତମଂ
ସ ସର୍ବବିଦ୍ ଭଜତି ମାଂ ସର୍ବଭାବେନ ଭାରତ । ୧୯ ।

[ହେ] ଭରତ (ଅର୍ଜୁନ) ଯଃ(ଯେ) ଏବଂ (ଏହିପରି) ଅସଂମୂଢଃ (ମୋହଶୂନ୍ୟ ହୋଇ) ମାଂ ପୁରୁଷୋତ୍ତମଂ ଜାନାତି (ମୋର ପୁରୁଷୋତ୍ତମତ୍ୱକୁ ଅବବୋଧ କରିପାରନ୍ତି) ସଃ ସର୍ବବିଦ୍ (ସେହି ହିଁ ସର୍ବଜ୍ଞ) ସର୍ବଭାବେନ (ସର୍ବତୋଭାବରେ) ମାଂ ଭଜତି (ମତେ ଭଜନା କରନ୍ତି) [ବୋଲି ଜାଣିବ] ।

**ଅନୁବାଦ —**

ହେ ଅର୍ଜୁନ, ଯେଉଁ ଲୋକ ମୋହମୁକ୍ତ ହୋଇ ମତେ ଏହି ପ୍ରକାର ସର୍ବୋଚ୍ଚ 'ପୁରୁଷୋତ୍ତମ' ରୂପେ ଅର୍ଥାତ୍ ମୋର ପୁରୁଷୋତ୍ତମତ୍ୱକୁ ଅବବୋଧ କରିପାରେ, ତାକୁହିଁ ସର୍ବବିଦ୍ ବୋଲି ଜାଣିବ । ମତେ ସର୍ବଭାବରେ ଉପାସନା କରିବା, ସେ ଲୋକ ପକ୍ଷରେ ସ୍ୱାଭାବିକ ହୋଇପଡେ ।

( ୨୦ )

ଇତି ଗୁହ୍ୟତମଂ ଶାସ୍ତ୍ରମିଦମୁକ୍ତ ମୟାନଘ
ଏତଦ୍ ବୁଦ୍ଧ୍ୱା ବୁଦ୍ଧିମାନ୍ ସ୍ୟାତ୍ କୃତକୃତ୍ୟଶ୍ଚ ଭାରତ । ୨୦ ।

[ହେ] ଅନଘ (ନିଷ୍ପାପ) ଭାରତ (ଅର୍ଜୁନ) ଇତି ଗୁହ୍ୟତମଂ ଇଦଂ ଶାସ୍ତ୍ରଂ ମୟା ଉକ୍ତଂ (ଏହି ଅତି ଗୋପନୀୟ ଶାସ୍ତ୍ର ଅର୍ଥାତ ଜ୍ଞାନ ତୁମକୁ ମୁଁ କହିଲି) । ଏତଦ୍ ବୁଦ୍ଧ୍ୱା (ଏହା ବୁଝିପାରିଲେ) [ଲୋକ] ବୁଦ୍ଧିମାନ୍, କୃତକୃତ୍ୟ ଚ ସ୍ୟାତ (ବୁଦ୍ଧିମାନ ଓ ସ୍ୱକର୍ତ୍ତବ୍ୟପରାୟଣ ହୁଏ) ।

## ଅନୁବାଦ—

ହେ ଅର୍ଜୁନ, ଏ ଯେଉଁ ଅତି ରହସ୍ୟମୟ ଶାସ୍ତ୍ରକଥା ତୁମକୁ କହିଲି, ଏହାକୁ ଉତ୍ତମରୂପେ ହୃଦୟଙ୍ଗମ କରିପାରିଲେ, ଲୋକ ନିଶ୍ଚିତ ଭାବରେ ବୁଦ୍ଧିମତ୍ତାର ସହିତ (ପ୍ରମାଦଶୂନ୍ୟ ଭାବରେ) ତାର ସକଳ କର୍ତ୍ତବ୍ୟ ସମାଧାନ କରିବ ।

## ବିଶେଷ ଭାଷ୍ୟ—

ପାଠକେ, 'ଶାସ୍ତ୍ର' ଏହି ଶବ୍ଦଟି ଉପରେ ବିସ୍ତୃତ ଆଲୋଚନା ପର (ଷୋଡଶ ଅଧ୍ୟାୟ) ଅଧ୍ୟାୟର ଶେଷ ଶ୍ଳୋକରେ 'ବିଶେଷ ବ୍ୟାଖ୍ୟା'ରେ ପାଇବେ । ଏଠାରେ ଅଉ ବିଶେଷ କିଛି କହିବାର ନାହିଁ । ବର୍ତ୍ତମାନ ଏ ଅଧ୍ୟାୟ ଏହିଠାରେ ଶେଷ । ପୁରୁଷ ବା ନାରୀ ର 'ପୁରୁଷୋତ୍ତମ-ପରିଚୟ' ସମ୍ପର୍କରେ ଏ କ୍ଷେତ୍ରରେ ପରମ ଅଭିଜ୍ଞ ପରମହଂସଦେବଙ୍କର କେତୋଟି ବଚନାମୃତ ପାଠକ-ପାଠିକାମାନଙ୍କ ଆଗରେ ପରିବେଷିତ କରିହିଁ ବିଦାୟ ନେଉଛୁ ।

"କେହି ଲୋକ କିଣା-ବିକା କରିବା ପାଇଁ ହାଟକୁ ଗଲେ ହାଟର କିଛି ଦୂରରୁ ଶୁଣିବ କେବଳ ପାଟିତୁଣ୍ଡ, କିଛି ଯେପରି ବୁଝିହେଉନ । କିନ୍ତୁ ହାଟ ଭିତରକୁ ପଶିଗଲେ ସେ ଦେଖିବ ଯେ, କିଣାଳୀ ଓ ବିକାଳୀ ପ୍ରତ୍ୟେକେ ପ୍ରତ୍ୟେକର କଥା ବେଶ୍ ବୁଝୁଛନ୍ତି ଏବଂ ବ୍ୟବସାୟ ଯଥାରୀତି ଚାଲିଛି । ଠିକ୍ ସେହିପରି ମନୁଷ୍ୟ ଈଶ୍ୱରଙ୍କୁ ନ ଜାଣିଲାଯାଏ ତାର ଯେତେ ସବୁ ଜିଜ୍ଞାସା ଗୋଳମାଳିଆ ରହିଥିଲେ । ସୃଷ୍ଟିରେ କାର୍ଯ୍ୟକାରଣ ଏବଂ 'କାହିଁକି' ଓ 'କିପରି' ନେଇ ତାର ଯୁକ୍ତି ଓ ପ୍ରତିଯୁକ୍ତିର ଅନ୍ତ ନ ଥାଏ । କିନ୍ତୁ ଈଶ୍ୱରଙ୍କୁ ଜାଣିଲା ପରେ ଏ ସମସ୍ତ କଳ୍ପନାଜଳ୍ପନା ଉଭେଇଯାଏ । ତାପରେ ସୃଷ୍ଟି ରହସ୍ୟ ତା' ଆଗରେ ଖୋଲି ହୋଇଯାଏ ।"

"ଗୋଟିପୋକ ନିଜ ସୂତାରେ ନିଜର ଜେଲ ସୃଷ୍ଟି କରେ । ଠିକ୍ ସେହିପରି ସଂସାରୀ ଲୋକ ନିଜର ବାସନା-ଜାଲରେ ହିଁ ନିଜେ ଛନ୍ଦି ହେଉଥାଏ । କିନ୍ତୁ ଗୋଟିପୋକ ପ୍ରଜାପତି ହୋଇଗଲେ, ସେ ନିଜ ତଆଣ ବସାକୁ ଭାଙ୍ଗି ଦେଇ ବାହାରକୁ ଉଡ଼ିଯାଏ, ଉନ୍ମୁକ୍ତ ଆଲୋକ ଓ ପବନ ଉପଭୋଗ କରିବା ପାଇଁ । ସେହିପରି ଲୋକ ଯେତେବେଳେ ମାୟାର ଜାଲ ଛିଣ୍ଡାଇ ଦେଇପାରେ, ସେ ସ୍ୱାଭାବିକ ଭାବରେ ସମ୍ମୁଖୀନ ହେବ ସ୍ୱୟଂ ବ୍ରହ୍ମଙ୍କର ।"

"ଗୋଟିଏ ମାଠିଆରେ ଗୋଟିଏ ମାତ୍ର ଛୋଟ କଣା ରହିଯାଇଥିଲେ ମାଠିଆଯାକର ପାଣି ସେହିବାଟେ ବୋହିଯିବ । ସେହିପରି ସାଧକର ଚିତ୍ତରେ ପାର୍ଥିବ-ଆସକ୍ତିର ଅବଶେଷ ଥିବାଯାଏଁ; ତାର ସମସ୍ତ ଆଧ୍ୟାତ୍ମିକ ସାଧନା ନିଷ୍ଫଳ ହୋଇ ଚାଲିଯିବ ।"

"ମାୟାବଦ୍ଧ ଆତ୍ମାହିଁ ଜୀବ । ମାୟାମୁକ୍ତ ସେହି ଆତ୍ମାହିଁ ସ୍ୱୟଂ ଈଶ୍ୱର ।"

ଇତି ଶ୍ରୀ ମହାଭାରତେ ଶତ ସହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍ ଭଗବଦ୍ ଗୀତା ସୂପନିଷତ୍ସୁ ବ୍ରହ୍ମ ବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦେ ପୁରୁଷୋତ୍ତମ ଯୋଗୋ ନାମ ପଞ୍ଚଦଶୋଽଧ୍ୟାୟଃ ।



## ଷୋଡଶ ଅଧ୍ୟାୟ

# ଦୈବାସୁର ସଂପଦ୍ ବିଭାଗ ଯୋଗଃ

### ଅଧ୍ୟାୟ ଦୀପିକା

ପୂର୍ବ ଅଧ୍ୟାୟ (ପଞ୍ଚଦଶ)ଟିରେ "ପୁରୁଷୋତ୍ତମ"ଙ୍କ କଥା କୁହାଯାଇଛି । ଈଶ୍ୱରଙ୍କର ଏହା ବହୁ ନାମରୁ କେବଳ ଗୋଟାଏ ନାମ ମାତ୍ର ହେଲେ ଏହାର ବିଶେଷ ଆଧ୍ୟାତ୍ମିକ ତାତ୍ପର୍ଯ୍ୟ ରହିଲା ନାହିଁ । ଈଶ୍ୱରଙ୍କୁ ଆମେ "ପାଇବା" ବା 'ଲାଭ କରିବା' ପାଇଁ ଚେଷ୍ଟା କରିବାର ଏକମାତ୍ର ଯୁକ୍ତିସିଦ୍ଧ ତାତ୍ପର୍ଯ୍ୟ ହେଉଛି ଏହି ଯେ, ଆମେ ନିଜେଇ 'ଈଶ୍ୱର' ହେବା,—ଅର୍ଥାତ୍ ଐଶ୍ୱରିକ ଗୁଣାବଳିର ଅଭ୍ୟାସ ଦେଇ ହିଁ କ୍ରମେ ଈଶ୍ୱରଙ୍କ ସହିତ ଏକୀଭୂତ ହୋଇଯିବା । ଗୌତମ ବୁଦ୍ଧ ଦିନେ ହେଲେ ଈଶ୍ୱରଙ୍କୁ ପ୍ରାର୍ଥନା କରି ନ ଥିଲେ କି କୌଣସି 'ଈଶ୍ୱରଙ୍କ' କଥା ପ୍ରଚାର କରି ନ ଥିଲେ ।

କିନ୍ତୁ ସେ ନିଜ ଜୀବନରେ ଥିଲେ ସକଳ ଐଶ୍ୱରିକ ଗୁଣର ମହିମାନ୍ୱିତ ପ୍ରକାଶ । ଈଶ୍ୱରଙ୍କ ନାମ ଉଚ୍ଚାରଣ କର ବା ନ କର, ପ୍ରକୃତ ଐଶ୍ୱରିକତାର ଅଧିକାରୀ ହେବାକୁ ହେଲେ ଆମକୁ ଯେଉଁ ସାଧନା ଦେଇଯିବାକୁ ହେବ, ସମଗ୍ରତଃ ଗୀତା କେବଳ ତାହାର ନିର୍ଦ୍ଦେଶ-ଗ୍ରନ୍ଥ ମାତ୍ର, ରମାଁ ରଲାଁ ଗାନ୍ଧିଜୀଙ୍କ ଜୀବନୀ ଲେଖି ପୁସ୍ତକର ମଲାଟ ଉପରେ ଗାନ୍ଧିଜୀଙ୍କୁ ଗୋଟିଏ ବାକ୍ୟରେ ବର୍ଣ୍ଣନା କରିଥିଲେ—One with the Infinite—"ସେହି, ଯେ କି ଅସୀମ ଈଶ୍ୱରଙ୍କଠାରେ ଏକୀଭୂତ" । ସେହିପରି ଆମେ ଭଗବାନଙ୍କୁ 'ପୁରୁଷୋତ୍ତମ' ଭାବରେ ଜ୍ଞାତ ହେବା ଅର୍ଥ, ସେହି ହିଁ ହେବେ ଆମର ପ୍ରତ୍ୟେକ, ଚିନ୍ତା ଓ କର୍ମର ଆଦର୍ଶ । ଅର୍ଥାତ୍ ଆମେ ମଧ୍ୟ ଯଥାସାଧ୍ୟ 'ପୁରୁଷୋତ୍ତମ' ବା 'ଉତ୍ତମ ପୁରୁଷ' ବା 'ନରୋତ୍ତମ' ହେବାକୁ ଚେଷ୍ଟା କରିବା । ତାହାହିଁ ଗୀତାଙ୍କର ସାମଗ୍ରିକ ବ୍ୟଞ୍ଜନା । ପୂର୍ବ ଅଧ୍ୟାୟର ଶେଷ ଶ୍ଳୋକର ଶେଷ ପାଦରେ ଗୀତା କହିଲେ ଯେ,

> ଏତଦ୍ ବୁଦ୍ଧ୍ୱା ବୁଦ୍ଧିମାନ୍ ସ୍ୟାତ୍
>
> କୃତକୃତ୍ୟଶ୍ଚ ଭାରତ ।

(ଏହା ଜାଣିଲେ ମନୁଷ୍ୟ ବୁଦ୍ଧିମାନ୍ ଭାବରେ କର୍ମ କରେ ଓ କୃତକର୍ମା ବା ସିଦ୍ଧକର୍ମା ମଧ୍ୟ ହୁଏ) । କିନ୍ତୁ ଏହି 'କୃତକୃତ୍ୟତା'ର ବା 'ବୁଦ୍ଧିମତ୍ତା'ର ଅର୍ଥ କ'ଣ ? ଗୀତାର ଏହି ଷୋଡ଼ଶ ଅଧ୍ୟାୟଟି ତାର ଉତ୍ତର ।

ଗୀତା ଏହି ଅଧ୍ୟାୟରେ; ମନୁଷ୍ୟ ମାତ୍ରେ 'ପୁରୁଷୋତ୍ତମ' ହେବା ଦିଗରେ, ଆଦର୍ଶ ମାନବ ହେବା ଦିଗରେ, ମୁକ୍ତ, ବନ୍ଧନହୀନ ଓ ପୂର୍ଣ୍ଣତାପ୍ରାପ୍ତ ହେବା ଦିଗରେ, ଯେଉଁ ଯେଉଁ ଗୁଣଗୁଡ଼ିକ ତାକୁ ସହାୟକ ହେବାର କଥା, ସେ ସବୁକୁ "ଦୈବୀ" ଏବଂ ଯାହା ବିପରୀତ କ୍ରିୟା ସୃଷ୍ଟି କରିଥାନ୍ତି, ତାକୁ "ଆସୁରୀ" ନାମ ଦେଇଛନ୍ତି । ଦୈବୀଗୁଣ ସବୁ ଆମକୁ ଊର୍ଦ୍ଧ୍ୱଗ କରଇଥାନ୍ତି ଆଉ ଆସୁରୀ ଘଟାନ୍ତି ଆମର ଆତ୍ମିକ ପତନ । ଏହି ଅଧ୍ୟାୟର ୧୯ ଓ ୨୦ ଶ୍ଳୋକରେ "ଆସୁରୀ ଯୋନି" ପ୍ରଭୃତ ପ୍ରଚଳିତ ହିନ୍ଦୁ ବିଶ୍ୱାସ ଯାହା ସବୁ ଲିପିବଦ୍ଧ ହୋଇଛି, ଆଧୁନିକ ପାଠକେ ତାହା ଉପରେ ବିଶେଷ ନଜର ଦେବା ଦରକାର ନାହିଁ । ମଲାପରେ କିଏ କେଉଁ ଜନ୍ମ (ଯୋନି) ପ୍ରାପ୍ତ ହେବ, ତା' ଜୀଇଁଥିବା ଲୋକର ଜାଣିବାର ଉପାୟ ନାହିଁ । ତେଣୁ ତା' ଉପରେ ଗୋଟାଏ ମତବାଦ ଠିଆ କରହେବ କିପରି ? ତେଣୁ ଆମର ବିଶେଷ-ଲକ୍ଷ୍ୟର ଯଥାଯଥ ସ୍ଥାନରେ ଗୀତା ଯେଉଁଠି ଯେଉଁଠି ଆତ୍ମାର ମୃତ୍ୟୁ-ପର-ଅବସ୍ଥା ସବୁ ବର୍ଣ୍ଣନା କରିବାକୁ ଯାଇଛନ୍ତି, ସେଇଠି ସେଇଠି ବରାବର ତାହା ମାନବିକ-ଅଭିଜ୍ଞତାର ବାହାରେ, ସାଧାରଣ ମନୁଷ୍ୟର ବୌଦ୍ଧିକ ତାର୍କିକତାର ବାହାରେ ବୋଲି କହି ଆମେ ସେ ପ୍ରକାର ଅତି-ପାର୍ଥିବ, ଅତି-ଭୌତିକ ଆଲୋଚନାରେ ଯୋଗ ଦେଇନାହୁଁ । ଇହଜୀବନର ଅଭିଜ୍ଞତା ଭିତରେ ହିଁ ଗୀତାର ଏତେ ସତ୍ୟ ଓ ମହିମାନ୍ୱିତ ଭାବରେ ବିରାଜିତ ଏବଂ ସେଥିରୁ ଗୋଟିଏ ଗୋଟିଏ ମାତ୍ର ଆମ ଜୀବନରେ ପୂର୍ଣ୍ଣ ପରିପାଳିତ ହେଲେ, ଆମର ଆତ୍ମାର ଊର୍ଦ୍ଧ୍ୱଗମନ ଓ ମୁକ୍ତି ଏପରି ସ୍ୱାଭାବିକ ଓ ଯୁକ୍ତିସିଦ୍ଧ ବୋଧ ହେଉଛି ଯେ ପାଠକ-ପାଠିକା, ଗୀତାର ପାରଲୌକିକ ସ୍ତରର ନେଇ ମସ୍ତିଷ୍କ-ଚାଳନା କରିବାର କୌଣସି ଆଧ୍ୟାତ୍ମିକ ଆବଶ୍ୟକତା ଅଛି ବୋଲି ମନେ ହେଉନି । ଏ ପ୍ରକାର ପାରଲୌକିକ ସୁଖର ପ୍ରତିଶ୍ରୁତି ଏବଂ ବିପରୀତରେ ଦୁଃଖ ବିଡ଼ମ୍ବନାର ସାବଧାନୀ ବାଣୀ କେବଳ ଗୀତା ବା ହିନ୍ଦୁ ଧର୍ମରେ ନୁହେଁ, ସବୁଧର୍ମର ପରିପ୍ରକାରର ଏକ ପ୍ରଧାନ ଅଂଶ । ଚିନ୍ତା-କରିବାରେ-ଅଶକ୍ତ ସାଧାରଣ ନର ଓ ନାରୀ ପକ୍ଷରେ ଆଧିଭୌତିକ ଓ ପାରଲୌକିକ ତତ୍ତ୍ୱ ବା ଅବସ୍ଥାମାନଙ୍କର ଅପ୍ରାମାଣ୍ୟତାହିଁ ସେଗୁଡ଼ିକୁ ସହଜରେ ଧରିନେବାର ଏକ ପ୍ରଧାନ ମାନସିକ କାରଣ । ବସ୍ତୁତଃ ଯେଉଁ ମାନସିକ ଦୁର୍ବଳତା ଯୋଗୁଁ ସବୁଦେଶ, ସମାଜ ଓ ଧର୍ମରେ ପଣ ପଣ ଅନ୍ଧବିଶ୍ୱାସ ଦୃଢ଼ପ୍ରତିଷ୍ଠ, ମନୁଷ୍ୟ ମଲାପରେ ସ୍ୱର୍ଗ ବା ନରକ ଭୋଗ; କବର ଭିତରେ ଚିର-ନିଦ୍ରା-ପରେ ସୃଷ୍ଟିର ଶେଷଦିନ ପରମେଶ୍ୱରଙ୍କର

କାହାକି ଶୁଣି ସମସ୍ତଙ୍କର ନିଦ୍ରାଭଙ୍ଗ ଓ ବିରକ୍ତ, ଅଥବା କୁକୁର-ଘୁଷୁରି ଭବରେ ଜନ୍ମ ହେବାର ପ୍ରଚ୍ଛର ସବୁକୁ ସହଜରେ ବିଶ୍ୱାସ କରିନେବା, କେବଳ ସେହି ଦୁର୍ବଳତାର ହିଁ ଚିହ୍ନ । କିନ୍ତୁ ମନେ ରଖିବାକୁ ହେବ ଯେ ଜରଥୁଷ୍ଟ୍ର, ବୁଦ୍ଧ ବା ଯୀଶୁ ଆମର ଏଇ ପାର୍ଥିବ ଜୀବନକୁ ହିଁ ସଭ୍ୟ, ଶୁଚି, ସୁନ୍ଦର ଓ ସମାହିତ କରି ଗଢ଼ିବାକୁ ଚେଷ୍ଟା କରିଥିଲେ । ଆମେ ଏଇ ଜୀବନରେ ହିଁ ଈଶ୍ୱର ବା ଦେବତା ହେବାକୁ ଚେଷ୍ଟା କରିବା ଏବଂ ତାହାହିଁ ସାମଗ୍ରିକ ଭବରେ ଗୀତାର ସଂଦେଶ । ତାହାହିଁ ଏହି ଅଧ୍ୟାୟରେ ବର୍ଣ୍ଣିତ ଦୈବୀ-ଓ-ଆସୁର-ସମ୍ପଦର ଭେଦାଭେଦତତ୍ତ୍ୱ । ଇହ ଜୀବନର ପ୍ରକୃଷ୍ଟ ଉପଦେଷ୍ଟା ଓ ନିର୍ଦ୍ଦେଶକ ଭବରେ ଅନେକ ଗୀତା-ଭକ୍ତ ଏହି ଅଧ୍ୟାୟଟିକୁ ପୁରା ମୁଖସ୍ଥ ରଖିଥିବାର ଓ ବୌଦ୍ଧମାନଙ୍କର ପଞ୍ଚଶୀଳ ପରି ପ୍ରତ୍ୟହ ପାରାୟଣ କରବାର ଲେଖକ ଜାଣେ । ଅଶାକରୁ ଯେ ଗୀତାର ବହୁ ନୂତନ ପାଠକ-ପାଠିକାଙ୍କ ଚିତ୍ତରେ ଏହି ଅଧ୍ୟାୟଟି ହୁଏତ ସେହିପ୍ରକାର ଗଭୀର ରେଖାପାତ କରିବ ।

ପାଠକ ପାଠିକା ତେଣୁ "ପୁଣ୍ୟହିଁ ପୁଣ୍ୟର ଶ୍ରେଷ୍ଠ ପୁରସ୍କାର" ବୋଲି ଧରିନେଇ ସେହି ଅନୁଯାୟୀ ଦୈନନ୍ଦନ ଜୀବନ-ଯାତ୍ରା କରିବେ ବୋଲି ଆଶା, ଅର୍ଥାତ୍ ଆଧ୍ୟାତ୍ମିକ ସାଧନା ଏକାନ୍ତରେ ମନସ୍ତାତ୍ତ୍ୱିକ । ଉତ୍ତମ ଗୁଣାବଳି (ଦୈବୀ) ଆମକୁ ଉଚ୍ଚ ନୈତିକ ସ୍ତରକୁ ଉଠାନ୍ତି । ମନ୍ଦଗୁଣାବଳି (ଆସୁରୀ) ଆମକୁ କ୍ରମେ ତଳକୁ ତଳକୁ ନେଇଯାନ୍ତି । ତାହାହିଁ "ଦୈବାସୁର-ସଂପଦ୍-ବିଭଗ-ଯୋଗ" । ଅନ୍ୟ କିଛି ନୁହେଁ ।

କିନ୍ତୁ ଏହି ଲେଖକର ବିଶ୍ୱାସ, ଏହି ଅଧ୍ୟାୟ ଓ ପରବର୍ତ୍ତୀ ଅଧ୍ୟାୟ ଗୁଡ଼ିକରେ ଅନ୍ତତଃ କେତୋଟି ଶ୍ଳୋକ ପ୍ରକ୍ଷିପ୍ତ, କାରଣ ସେଗୁଡ଼ିକରେ ଆମେ ଗୀତାର ସାମଗ୍ରିକ ଚିନ୍ତାଧାର ଓ ଆଦର୍ଶ ସହିତ ଅସାମଞ୍ଜସ୍ୟ କେବଳ ଦେଖିବାନି, ଆମେ ଦେଖିବା ମଧ୍ୟ ଯେ ସେ ସବୁ ପ୍ରକୃତରେ "ଆସୁରୀ" । ଯଥା ସ୍ଥାନରେ ତାର ଆଲୋଚନା ହେବ ।

ବର୍ତ୍ତମାନ ଅଧ୍ୟାୟ ଆରମ୍ଭ କରିବା ।

ଶ୍ରୀ ଭଗବାନୁବାଚ

( ୧—୩ )

ଅଭୟଂ ସତ୍ତ୍ୱ ସଂଶୁଦ୍ଧିର୍ଜ୍ଞାନ ଯୋଗ ବ୍ୟବସ୍ଥିତିଃ
ଦାନଂ ଦମଶ୍ଚ ଯଜ୍ଞଶ୍ଚ ସ୍ୱାଧ୍ୟାୟସ୍ତପ ଆର୍ଜ୍ଜବଂ । ୧ ।

ଅହିଂସା ସତ୍ୟମକ୍ରୋଧ ସ୍ତ୍ୟାଗଃ ଶାନ୍ତି ରପୈଶୁନଂ
ଦୟା ଭୂତେଷ୍ୱଲୋଲୁପ୍ତ୍ୱଂ ମାର୍ଦ୍ଦବଂ ହ୍ରୀରଚାପଳଂ । ୨ ।

ତେଜଃ କ୍ଷମା ଧୃତିଃ ଶୌଚ ମଦ୍ରୋହୋନାତି ମାନିତା
ଭବନ୍ତି ସଂପଦଂ ଦୈବୀ ମଭିଜାତସ୍ୟ ଭାରତ । ୩ ।

ଶ୍ରୀ ଭଗବାନ ଉବାଚ ଭଗବାନ ଶ୍ରୀକୃଷ୍ଣ କହିଲେ) ଅଭୟଂ (ଭୟଶୂନ୍ୟତା ସତ୍ତ୍ୱ-ସଂଶୁଦ୍ଧି (ବଞ୍ଚିବାର ନିର୍ମଳତା। ଜ୍ଞାନଯୋଗ ବ୍ୟବସ୍ଥିତି (ଆତ୍ମଜ୍ଞାନ ଅଭ୍ୟାସରେ ଅବଚଳିତ ନିଷ୍ଠା) ଦାନଂ (ଉପାର୍ଜିତ ପଦାର୍ଥର ଯଥା ସମ୍ଭବ ବଣ୍ଟନ) ଦମଃ (ବାହ୍ୟେନ୍ଦ୍ରିୟ ସଂଯମ) ଯଜ୍ଞଃ ଚ (ତ୍ୟାଗମୂଳକ କର୍ମାଦି) ସ୍ୱାଧ୍ୟାୟଃ ଶାସ୍ତ୍ରପାଠ) ତପଃ (କୃଚ୍ଛ୍ର ସାଧନା) ଆର୍ଜ୍ଜବଂ (ସରଳତା, ଅକପଟତା) ଅହିଂସା (ପରକୁ କଷ୍ଟ ନ ଦେବା) ସତ୍ୟ (ସତ୍ୟ, ଯାହା ଦେଖିବ ତାହା କହିବା ଗୁଣ) ଅକ୍ରୋଧଃ (କ୍ରୋଧହୀନତା) ତ୍ୟାଗଃ (କର୍ମ-ଫଳ-ଚିନ୍ତା-ନଥିବା ଶାନ୍ତିଃ (ମାନସିକ ସ୍ଥିରତା) ଅପୈଶୁନଂ (ପଛରେ ପରନିନ୍ଦା ନ କରିବା, ଭୂତେଷୁ ଦୟା (ଜୀବମାନଙ୍କ ପ୍ରତି ଦୟା) ଅଲୋଲୁପ୍ତ୍ୱଂ (ଲୋଭ-ଶୂନ୍ୟତା) ମାର୍ଦ୍ଦବଂ (ମୃଦୁତା, ଅକ୍ରୂରତା) ହ୍ରୀଃ (ମନ୍ଦ କର୍ମ ପାଇଁ ଲଜ୍ଜାନୁଭବ) ଅଚାପଳଂ (ବ୍ୟର୍ଥ କ୍ରିୟାରୁ ନିବୃତ୍ତି) ତେଜଃ (ତେଜସ୍ୱିତା) କ୍ଷମା (କ୍ଷମା) ଧୃତଃ (ଧୈର୍ଯ୍ୟ) ଶୌଚଂ (ବାହ୍ୟ ଓ ଅନ୍ତର ଶୁଦ୍ଧି) ଅଦ୍ରୋହଃ (ଈର୍ଷାମୂଳକ ପ୍ରତିରୋଧର ଅଭାବ) ନାତିମାନିତା (ଅନଭିମାନ, ମୁଁ-ପୂଜ୍ୟ-ଏହା-ମନେ-ନ କରିବା [ହେ] ଭାରତ (ଅର୍ଜୁନ) [ଏହି ସମସ୍ତ ଗୁଣ] ଦୈବୀ ସଂପଦ ମଭିଜାତସ୍ୟ (ଦୈବୀ ସଂପଦ ଧରି ଜାତ ହୋଇଥିବା ବ୍ୟକ୍ତିଙ୍କର) ଭବନ୍ତି (ହୋଇଥାନ୍ତି) ।

## ଅନୁବାଦ—

ଶ୍ରୀକୃଷ୍ଣ କହିଲେ, ହେ ଅର୍ଜ୍ଜୁନ, ପୁରୁଷୋତ୍ତମଙ୍କୁ ଜାଣିବା ଓ ପାଇବା ଦିଗରେ ଯେଉଁ ଗୁଣସବୁ ସହାୟକ ହୋଇଥାନ୍ତି ସେ ସବୁର ସାମୂହିକ ବିଶେଷଣ ହେଲା ଦୈବୀ । ଏହାର ବିରୋଧକାରୀ ଦୋଷ ସବୁର ସାମୂହିକ ସଂଜ୍ଞା ହେଲା ଆସୁରୀ। ହେ ଅର୍ଜୁନ, ଭୟହୀନତା, ହୃଦୟର ଶୁଦ୍ଧତା, ଜ୍ଞାନ-ଯୋଗରେ ଚିତ୍ତର ଦୃଢାବସ୍ଥିତି, ଦାନ, ଦମ ବା ଇନ୍ଦ୍ରିୟସଂଯମ, ଯଜ୍ଞାୟିତ କର୍ମ, ଧର୍ମଗ୍ରନ୍ଥମାନଙ୍କର ଅଧ୍ୟୟନ, ଅକପଟତା, ହିଂସା-ଶୂନ୍ୟତା, ସତ୍ୟ, ଅ-କ୍ରୋଧ, ତ୍ୟାଗ-ଭାବ, ଚିତ୍ତର ଅଚଞ୍ଚଳତା, ପଛରେ ପରନିନ୍ଦା-ନ କରିବା, ଜୀବେ-ଦୟା, ଲୋଭ-ଶୂନ୍ୟତା, ମୃଦୁ ସ୍ୱଭାବ, ମନ୍ଦ-କର୍ମ-ପାଇଁ-ଲଜ୍ଜାନୁଭବ,

ବ୍ୟର୍ଥ-କର୍ମ-କରିବାରୁ-ନିବୃତ୍ତି, ତେଜସ୍ୱୀ-ଭବ, ଅନ୍ୟର ଦୋଷ-ଦୁର୍ବଳତା ପ୍ରତି-କ୍ଷମା-ଭବ, ଦୁଃଖ-ଦୁର୍ବିପାକରେ-ଧୀରତା, ବାହ୍ୟ-ଓ-ଅନ୍ତର-ଶୁଦ୍ଧି, ଈର୍ଷାମୂଳକ-ପ୍ରତିରୋଧର ଅଭାବ, ଅନଭିମାନ ଅର୍ଥାତ୍ ମୁଁ-ସମ୍ମାନନୀୟ-ଏହା-ମନେ-ନ କରିବା; ଦୈବୀ ଚରିତ୍ର ସଂପଦ ଧରି ଜାତ ହୋଇଥିବା ଲୋକ-ଠାରେ ଏହିସବୁ ଗୁଣ ଲକ୍ଷିତ ହୋଇଥାଏ ।

**ବିଶେଷ ଭାଷ୍ୟ—**

ତ୍ରୟୋଦଶ ଅଧ୍ୟାୟ (କ୍ଷେତ୍ର କ୍ଷେତ୍ରଜ୍ଞ ଯୋଗ)ରେ ଶ୍ଳୋକ ୬ରୁ ୧୧ ପର୍ଯ୍ୟନ୍ତ 'ଜ୍ଞାନୀ' ଲୋକର ଯେଉଁ ଲକ୍ଷଣ ସବୁ ବର୍ଣ୍ଣିତ ହୋଇଛି ସେସବୁ ସହିତ, ପାଠକେ ଏହି ଅଧ୍ୟାୟର ଏହି ତିନୋଟି ଶ୍ଳୋକର ଗୁଣାବଳିକୁ ମିଳାଇ ଦେଖିଲେ ଗୀତାର ସର୍ବତ୍ର ମାନବିକ ଆଦର୍ଶ ଭିତରେ ଯେ ଏକ ଅପରିବର୍ତ୍ତିତ ସାମଞ୍ଜସ୍ୟ ବର୍ତ୍ତମାନ ତାହା ସହଜରେ ବୁଝିପାରିବେ । ତ୍ରୟୋଦଶ ଅଧ୍ୟାୟରେ କୁହା ହୋଇଥିଲା—

ଅମାନିତ୍ୱ ମଦମ୍ଭିତ୍ୱ ମହିଂସା କ୍ଷାନ୍ତି ମାର୍ଜବଂ
ଆଚାର୍ଯ୍ୟୋପାସନଂ ଶୌଚଂ ସ୍ଥୈର୍ଯ୍ୟମାତ୍ମବିନିଗ୍ରହଃ (୧୩।୭)

ଏଠାରେ କୁହାଗଲା—

ଅହିଂସା ସତ୍ୟମକ୍ରୋଧ ସ୍ତ୍ୟାଗ ଶାନ୍ତିରପୈଶୁନଂ
ଦୟା ଭୂତେଷ୍ୱଲୋଲୁପ୍ତ୍ୱଂ ମାର୍ଦ୍ଦବଂ ହ୍ରୀରଚାପଳଂ ।

ଅର୍ଥାତ ଗୀତାର ମାନବିକ ଆଦର୍ଶକୁ "ସ୍ଥିତଧୀ", 'ସ୍ଥିତପ୍ରଜ୍ଞ', 'ଜ୍ଞାନୀ' 'ଭକ୍ତ' 'କର୍ମଯୋଗୀ' ବା 'ଦୈବୀ'—ଯାହା କହ, ବସ୍ତୁତଃ ସେ ସମସ୍ତେ ଏକ । ଆପାତ-ଭିନ୍ନ-ପ୍ରତୀୟମାନ ଏହି ସମସ୍ତେ ହିଁ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ଗୁଣାବଳିର ଅଧିକାରୀ ହେବାର ଆଶା କରଯାଏ । ଏ ଅଧ୍ୟାୟରେ ଗୀତା ସେଗୁଡ଼ିକୁ 'ଦୈବୀ' କହିଛନ୍ତି । କାରଣ ସେ ସବୁ ସାଧାରଣ ମନୁଷ୍ୟକୁ (ପୁରୁଷକୁ) 'ପୁରୁଷୋତ୍ତମତ୍ୱ' ଆଡ଼କୁ, ବ୍ୟର୍ଥତାରୁ 'କୃତକୃତ୍ୟତା' ଆଡ଼କୁ, 'ନରତ୍ୱ'ରୁ 'ଦେବତ୍ୱ' ଆଡ଼କୁ ନେଇଯିବାର ଆଶା କରଯାଏ ।

ଗୀତାର ଏହି ଦୈବୀ ଗୁଣମାନଙ୍କ ଭିତରେ ପାଠକେ ପ୍ରଥମେ ଲକ୍ଷ୍ୟ କରନ୍ତୁ ଯେ, ଗୀତା କିପରି ଅ-ଭୟ (ନିର୍ଭୀକତା, ବୀରତ୍ୱ)କୁ ପ୍ରଥମ ସ୍ଥାନ ଦେଇଛନ୍ତି ।

ଆମେ ଏକ ଅତ୍ୟନ୍ତ ଭ୍ରାନ୍ତ ଧାରଣା ପୋଷିଥାଉଁ ଯେ, ଧର୍ମଜୀବନ ମାନେ, ଏକ ନିରୀହ, ଭୟାଳୁ, ନିଷ୍କର୍ମା ଓ ପଳାୟନ ପରଜୀବନ । କିନ୍ତୁ ଗୀତାର

କୌଣସି ଠାରେ ହେଲେ ଏହି ଘୋର ଭ୍ରାନ୍ତ, ଅହିଂସାତ୍ମକ ଓ ଅମାନବିକ ଆଦର୍ଶ ସାମାନ୍ୟ ଭାବରେ ମଧ୍ୟ ସୂଚିତ ହୋଇ ନାହିଁ । ଗୀତାର ଆଦର୍ଶ-ମନୁଷ୍ୟ କୌଣସି ଠାରେ ହେଲେ ପାପ ଓ ଅତ୍ୟାଚାରକୁ, ଅପୌରୁଷିକ, ଅମାନବିକ ଆଚରଣକୁ ମୁଣ୍ଡ ନୁଆଁଇବାର ବା ସେ ସବୁକୁ ଡରି ପଳାଇବାର ସାମାନ୍ୟତମ ବ୍ୟଂଜନା ନାହିଁ । ଗୀତାର ଆଦର୍ଶ ଚିର-ଅଗ୍ରଗ, ଊର୍ଦ୍ଧ୍ୱଗ,ଚିର-ସଂଗ୍ରାମୀ ଓ ଚିର-କର୍ମଠ । ଏହି ଦୈବୀ ଗୁଣାବଳିରେ ତେଣୁ ପାଠକେ ପ୍ରଥମ ଶ୍ଲୋକର ଆଦ୍ୟରେ ଅ-ଭୟ ପାଥିକି; ତୃତୀୟ ଶ୍ଲୋକର 'ତେଜ'କୁ ମଧ୍ୟ ସ୍ମରଣ ରଖିବେ । ଗୀତାର ଆଦର୍ଶ ମାନବ କ୍ଷମାବନ୍ତ ହେବେ, କିନ୍ତୁ ତାହା କେବେ ହେଲେ ହେବ ନାହିଁ, ଦୁର୍ବଳତାର ସୂଚକ । ତାହା ହେବ କେବଳ ତେଜସ୍ୱୀର, ବା ଶକ୍ତିମନ୍ତର ବା ଭୟହୀନରହିଁ କ୍ଷମା ।

ଏହି ଦୈବୀ ଗୁଣାବଳି ଭିତରେ 'ଯଜ୍ଞ' ମଧ୍ୟ ଏକ ଗୁଣ ଅଛି ଏବଂ ଗୀତାର ହିନ୍ଦୁ ଟୀକାକାରମାନେ ତାକୁ ବୈଦିକ ହୋମଯାଗ ପ୍ରଭୃତି ଅର୍ଥରେହିଁ ନେଇଛନ୍ତି , କିନ୍ତୁ ଯାଗ-ଯଜ୍ଞ ଗୃହସ୍ଥର ଆର୍ଥିକ ଶକ୍ତି ଉପରେ ନିର୍ଭର କରେ । ତେଣୁ ତାହା ଏକ 'ସାର୍ବଜନୀନ' ଗୁଣ ହୋଇ ନପାରେ । ପୁଣି, କେବଳ ବ୍ରାହ୍ମଣମାନେ ହିଁ ଯାଗ-ଯଜ୍ଞ କରିପାରିବାର କଥା । କିନ୍ତୁ ଗୀତା, କୌଣସି ବ୍ୟବସାୟୀ ପୁରୋହିତ ସଂପ୍ରଦାୟ ପାଇଁ ଲେଖାଯାଇ ନଥିଲା । ଏହାର ବାଣୀ ବାସ୍ତବିକ ସାର୍ବଜନୀନ । ଗୀତାର ପ୍ରକୃତ ବାଣୀ କେବଳ ତାହାହିଁ ହେବ, ଯାହାକି ସବୁ ଲୋକେ ଅନାୟାସରେ ଅଭ୍ୟାସ କରିପାରିବେ ।

ଅଧିକନ୍ତୁ ଏହା ଦ୍ୱିତୀୟ ଅଧ୍ୟାୟରୁହିଁ ସୁପ୍ରମାଣିତ ହୋଇ ସାରିଛି ଯେ, ଗୀତା ବୈଦିକ ଯଜ୍ଞର ଘୋର ବିରୋଧୀ । ଏହି ଗ୍ରନ୍ଥର ଚତୁର୍ଥ ଅଧ୍ୟାୟରେ ଗୀତା ପୁଣି ଯଜ୍ଞ ଶବ୍ଦର କି ବିପ୍ଳବାତ୍ମକ ନୂତନ ବ୍ୟାଖ୍ୟା ଦେଇଲେ ଏବଂ ଆଧ୍ୟାତ୍ମିକ ସାଧନାରେ ତାର କି ପ୍ରକାର ଉପଯୋଗିତା ସେ ସବୁ ବିସ୍ତୃତ ଭାବରେ ଆଲୋଚିତ ହୋଇ ପାରିଛି । ପାଠକେ ସେହି ଅର୍ଥରେହିଁ ଏଠାରେ ଥିବା ଯଜ୍ଞ ନାମକ ଦୈବୀ ଗୁଣକୁ ଗ୍ରହଣ କରିବେ ବୋଲି ଅନୁରୋଧ ।

ଶେଷରେ ପାଠକେ ଲକ୍ଷ୍ୟ କରିବେ ଯେ, ଏକ ରଣ-ପ୍ରାଙ୍ଗଣରେ କଥିତ ହେଉଥିଲେ ମଧ୍ୟ ଏବଂ ସମଗ୍ର ଗୀତା ଜଣକୁ ହିଂସାତ୍ମକ କର୍ମରେ ପ୍ରୋତ୍ସାହିତ କରୁଥିଲେ ହେଁ, ଗୀତାର ଆଦର୍ଶ ମାନବର ଗୁଣାବଳି ଭିତରେ ବରାବର 'ଅହିଂସା ଅ-କ୍ରୋଧ' 'ଅପୈଶୁନଂ' ଓ 'ଭୂତେଷୁ ଦୟା' ଇତ୍ୟାଦିର ଅବସ୍ଥାନ, ମନ-

ସନ୍ଦେହରେ ଗୀତା ଉପରେ ଗଭୀର ବୌଦ୍ଧ ପ୍ରଭାବର ହିଁ ସୂଚନା କରୁଛି ।
ବର୍ତ୍ତମାନ ମନୁଷ୍ୟର ଆସୁରୀ ପ୍ରକୃତିର ଆଲୋଚନା ହେବ ।

( ୪ )

ଦମ୍ଭୋ ଦର୍ପୋଽଭିମାନଶ୍ଚ କ୍ରୋଧଃ ପାରୁଷ୍ୟମେବ ଚ
ଅଜ୍ଞାନଂ ଚାଭିଜାତସ୍ୟ ପାର୍ଥ ସଂପଦ ମାସୁରୀଂ । ୪ ।

[ହେ] ପାର୍ଥ (ଅର୍ଜୁନ) ଦମ୍ଭଃ (ଗର୍ବ) ଦର୍ପ (ଧନ ଓ ବିଦ୍ୟା ନେଇ ଚିତ୍ତରେ ଉନ୍ମାଦ) ଅଭିମାନଃ ଚ (ଏବଂ ଅଭିମାନ) କ୍ରୋଧଃ (କ୍ରୋଧ) ପାରୁଷ୍ୟଂ (ନିଷ୍ଠୁରତା) ଅଜ୍ଞାନଂ ଚ ଏବ ଏବଂ ଅବିବେକିତା) ଆସୁରୀ-ସଂପଦ ମଭିଜାତସ୍ୟ (ଆସୁରୀ ଗୁଣ ଘେନ ଜାତ ଲୋକର) [ହୋଇଥାନ୍ତି] ।

**ଅନୁବାଦ—**

ହେ ଅର୍ଜୁନ, ଗର୍ବ, ନଜର ଧନ-ଓ-ବିଦ୍ୟାନେଇ ଚୈତ୍ତିକ ଉନ୍ମାଦ ଓ ଅଭିମାନ, କ୍ରୋଧ, ମାନସିକ ନିଷ୍ଠୁରତା ଏବଂ ଅବିବେକତା ଇତ୍ୟାଦି ଆସୁରିକ ଲୋକର ଲକ୍ଷଣ ।

( ୫ )

ଦୈବୀ ସମ୍ପଦ୍ ବିମୋକ୍ଷାୟ ନିବନ୍ଧାୟାସୁରୀମତା
ମା ଶୁଚଃ ସମ୍ପଦଂ ଦୈବୀ ମଭିଜାତୋଽସି ପାଣ୍ଡବ । ୫ ।

[ହେ] ପାଣ୍ଡବ (ଅର୍ଜୁନ) ଦୈବୀ ସମ୍ପଦ ବିମୋକ୍ଷାୟ (ଦୈବୀ ଗୁଣ ସବୁ ମୋକ୍ଷଦାୟକ) ଆସୁରୀ ସଂପଦ ନିବନ୍ଧାୟ ମତା (ଆସୁରୀ ଗୁଣସବୁ ସାଂସାରିକ ବନ୍ଧନହିଁ ଦେଇଥାନ୍ତି) । [କିନ୍ତୁ ବ୍ୟକ୍ତିଗତ ଭାବରେ ତୁମେ] ମା ଶୁଚଃ (ଭାବନା କରନାହିଁ) । [କାରଣ] ଦୈବୀ ସମ୍ପଦଂ ଅଭିଜାତଃ ଅସି (ତୁମେ ଦୈବୀ ସମ୍ପଦର ଅଧିକାରୀ ହୋଇ ଜନ୍ମଲାଭ କରିଛ) ।

**ଅନୁବାଦ—**

ହେ ଅର୍ଜୁନ, ଦୈବୀ ଗୁଣାବଳି ମନୁଷ୍ୟର ମୋକ୍ଷଦାୟକ ଏବଂ ଆସୁରୀ ଗୁଣାବଳି ମନୁଷ୍ୟର ବନ୍ଧନର କାରଣ ବୋଲି ଜାଣିବ । ବ୍ୟକ୍ତିଗତ ଭାବରେ, ହେ ଅର୍ଜୁନ, ତୁମର କିଛି ଚିନ୍ତିତ ହେବାର ନାହିଁ । କାରଣ ମୋ ଠାରୁ ଜାଣିରଖ ଯେ, ତୁମେ ଦୈବୀ ସଂପଦ ନେଇ ଜାତ ହୋଇଛ ।

**ବିଶେଷ ଭାଷ୍ୟ—**

ଏଠାରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଆଶ୍ୱାସନା ଦେଲେ ଯେ, ତାଙ୍କର ଚିନ୍ତା କରିବାର କିଛି ନାହିଁ, କାରଣ ସେ ଦୈବୀଗୁଣସଂପନ୍ନ ହୋଇ ଜନ୍ମ ହୋଇଛନ୍ତି ।

କିନ୍ତୁ ପାଠକେ ଧରିନେବେ ଯେ, ଗୀତାରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଲକ୍ଷ୍ୟକରି ଯାହା ଯାହା କହିଛନ୍ତି ତାହା ଗୀତାର ପ୍ରତ୍ୟେକ ପାଠକ ପ୍ରତି ମଧ୍ୟ ପ୍ରଯୁଜ୍ୟ ହେବା ଉଚିତ । ନଚେତ ଏହି ମହାଗ୍ରନ୍ଥ ତାର ସାର୍ବଜନୀନତା ହରାଇ ବସିବ । ଅର୍ଜ୍ଜୁନ ଜିଜ୍ଞାସୁ ମାନବର ପ୍ରତୀକ ମାତ୍ର । ତେଣୁ ଯେ କେହି ପାଠକ, ଯେ କି ନିଜର ଆତ୍ମିକ ଉନ୍ନତି ପାଇଁ ବା ନିଜର ସତ୍ତ୍ୱ-ସଂଶୁଦ୍ଧି ପାଇଁ ବା ନିଜର 'ବିମୋକ୍ଷ' ପାଇଁ 'ପୁରୁଷୋତ୍ତମତ୍ୱ' ପାଇଁ ଏହି ଗୀତା-ପାଠ (ସ୍ୱାଧ୍ୟାୟ କରୁଥିବେ ଓ କରି ସେହି ଅନୁଯାୟୀ ତପ-ଯଜ୍ଞ (ଆତ୍ମିକ, ମାନସିକ ଓ କାୟିକ ସାଧନା) ଆଡ଼କୁ କେବଳ ମନ ବଳାଉଥିବେ ସେ ଯେ ଦୈବୀ ସମ୍ପଦ ଅଧିକାରୀ ହୋଇ ଜନ୍ମ ହୋଇଛନ୍ତି ଏହା ନିଶ୍ଚିତ ଭାବରେ ଜାଣି ରଖନ୍ତୁ । ତାଙ୍କୁ ମଧ୍ୟ ଗୀତାଙ୍କର ବାଣୀ 'ମାଶୁଚଃ' (ଚିନ୍ତା କରନାହିଁ)-ଏକାନ୍ତ ପ୍ରଯୁଜ୍ୟ । ଆଧ୍ୟାତ୍ମିକ ସାଧନାରେ ମଧ୍ୟ ମୁଖ୍ୟ କଥା ହେଲା, ଜିଜ୍ଞାସା ଓ ଦେବତ୍ୱ-ଆଡ଼କୁ-ଉଠିବାର ନିରବଚ୍ଛିନ୍ନ ଅଭିଳାଷ । ସେହିହିଁ ପ୍ରକୃତ ଯଥାଯଥ ଦୈବୀ ସଂପଦ । ବ୍ୟକ୍ତିର ଭିତରେ ସେହି ଜିଜ୍ଞାସା ଓ ସେହି ଅଭିଳାଷଟି ମାତ୍ର ଥିଲେହିଁ ଅନୁରୂପ ଗୁଣାବଳି ସ୍ୱାଭାବିକ ଭାବରେ ଫୁଟି ବାହାରିବ ।

ଶ୍ରୀ ଅରବିନ୍ଦ ଯଥାର୍ଥରେ କହିଛନ୍ତି—"ଯେ ଈଶ୍ୱରଙ୍କୁ ଗ୍ରହଣ କରନ୍ତି, ଜାଣିରଖ ଯେ ସେ ଈଶ୍ୱରଙ୍କ ଦ୍ୱାରା ଗୃହୀତ ହୋଇ ସାରିଲେଣି ।"

( ୬ )

ଦ୍ୱୌ ଭୂତସର୍ଗୌ ଲୋକେଽସ୍ମିନ ଦୈବ ଆସୁର ଏବ ଚ
ଦୈବୋ ବିସ୍ତରଶଃ ପ୍ରୋକ୍ତ ଆସୁରଂ ପାର୍ଥ ମେଶୃଣୁ । ୬ ।

[ହେ] ପାର୍ଥ ଅର୍ଜ୍ଜୁନ' ଅସ୍ମିନ ଲୋକେ (ଏ ସଂସାରରେ) ଦୈବଃ ଆସୁରଃ ଏବ ଚ (ଦୈବ ଓ ଆସୁର ବୋଲି) ଦ୍ୱୌ ଭୂତସର୍ଗୌ (ଦୁଇ ଶ୍ରେଣୀର ଜୀବ) [ବରବର ଅଛନ୍ତି] । ଦୈବଃ ବିସ୍ତରଶଃ ପ୍ରୋକ୍ତଃ (ଦୈବ ଶ୍ରେଣୀ କଥା ତ ବିସ୍ତୃତ ଭାବରେ କୁହାଗଲା) । ଆସୁରଂ ମେ ଶୃଣୁ (ଆସୁର ଶ୍ରେଣୀ କଥା ମୋଠୁ ବର୍ତ୍ତମାନ ଶୁଣ) ।

ଅନୁବାଦ—

ହେ ଅର୍ଜ୍ଜୁନ; ଏ ଜଗତରେ ବରାବର ଦୈବ ଓ ଆସୁର ଏପରି ଦୁଇଟି ଶ୍ରେଣୀର ନର-ନାରୀ ଥିବାର ଆମେ ଦେଖିବାକୁ ପାଇବା । ଦୈବ ଶ୍ରେଣୀର କଥା ତ, ବିସ୍ତୃତ ଭବରେ କୁହାଗଲା, ବର୍ତ୍ତମାନ ଆସୁର ଶ୍ରେଣୀର ଲକ୍ଷଣ ସମ୍ପର୍କରେ ଅଧିକା କହୁଛି ଶୁଣ ।

( ୭ )

ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ ଜନାନ ବିଦୁରାସୁରାଃ
ନ ଶୌଚଂ ନାପିଚାଚାରୋ ନ ସତ୍ୟଂତେଷୁ ବିଦ୍ୟତେ । ୭ ।

ଆସୁରାଃ ଜନାଃ (ଅସୁର ପ୍ରକୃତର ଲୋକେ) ପ୍ରବୃତ୍ତିଂ ଚ ନ ବିଦୁଃ -ପୁଣ୍ୟକର୍ମ ପ୍ରତି ଉତ୍ସାହ ବା ପାପକର୍ମ ପ୍ରତି ଅନୁତ୍ସାହ କଣ ଜାଣନ୍ତ ନାହିଁ) । [ଏବଂ ଏହି ଜନ୍ମଗତ ଦୋଷ ହେତୁରୁ] ତେଷୁ (ସେମାନଙ୍କ ଠାରେ) ନ ଶୌଚଂ ନ ଚ ଆଚାରଃ, ନ ଅପି ସତ୍ୟଂ ବିଦ୍ୟତେ (ସତ୍ତ୍ୱ ଶୁଦ୍ଧି, ସଭ୍ୟ-ଭଦ୍ର-ଆଚାର ଏବଂ ଏପରକି ସତ କଥା କହିବାର ଅଭ୍ୟାସ ମଧ୍ୟ ଦେଖିବାକୁ ମିଳି ନ ଥାଏ) ।

ହେ ଅର୍ଜ୍ଜୁନ, ସାଧାରଣତଃ ଆସୁରୀ ଗୁଣବିଶିଷ୍ଟ ଲୋକମାନଙ୍କ ଅଭିଜ୍ଞତାରେ ପୁଣ୍ୟକର୍ମ ପ୍ରତି ଉତ୍ସାହ ବା ପାପକର୍ମ ପ୍ରତି ଅନୁତ୍ସାହ ତୁମେ ଦେଖିବାକୁ ପାଇବ ନାହିଁ । ଏବଂ ଏହି ପ୍ରକାର ଜନ୍ମଗତ ଚାରିତ୍ରିକ ଆଭିମୁଖ୍ୟ ଫଳରେ ସେମାନଙ୍କ ଠାରେ ବାହ୍ୟାଭ୍ୟନ୍ତର ପବିତ୍ରତା, ସଭ୍ୟ-ସୁଶୀଳ- ଆଚାର-ବ୍ୟବହାର ଏବଂ ଏପରିକି ସତ୍ୟର ଅଭ୍ୟାସ ମଧ୍ୟ ଦେଖିବ ନାହିଁ ।

( ୮ )

ଅସତ୍ୟମପ୍ରତିଷ୍ଠଂ ତେ ଜଗଦାହୁରନୀଶ୍ୱରଂ
ଅପରସ୍ପର ସଂଭୂତଂ କିମନ୍ୟତ୍ କାମ ହୈତୁକଂ । ୮ ।

ତେ (ସେମାନେ) ଜଗତ୍ ଅସତ୍ୟଂ (ଏ ଜଗତଟା ମିଥ୍ୟା ବା ଅର୍ଥହୀନ) ଅପ୍ରତିଷ୍ଠଂ (ଏହାର କୌଣସି ନୈତିକ ମୂଳପତ୍ତନ ନାହିଁ) ଅନୀଶ୍ୱରଂ (ଏଠି ଈଶ୍ୱର ବୋଲି କୌଣସି ବ୍ୟକ୍ତି ନାହାନ୍ତି) କାମ ହୈତୁକଂ ଅପରସ୍ପର ସଂଭୂତଂ (ଏହା କ୍ରମିକତା ବା କୌଣସି ନୟମତନ୍ତ୍ରତାହୀନ ଏବଂ କେବଳ ସ୍ତ୍ରୀ-ପୁଂସର

କାମନାରୁହିଁ ଜାତ) କିଂ ଅନ୍ୟତ୍ (ଏହାର ଅବସ୍ଥିତି ପାଇଁ ଅନ୍ୟ କୌଣସି ମହତ୍ତ୍ୱର କାରଣ ବା ତାତ୍ପର୍ଯ୍ୟ ନାହିଁ) [ଏହିପରି ଏହିପରି] ଆହୁଃ (କହିଥାନ୍ତି) ।

## ଅନୁବାଦ —

ହେ ଅର୍ଜୁନ, ଏ ଶ୍ରେଣୀର ଲୋକେ ଇହଜୀବନକୁ ସତ୍ୟ-ହୀନ ଓ ଅର୍ଥହୀନ ମନେ କରିଥାନ୍ତି; ମନେ କରିଥାନ୍ତି, ପୁଣି ଯେ, ଏହାର କୌଣସି ନୈତିକ ମୂଳପତ୍ତନ ନାହିଁ, ଏଠି ଈଶ୍ୱର ବୋଲି କୌଣସି ନିୟାମକ ଏକ ବ୍ୟକ୍ତିତ୍ୱର କଳ୍ପନା ଅଯଥାର୍ଥ, ଏ ସୃଷ୍ଟିରେ କୌଣସି ପ୍ରକାର କାର୍ଯ୍ୟ-କାରଣ-ଶୃଙ୍ଖଳା ବା ନୟମତନ୍ତ୍ରତା ନାହିଁ ଏବଂ ଯଦି କିଛି ବା ଥାଏ ତେବେ ତାହା କେବଳ ସ୍ତ୍ରୀ-ପୁରୁଷ ଯୌନ-ସଂଯୋଗ ଛଡ଼ା ଅନ୍ୟ କିଛି ନୁହେଁ ।

## ବିଶେଷ ଭାଷ୍ୟ—

ଗୀତା ଲେଖାହେବା କାଳରେ ଓ ତାର ବହୁ ପୂର୍ବରୁ ଭାରତବର୍ଷରେ 'ଆସ୍ତିକ' ଓ 'ନାସ୍ତିକ' ମାନଙ୍କର ଚିନ୍ତାର ସଂଘର୍ଷ ବରାବର ଲାଗି ରହିଥିଲା, ଯାହାକି ସେ କାଳରେ ଭାରତୀୟ ଜନ-ମାନସ କିପରି ମୁକ୍ତ, ନିର୍ଭୀକ ଚିନ୍ତା ପାଇଁ ପ୍ରସ୍ତୁତ ଥିଲା, ତାହାରହିଁ ଏକ ମନୋଜ୍ଞ ପ୍ରମାଣ । ସାଂଖ୍ୟ, ବୌଦ୍ଧ ଓ ଚାର୍ବାକୀମାନେ କୌଣସି ଆତ୍ମା ବା ପରମାତ୍ମା ବା ଈଶ୍ୱରର ଅସ୍ତିତ୍ୱ ମାନୁ ନ ଥିଲେ । ଏମାନେ ତେଣୁ ହେଲେ ନାସ୍ତିକ । ଏମାନଙ୍କ ବିପରୀତରେ ବେଦାନ୍ତ ହେଲା ଆତ୍ମା ଓ ଈଶ୍ୱରର ପ୍ରବର୍ତ୍ତକ ; ଅର୍ଥାତ୍ ଆସ୍ତିକତାର ପ୍ରତୀକ । ଗୀତା, ବେଦାନ୍ତ ପ୍ରବର୍ତ୍ତକ ଗ୍ରନ୍ଥ । ସେହି କାରଣରୁ ଗୀତାରେ ଆତ୍ମା ଓ ଏକ ବ୍ୟକ୍ତିଗତ ଈଶ୍ୱର ଉପରେ ପ୍ରାୟ ପ୍ରତି ଅଧ୍ୟାୟରେ ଏତେ ଜୋରରେ ବାରମ୍ବାର ବକ୍ତୃତା ଚାଲିଛି,—ଖୁବ ସମ୍ଭବତଃ ସେତେବେଳର ସାରା ଭାରତରେ ପରିବ୍ୟାପ୍ତ ବୌଦ୍ଧ ନୈରାତ୍ମ୍ୟ ଓ ନିରୀଶ୍ୱରତାକୁ ଲକ୍ଷ୍ୟ କରି । ବୌଦ୍ଧମାନେ କେବଳ ପାଞ୍ଚଟି ଜଡ଼ ଓ ଚେତନର 'ଖଣ୍ଡ' (ସ୍କନ୍ଧ)ର (ରୂପ, ବେଦନା, ସଂଜ୍ଞା, ସଂସ୍କାର, ବିଜ୍ଞାନ)ର ମିଳନ-ମିଶ୍ରଣରେହିଁ ପ୍ରତ୍ୟେକ ଜୀବ ଓ ବସ୍ତୁ ନିର୍ମିତ ବୋଲି ବିଶ୍ୱାସ କରନ୍ତି । ସେମାନେ ଏ ସୃଷ୍ଟି କୌଣସି ସ୍ରଷ୍ଟା (ଈଶ୍ୱର)ର ଚାଳନାରେ ପରିଚାଳିତ ନ ହୋଇ "ପ୍ରତୀତ୍ୟ ସମୁତ୍ପାଦ" ନାମକ ଏକ ବିଶ୍ୱବ୍ୟାପ୍ତ ବୈଜ୍ଞାନିକ ନିୟମ ଦ୍ୱାରହିଁ ପ୍ରବହମାନ ରହିଛି ବୋଲି ବିଶ୍ୱାସ କରନ୍ତି । ପରେ ମହାଯାନ ଦର୍ଶନର 'ଶୂନ୍ୟତା'କୁ କଟାକ୍ଷ କରି ହୁଏତ ଏଠାରେ ସେମାନେ ଏ ଜଗତକୁ 'ଅସତ୍ୟ' ଓ 'ଅପ୍ରତିଷ୍ଠ' କହିଥାନ୍ତି ବୋଲି କୁହାଯାଉଛି ।

କିନ୍ତୁ ପରବର୍ତ୍ତୀ ଶ୍ଳୋକରେ ଏଇ ପ୍ରକାର 'ନିରୀଶ୍ୱର' ମତବାଦକୁ ଯେଉଁ ଭୟାବହ ପରିଣାମ ସବୁ ଉଦ୍ଭୂତ ହୁଏ ବୋଲି କୁହାଯାଇଥାଏ , ଅନ୍ତତଃ ନିରୀଶ୍ୱର ଓ ନୈରାତ୍ମ୍ୟବାଦୀ ଓ ଶୂନ୍ୟବାଦୀ ବୌଦ୍ଧମାନଙ୍କ ପ୍ରତି ତାହା କୁହାଯାଇ ନ ପାରେ । ତାହା ଏହି—

( ୯ )

ଏତାଂ ଦୃଷ୍ଟିମବଷ୍ଟଭ୍ୟ ନଷ୍ଟାତ୍ମାନୋଽଲ୍ପ ବୁଦ୍ଧୟଃ
ପ୍ରଭବନ୍ତ୍ୟୁ ଗ୍ରକର୍ମାଣଃ କ୍ଷୟାୟ ଜଗତୋଽହିତାଃ । ୯ ।

ଏତାଂ ଦୃଷ୍ଟିଂ ଅବଷ୍ଟଭ୍ୟ (ଏ ପ୍ରକାର ଦୃଷ୍ଟିକୋଣରେ ଆଶ୍ରୟ ନେଇ [ସେହି ନିରୀଶ୍ୱରବାଦୀଗଣ] ନଷ୍ଟାତ୍ମନଃ (ନଷ୍ଟାତ୍ମ) [ଓ] ଅଳ୍ପବୁଦ୍ଧୟଃ (ଅଳ୍ପ ବିଚାରଶୀଳ) [ହେବା ଯୋଗେ] ଉଗ୍ରକର୍ମାଣଃ (କ୍ରୁରକର୍ମା) [ଓ] ଅହିତାଃ (ଅମଙ୍ଗଳକାରୀ ହୋଇ) ଜଗତଃ କ୍ଷୟାୟ ଭବନ୍ତି (ସଂସାରର ବିନାଶ ପାଇଁ ଦାୟୀ ହୁଅନ୍ତି) ।

## ଅନୁବାଦ—

ହେ ଅର୍ଜୁନ, ଏ ପ୍ରକାର ଦୃଷ୍ଟିକୋଣକୁ ଆଶ୍ରୟ କରି ଏହି ନିରୀଶ୍ୱର-ବାଦୀ ଆସୁରିକ ବୁଦ୍ଧିଯୁକ୍ତ ନରଗଣ ନିଜର ଆତ୍ମାକୁ ହରାଇ ଓ ନୀଚ-ବିଚାର ଦ୍ୱାରା ପରିଚାଳିତ ହୋଇ ସାଧାରଣତଃ ନିଷ୍ଠୁରକର୍ମା ଓ ସମାଜର ଅହିତକାରକ ହୋଇ ଉଠନ୍ତି ଏବଂ ସେହି ଭଳିରେ ନିଜର ଓ ସଂସାରର ଧ୍ୱଂସକୁ ଡାକି ଆଣିଥାନ୍ତି ।

## ବିଶେଷ ଭାଷ୍ୟ—

ନିରୀଶ୍ୱରତା ଓ ନୈରାତ୍ମ୍ୟର ପ୍ରଚାରକ ହୋଇଥିଲେହେଁ ଗୌତମ ବୁଦ୍ଧ ସମଗ୍ର ମାନବେତିହାସରେ ମୈତ୍ରୀ, କରୁଣା ଓ ଅହିଂସା ପ୍ରଭୃତି ଶ୍ରେଷ୍ଠ ମାନବିକ ଗୁଣାବଳି ଦେଇ ସଭ୍ୟ-ସୁନ୍ଦର ଜୀବନର ଶ୍ରେଷ୍ଠ ପ୍ରଚାରକ ଅବତାର ରୂପେ ପରିଚିତ । ବୌଦ୍ଧଧର୍ମ ହେଉଛି ଏକମାତ୍ର ଧର୍ମ, ଯାହାର ପ୍ରଚାର ପାଇଁ ଏକ ବିନ୍ଦୁ ମାନବିକ ଅଶ୍ରୁ ବା ରକ୍ତ କୌଣସି ମାଟିକୁ କଳଙ୍କିତ କରି ନାହିଁ । ଅଧିକନ୍ତୁ ବ୍ରାହ୍ମଣ୍ୟ, ଖ୍ରୀଷ୍ଟାନ ଓ ମୁସଲମାନ ପ୍ରଭୃତି ତଥାକଥିତ ଈଶ୍ୱରବାଦୀ ଧର୍ମସବୁ, ଧର୍ମ ନାମରେ ଓ ଈଶ୍ୱର ନାମରେ ଜୀବ ଓ ମନୁଷ୍ୟ ପ୍ରତି ଅକଳ୍ପନୀୟ ଓ ହୃଦୟବିଦାରକ କ୍ରୂରତା ଆଚରଣ କରି ଆସିଛନ୍ତି । 'ଈଶ୍ୱର' ନାଁରେ

ମାନବେତିହାସର ଯେତେ ପୃଷ୍ଠା ମନୁଷ୍ୟ ଅଶ୍ରୁ ଓ ରକ୍ତଦ୍ୱାରା ଆର୍ଦ୍ର ଓ ରଞ୍ଜିତ, ତାହାର ଏକ-ତୃତୀୟାଂଶ ମଧ୍ୟ ଅନ୍ୟାନ୍ୟ କାରଣରୁ ଘଟିଥିବ କି ନା ସନ୍ଦେହ ।

ତେଣୁ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କରିବା ବା ନ କରିବା, ବା ଏ ସୃଷ୍ଟି କପଟ ହୋଇଛି, ସେ ସଂପର୍କରେ ଭିନ୍ନ ଭିନ୍ନ ମତ ପୋଷଣ କରିବା ହେତୁ ଆପେ ଆପେ କୌଣସି 'ଦୈବୀତ୍ୱ' ବା 'ଆସୁରୀତ୍ୱ' ଆସିଯିବ ବୋଲି ଭାବିବା ଯୁକ୍ତିଯୁକ୍ତ ନୁହେଁ । କେବଳ ଆମର ମାନସିକ ଚେତନାର ପ୍ରକାର ଓ ଆଭିମୁଖ୍ୟହିଁ ସେ ପ୍ରକାର ସଂସ୍କାର କାରଣ ହୋଇ ପାରିବେ; ଯାହାକି ପରବର୍ତ୍ତୀ କେତୋଟି ଶ୍ଳୋକରେ ମନୋଜ୍ଞ ରୀତିରେ ବର୍ଣ୍ଣିତ ।

( ୧୦ )

କାମମାଶ୍ରିତ୍ୟ ଦୁଷ୍ପୂରଂ ଦମ୍ଭମାନ ମଦାନ୍ୱିତା
ମୋହାଦ୍ ଗୃହୀତ୍ୱାଽସଦ୍ ଗ୍ରାହାନ୍ ପ୍ରବର୍ତ୍ତନ୍ତେଽଶୁଚିବ୍ରତାଃ । ୧୦ ।

[ଏମାନେ] ଦୁଷ୍ପୂରଂ କାମଂ ଆଶ୍ରିତ୍ୟ (ଦୁଷ୍ପୂରଣୀୟ ଅଭିଳାଷ ସବୁକୁ ଚିତ୍ତରେ ଆଶ୍ରୟ ଦେଇ) ଦମ୍ଭମାନ ମଦାନ୍ୱିତାଃ (ଦମ୍ଭ, ମାନ ଓ ଗର୍ବରେ ମତ୍ତ ହୋଇ) ମୋହାତ୍ ଅସଦ୍ ଗ୍ରାହାନ୍ ଗୃହୀତ୍ୱା (ଏବଂ ସେହି ମୋହ ବଶତଃ ଅନିଷ୍ଟକାରୀ କଳ୍ପନା ସବୁକୁ ମନରେ ସ୍ଥାନ ଦେଇ) ଅଶୁଚିବ୍ରତାଃ ପ୍ରବର୍ତ୍ତନ୍ତେ (ପାପମୟ ପ୍ରଯତ୍ନ ସବୁରେ ଲାଗିଥାନ୍ତି) ।

## ଅନୁବାଦ—

ହେ ଅର୍ଜ୍ଜୁନ, ଏହି ଆସୁରିକ ଲୋକେ ସାଧାରଣତଃ ଦୁଷ୍ପୂରଣୀୟ ଅଭିଳାଷ ସବୁକୁ ଆଶ୍ରୟ କରି ଏବଂ ଦମ୍ଭ, ମାନ ଓ ଗର୍ବରେ ପ୍ରମତ୍ତ ହୋଇ, ସେହି ମୋହରେ ଭସି, ନାନା ଅନିଷ୍ଟକର ଯୋଜନା ଡିଗରେ, ଅକାତରେ ପାପମୟ ପ୍ରଯତ୍ନ ସବୁ କରିଚାଲନ୍ତି ।

( ୧୧—୧୨ )

ଚିନ୍ତାମ ପରିମେୟାଂଚ ପ୍ରଳୟାନ୍ତାମୁପାଶ୍ରିତାଃ
କାମୋପଭୋଗ ପରମା ଏତାବଦିତି ନିଶ୍ଚିତାଃ । ୧୧ ।
ଆଶା ପାଶଶତୈର୍ବଦ୍ଧାଃ କାମକ୍ରୋଧ ପରାୟଣାଃ
ଈହନ୍ତେ କାମ ଭୋଗାର୍ଥ ମନ୍ୟାୟେନାର୍ଥ ସଞ୍ଚୟାନ୍ । ୧୨ ।

ପ୍ରଳୟାନ୍ତାଂ ଅପରିମେୟାଂ ଚିନ୍ତାଂ ଉପାଶ୍ରିତାଃ (ମୃତ୍ୟୁ ପର୍ଯ୍ୟନ୍ତ ଅଗଣିତ ବିଷୟ ଚିନ୍ତାରେ ଜଡ଼ିତ ରହି) କାମୋପଭୋଗ ପରମାଃ (ଭୋଗ ବାସନା ଚରିତାର୍ଥତାକୁ ଶ୍ରେଷ୍ଠ କଥା ମନେ କରି) [ଏବଂ] ଏତାବତ୍ ଇତି ନିଶ୍ଚିତାଃ (ଏହାହିଁ ଏକଦମ ଠିକ୍ ବୋଲି ଭାବିନେଇ) ଆଶା ପାଶଶତୈଃ ବଦ୍ଧାଃ (ଶତ ଶତ ଆଶା ରୂପ ପାଶରେ ବାନ୍ଧି ହୋଇ) କାମ କ୍ରୋଧ ପରାୟଣାଃ (କାମ ଓ କ୍ରୋଧ ପରାୟଣ ସେହି ଲୋକମାନେ) କାମ ଭୋଗାର୍ଥଂ (ବିଷୟ ଭୋଗ ପାଇଁ) ଅନ୍ୟାୟେନ ଅର୍ଥ ସଞ୍ଚୟାନ୍ ଈହନ୍ତେ (ଅନ୍ୟାୟ ଉପାୟରେ ଅର୍ଥର ଅର୍ଜନ ଓ ସଞ୍ଚୟ କରିବାକୁ ଯାଇଥାନ୍ତି)।

ଅନୁବାଦ –

ହେ ଅର୍ଜୁନ, ଏ ଶ୍ରେଣୀର ଲୋକେ ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଅଗଣିତ ଦୁଶ୍ଚିନ୍ତାରେ ଜଡ଼ିତ ରହନ୍ତି । ସେମାନେ ମନେ କରନ୍ତି ଯେ, ଏ ଜୀବନରେ, ଯୌନସମ୍ଭୋଗ ସହିତ ଅନ୍ୟାନ୍ୟ ପାର୍ଥିବ ତୃଷ୍ଣା-ଚରିତାର୍ଥତାହିଁ ଶ୍ରେଷ୍ଠ ସିଦ୍ଧି। ସେମାନେ, "ଆମେ ଯାହା ଭାବୁଛୁ, ଯାହା କରୁଛୁ ଏବଂ ଯେପରି କରୁଛୁ ତାହାହିଁ ଠିକ୍" ବୋଲି ଧରିନେଇ ନିଜକୁ ଶତଶତ ଆଶା ପାଶରେ ଗୁଡ଼େଇ ରଖିଥାନ୍ତି। ଏମାନେ କାମ ଓ କ୍ରୋଧକୁ ଜୀବନର ସ୍ୱାଭାବିକ ପ୍ରକାଶ ବୋଲି ଧରି ନେଇ ସେଇଥିରେ ହିଁ ମାତିଥାନ୍ତି । ବିଷୟାଦିର ଭୋଗ ପାଇଁ ଏମାନେ ଅକୁଣ୍ଠିତ ଚିତ୍ତରେ ଅନ୍ୟାୟ ଉପାୟରେ ଅର୍ଥାର୍ଜନ ଓ ଅର୍ଥସଞ୍ଚୟ କରି ଚାଲନ୍ତି ।

( ୧୩—୧୬ )

ଇଦମଦ୍ୟ ମୟା ଲବ୍ଧ ମିମଂ ପ୍ରାପ୍ସ୍ୟେ ମନୋରଥଂ<br>
ଇଦମସ୍ତୀ ଦମପିମେ ଭବିଷ୍ୟତି ପୁନର୍ଦ୍ଧନଂ । ୧୩ ।

ଅସୌମୟାହତଃ ଶତ୍ରୁର୍ହନିଷ୍ୟେ ଚାପରାନପି<br>
ଈଶ୍ୱରୋଽହମହଂ ଭୋଗୀ ସିଦ୍ଧୋଽହଂ ବଳବାନ୍ ସୁଖୀ । ୧୪ ।

ଆଢ୍ୟୋଽଭିଜନବାନସ୍ମି କୋନ୍ୟୋଽସ୍ତି ସଦୃଶୋମୟା<br>
ଯକ୍ଷ୍ୟେ ଦାସ୍ୟାମି ମୋଦିଷ୍ୟେ ଇତ୍ୟଜ୍ଞାନ ବିମୋହିତାଃ । ୧୫ ।

ଅନେକ ଚିତ୍ତ ବିଭ୍ରାନ୍ତା ମୋହ ଜାଲ ସମାବୃତାଃ<br>
ପ୍ରସକ୍ତାଃ କାମଭୋଗେଷୁ ପତନ୍ତି ନରକେଽଶୁଚୌ । ୧୬ ।

ଅଦ୍ୟମୟା ଇଦଂ ଲବ୍ଧଂ (ଆଜି ମତେ ଏହା ମିଳିଲା) ଇମଂ ମନୋରଥଂ ପ୍ରାପ୍‌ସ୍ୟେ (ଏହି ବାଂଛିତ ବସ୍ତୁ ପରେ ଲାଭ କରିବ) ଇଦଂ ଅସ୍ତି (ଏ ଧନ ମୋର ହୋଇ ରହିଛି) ଇଦଂ ଧନଂ ଅପି ମେ ପୁନଃ ଭବିଷ୍ୟତି (ଇମିତି ଧନ ପୁଣି ମୋ ହାତକୁ ଆସିବ)। ଅସୌ ଶତ୍ରୁଃ ମୟା ହତଃ (ମୋର ସେ ଶତ୍ରୁ ମୋଦ୍ୱାରା ନିପାତ ହେଲା) ଅପରାନ୍ ଅପି ଚ ହନିଷ୍ୟେ (ଯେଉଁ ସବୁ ଶତ୍ରୁ ରହିଗଲେ ସେମାନଙ୍କୁ ମଧ୍ୟ ହତ୍ୟା କରିବି) ଅହଂ ଈଶ୍ୱରଃ (ମୁଁ ଏକ ଈଶ୍ୱର ପରି ଲୋକ) ଅହଂ ଭୋଗୀ (ସବୁ ଭୋଗ ମୋ ପାଦ ତଳେ) ଅହଂ ସିଦ୍ଧଃ, ବଳବାନ୍, ସୁଖୀ (ମୁଁ ସବୁ କାମରେ ସିଦ୍ଧ, ମୁଁ ପ୍ରଭବଶାଳୀ, ମୁଁ ସୁଖୀ) [ମୁଁ ପୁଣି] ଆଢ୍ୟଃ ଅଭିଜନବାନ୍ ଅସ୍ମି (ଧନୀ ଓ ଉଚ୍ଚବଂଶଜ ଅଛି) [ତେଣୁ] ମୟା ସଦୃଶଃ ଅନ୍ୟ କଃ ଅସ୍ତି (ମୋ ପରି ଆଉ କିଏ ଅଛି ?) ଯକ୍ଷ୍ୟେ, ଦାସ୍ୟାମି, ମୋଦିଷ୍ୟେ (ଯଜ୍ଞ କରିବାକୁ ମୁଁ, ଦେବାକୁ ମୁଁ, ମଉଜ ମଜଲିସ୍ କରିବାକୁ ମୁଁ)—ଇତ ଅଜ୍ଞାନ ବିମୋହିତାଃ (ଏହି ପ୍ରକାର ନାନା ଅଜ୍ଞ ଭାବରେ ବିମୂଢ଼ ହୋଇ) ଅନେକ ଚିତ୍ତ ବିଭ୍ରାନ୍ତାଃ (ନାନାବିଧ ଚିତ୍ତ ବିଭ୍ରାନ୍ତିରେ ଘାରି ହୋଇ) ମୋହଜାଲ ସମାବୃତାଃ (ମୋହ ଜାଲରେ ପଡ଼ି ଛଟପଟ ହୋଇ ହୋଇ) କାମ ଭୋଗେଷୁ ପ୍ରସକ୍ତାଃ (ଅତଶୟ ମାତ୍ରାରେ ବିଷୟ ଭୋଗାସକ୍ତ ରହି) [ସେହି ଲୋକେ] ଅଶୁଚୌ ନରକେ ପତନ୍ତି (ଅପବିତ୍ର ନରକରେହିଁ ଯାଇ ପଡନ୍ତି) ।

## ଅନୁବାଦ—

ଆଜି ମତେ ଏୟା ଏୟା ମିଳିଗଲା, କାଲିକି ପୁଣି ଏୟା ମିଳିବ, ଏତକ ଧନ ମୋର ହେଲାଣି, ସେତକ ଧନ ମୋ ହାତକୁ ପୁଣି ଆସିବ; ସେ ଶତ୍ରୁ ମୋର ହତ ହେଲାଣି, ଯେ ଅବଶିଷ୍ଟ ଅଛନ୍ତି ସେ ସମସ୍ତଙ୍କୁ ମଧ୍ୟ ମୁଁ ନିପାତ କରିବି, ମୁଁ ପ୍ରଭୁ, ମୁହିଁ ଏକା ସବୁ ଭୋଗ କରିବ, ମୁଁ କୃତକର୍ମା, ଶକ୍ତି-ଶାଳୀ, ସୁଖବନ୍ତ, ଧନଶାଳୀ ଓ ଅଭିଜାତ । ମୋ ପରି ଆଉ କିଏ ଅଛି କି ? ଯାଜ୍ଞିକ ବୋଇଲେ ମୁଁ, ଦାନୀ ବୋଇଲେ ମୁଁ, ମଉଜ କରିବା ଲୋକ ମୁଁ । ହେ ଅର୍ଜୁନ, ଆସୁରୀ ଶ୍ରେଣୀର ଲୋକେ ଏହି ପ୍ରକାର ନାନା ଅଜ୍ଞ ବିଚାରରେ ବିମୂଢ଼ ରହି ନାନା ମାନସିକ-ପ୍ରମାଦ-ଜନିତ ମୋହ-ଜାଲ ଭିତରେ ଛଟପଟ ହୋଇ ହୋଇ ଏବଂ ବିବିଧ ବାସନାର ଆସକ୍ତିରେ ଜଡ଼ିତ ରହି ଶେଷରେ ମୃତ୍ୟୁପରେ ଅପବିତ୍ର ନରକରେ ପଡ଼ିଥାନ୍ତି ।

( ୧୭ )

ଆତ୍ମସମ୍ଭାବିତାଃ ସ୍ତବ୍ଧା ଧନ ମାନ ମଦାନ୍ୱିତାଃ
ଯଜନ୍ତେ ନାମଯଜ୍ଞୈସ୍ତେ ଦମ୍ଭେନା ବିଧିପୂର୍ବକଂ । ୧୭ ।

ଆତ୍ମସମ୍ଭାବିତାଃ (ଆତ୍ମ ପ୍ରଶଂସାକାରୀ) ସ୍ତବ୍‌ଧାଃ ଧନମାନ ମଦାନ୍ୱିତାଂ ତେ (ଉଦ୍ଧତ ଓ ଧନ ଗର୍ବରେ ଗର୍ବୀ ସେହି ଲୋକେ) ନାମଯଜ୍ଞୈଃ (ନାମ ମାତ୍ର ତ୍ୟାଗ କରି) ଦମ୍ଭେନ ଅବିଧିପୂର୍ବକଂ ଯଜନ୍ତେ (କେବଳ ଦାମ୍ଭିକତା ଦେଖାଇ ବେନିୟମରେ ଧର୍ମକର୍ମ ସବୁ କରିଥାନ୍ତି) ।

ଅନୁବାଦ—

ଆତ୍ମ ସ୍ତୁତି-ମୁଗ୍‌ଧ, ଉଦ୍ଧତ ଏବଂ ଧନମାନ-ଜନିତ-ଗର୍ବରେ ଜର୍ଜର ଏହି ଲୋକେ ଯେତେବେଳେ ଯଜ୍ଞ ବି କରି ବସନ୍ତି, ସେତେବେଳେ ସେମାନେ କେବଳ ନାମ ପାଇଁ ହିଁ ତାହା କରି ବସନ୍ତି ଏବଂ ଦେଖେଇ ହେବା ଲକ୍ଷ୍ୟରେ ବିଧି-ଲଙ୍ଘନ କରିବାକୁ ମଧ୍ୟ ପଛାନ୍ତି ନାହିଁ ।

( ୧୮ )

ଅହଙ୍କାରଂ ବଳଂ ଦର୍ପଂ କାମଂକ୍ରୋଧଂ ଚ ସଂଶ୍ରିତାଃ
ମାମାତ୍ମପର ଦେହେଷୁ ପ୍ରଦ୍ୱିଷନ୍ତୋଽଭ୍ୟସୂୟକାଃ । ୧୮ ।

ଅହଙ୍କାରଂ ବଳଂ ଦର୍ପଂ କାମଂ କ୍ରୋଧଂ ଚ ସଂଶ୍ରିତାଃ(ଅହଙ୍କାର, ବଳ, ଦର୍ପ, କାମ ଓ କ୍ରୋଧ ପ୍ରଭୃତିକୁ ନିରତ ଆଶ୍ରୟ କରିଥିବା)[ସେମାନେ] ଆତ୍ମପର ଦେହେଷୁ ମାଂ ପ୍ରଦ୍ୱିଷନ୍ତଃ [ସେହିସବୁ ପାପ ପ୍ରବୃତ୍ତି ଫଳରେ] (ପ୍ରକୃତରେ ନିଜ ଦେହ ଓ ଅନ୍ୟ ଦେହରେ ଅବସ୍ଥିତ ମୋ'-ପ୍ରତି-ଦ୍ୱେଷଯୁକ୍ତ ହୋଇ ହିଁ) ଅଭ୍ୟସୂୟକାଃ ( ସ୍ୱଭାବତଃ କେବଳ ଅନ୍ୟର ଅସୂୟାକାରୀ ହୋଇ ଉଠନ୍ତି ) ।

ଅନୁବାଦ—

ହେ ଅର୍ଜ୍ଜୁନ, କାମ, କ୍ରୋଧ, ବଳ ଓ ଦର୍ପର ଆଶ୍ରୟ ନେଇଥିବା ଏ ଶ୍ରେଣୀର ଲୋକେ ସର୍ବଦା ଅନ୍ୟମାନଙ୍କ ପ୍ରତି ଅସୂୟାପରବଶ ହୋଇ ଅଜ୍ଞାତ-ସାରରେ ନିଜ ଓ ପର ଦେହମାନଙ୍କରେ ମୋ'ଠି (ଈଶ୍ୱରଙ୍କ) ପ୍ରତି ହିଁ ବିଦ୍ୱେଷ ଆଚରଣ କରିଥାନ୍ତି ।

( ୧୯ )

ତାନହଂ ଦ୍ୱିଷତଃ କ୍ରୂରାନ୍ ସଂସାରେଷୁ ନରାଧମାନ୍
କ୍ଷିପାମ୍ୟ ଜସ୍ରମଶୁଭାନ୍ ଆସୁରୀଷ୍ୱେବ ଯୋନିଷୁ । ୧୯ ।

ଅହଂ (ମୁଁ) ଦ୍ୱିଷତଃ କ୍ରୂରାନ୍ ଅଶୁଭାନ୍ ତାନ୍ ନରାଧମାନ୍ ( ସେହି, ଅନ୍ୟକୁ-ଘୃଣା କରୁଥିବା ଏବଂ ନିଷ୍ଠୁର ଓ ଅଶୁଭ କର୍ମରେ ସର୍ବଦା ବ୍ୟାପୃତ ଥିବା ନରାଧମମାନଙ୍କୁ) ସଂସାରେଷୁ (ଏହି ସଂସାର ଭିତରେ) ଆସୁରୀଷୁ ଯୋନିଷୁ (ସହି ଆସୁରୀ ଯୋନିରେହିଁ) ଅଜସ୍ରଂ କ୍ଷିପାମି (ବାରମ୍ବାର ନିକ୍ଷେପ କରିଥାଏ )।

## ଅନୁବାଦ—

ହେ ଅର୍ଜୁନ, ଅନ୍ୟମାନଙ୍କୁ ଘୃଣା ଓ ତୁଚ୍ଛ-ତାଚ୍ଛଲ୍ୟ କରୁଥିବା ସେହି ନିଷ୍ଠୁର ନରାଧମମାନଙ୍କୁ ମୁଁ (ଈଶ୍ୱର) ସେମାନଙ୍କର ପ୍ରବୃତ୍ତି ଅନୁଯାୟୀ ଯଥାର୍ଥ ଦଣ୍ଡରୂପେ ବାରମ୍ବାର ସେହି ଆସୁରୀ ଜନ୍ମରେ ହିଁ ନିକ୍ଷେପ କରିଥାଏ ।

୨୦

ଆସୁରୀଂଯୋନିମାପନ୍ନା ମୂଢା ଜନ୍ମନି ଜନ୍ମନି
ମାମ ପ୍ରାପ୍ୟୈବ କୌନ୍ତେୟତତୋ ଯାନ୍ତ୍ୟଧମାଂ ଗତିଂ । ୨୦ ।

[ହେ] କୌନ୍ତେୟ (ଅର୍ଜୁନ [ସେହି] ମୂଢାଃ (ମୂଢ ଲୋକମାନେ) ଜନ୍ମନି ଜନ୍ମନି ଆସୁରୀଂ ଯୋନିଂ ଆପନ୍ନାଃ (ଜନ୍ମେ ଜନ୍ମେ ଆସୁରୀ ଜୀବନ ପାଇ) [ଏବଂ ସେହି କାରଣରୁ] ମାଂ ଅପ୍ରାପ୍ୟ (ମତେ ନ ପାଇ) ତତଃ (ଭୋଗ କରୁଥିବା ସେହି ସେହି ଆସୁରୀ ଜୀବନଠାରୁ ମଧ୍ୟ ଅଧମାଂ ଗତିଂ ଯାନ୍ତି (ଆହୁରି ଅଧିକ ଅଧମ ଜୀବନ ପ୍ରାପ୍ତ ହୋଇଥାନ୍ତି ।

## ଅନୁବାଦ—

ହେ ଅର୍ଜୁନ, ଜନ୍ମ ଜନ୍ମ ଧରି ବାରମ୍ବାର ଆସୁରୀ ଜୀବନ କଟାଇବା ଫଳରେ ସେହି ମୂଢମାନେ ମତେ (ଈଶ୍ୱରଙ୍କୁ) ପାଇବାର ତ ପ୍ରଶ୍ନ ନାହିଁ ବରଂ ଅଧିକରୁ ଅଧିକ ଅଧମ ଗତି ପାଇଥାନ୍ତି ।

## ବିଶେଷ ଭାଷ୍ୟ—

ପାଠକେ ଏହି ଶ୍ଳୋକଟି କିନ୍ତୁ ଗୀତାର ସାମଗ୍ରିକ. ଉବଧାରା ପ୍ରତି ଯେପରିକି ଏକ ପଦାଘାତ ପରି ବୋଧ ହେଉଛି । ଯେଉଁ ଗୀତା ଏକାଦଶ ଅଧ୍ୟାୟରେ ଈଶ୍ୱରଙ୍କୁ ଏହିପରି ଅପୂର୍ବ ମାଧୁର୍ଯ୍ୟରେ ବର୍ଣ୍ଣନା କରିଥିଲେ—

ପିତେବ ପୁତ୍ରସ୍ୟ ସଖେବ ସଖ୍ୟୁଃ
ପ୍ରିୟଃ ପ୍ରିୟାୟାର୍ହସି ଦେବ ସୋଢୁଂ

(ପିତା ଯେପରି ପୁତ୍ରର, ସଖା ଯେପରି ସଖାର, ପ୍ରିୟ ଯେପରି ପ୍ରଣୟୀଜନର ଭ୍ରମ-ପ୍ରମାଦ ସହିନେଇ କ୍ଷମା କରନ୍ତି, ତୁମେ ମଧ୍ୟ ମୋର ଭ୍ରମ-ପ୍ରମାଦକୁ ସେହିପରି ସହି କ୍ଷମା କରବ) ।

—ସେ କପରି ଏଠାରେ କହିବେ ଯେ, "ମୁଁ ଏହି କାରଣରୁ ସେମାନଙ୍କୁ ବାରମ୍ବାର ଅଧିକରୁ ଅଧିକ ଆସୁରୀ ଜନ୍ମରେ ପକାଇଥାଏ ?"

ଏହା ଅନ୍ତତଃ ସେହି 'ପୁରୁଷୋତ୍ତମ'ଙ୍କ ମୁଖରେ ଶୋଭେ ନାହିଁ, ଯିଏ ମାତ୍ର କେତୋଟି ମୁହୂର୍ତ୍ତ ପୂର୍ବେ ଦୈବୀ ଗୁଣାବଳି ବର୍ଣ୍ଣନା କରୁ କରୁ ସେ ସବୁ ଭିତରେ "ଅ-କ୍ରୋଧ"; "କ୍ଷମା" ଏବଂ "ଭୂତେଷୁ ଦୟା"କୁ ବିଶିଷ୍ଟ ସ୍ଥାନ ଦେଇଛନ୍ତି ।

ପୁଣି 'ଆସୁରୀ' ଭବ ବା କାହାର ସୃଷ୍ଟି ? ସମଗ୍ର ଗୀତାରେ ସୂର୍ଯ୍ୟ-ତାରକାଠୁ ଆରମ୍ଭ କର ଜୁଆ-ଖେଳାଳିର ଶଠତା ପର୍ଯ୍ୟନ୍ତ ସମସ୍ତହିଁ 'ଈଶ୍ୱର' ବୋଲି ବର୍ଣ୍ଣନା ସାଥିକି; 'ଆସୁରୀ-ଗୁଣ'ର ଈଶ୍ୱର-ଭିନ୍ନ ସ୍ୱାତନ୍ତ୍ର୍ୟ ଆସିବ କୁଆଡୁ ? ଓ ସେଥିପାଇଁ କେତେକ ନିର୍ଦ୍ଦିଷ୍ଟ ଶ୍ରେଣୀର ଲୋକ ଅନନ୍ତକାଳ ନରକ ଭୋଗୀ ହେବେ ବା କପରି ? ପ୍ରଥମ ଅଧ୍ୟାୟରେ କୁହାଗଲା ଯେ; "ଅଜ୍ଞାନେ-ନାବୃତଂ ଜ୍ଞାନଂ ତେନ ମୁହ୍ୟନ୍ତି ଜନ୍ତବଃ" ତା ପୂର୍ବରୁ କୁହାଯାଇଛି ଯେ, "ସ୍ୱଭବସ୍ତୁ ପ୍ରବର୍ତ୍ତତେ" । ଏପରି ସ୍ଥଳେ ମନୁଷ୍ୟ ମାତ୍ରର ବିପଥଗାମୀ ହେବା, ଭ୍ରାନ୍ତ ଚିନ୍ତା କରିବା ବା କୁକର୍ମ କର ବସିବା ଅତ୍ୟନ୍ତ ସ୍ୱାଭବିକ । ଯିଏ ପରେ "ମହାତ୍ମା" ହେଲେ ସେ ଟୋକା ବୟସରେ ବହୁ ଭ୍ରମାତ୍ମକ କର୍ମ କର ନଥିଲେ କି ? ସେ ପୁଣି ଏକ ଜୀବନରେ 'ମହାତ୍ମା' ହୋଇ ପାରିଲେ କପରି ? ଏ ସଂସାରରେ ସେହିହିଁ ସବୁଠାରୁ ଆଶାଜନକ ବ୍ୟବସ୍ଥା, ଯାହା ଦେଇ ଗତକାଲିର ଡକାଏତ, ଆଗାମୀ କାଲି ରାମାୟଣ ଲେଖିପାରେ ଏବଂ ଟୋକା ବେଳର ସ୍ୱୈଣ ଗାନ୍ଧି ପର ଜୀବନରେ ନିଷ୍ପାପ ଦେବତାତ୍ମା ହୋଇ ଦେଖାଦିଏ ଏହିପର ଅ-ସୁରକୁ ସୁର (ଦେବତା) କରିବାହିଁ ଏ ଜଗତରେ ହୁଏତ ଈଶ୍ୱରଙ୍କର ସବୁଠାରୁ ବଡ କାମ, ଯେହେତୁ ଜଣେ କୌଣସି ରହସ୍ୟମୟ କାରଣରୁ ଆସୁରକତା ନେଇ ଜନ୍ମ ହୋଇ ଯାଇଛି (ଯେଉଁ କାରଣରୁ, ତା' ସେ ନଜେ ଜାଣେନା) ତାକୁ ସେଥିଯୋଗୁଁ ବାରମ୍ବାର ପାପ-ଯୋନି-ପ୍ରାପ୍ତ କରାଇବା ଏବଂ ଏହା ଦମ୍ଭର ସହିତ ଘୋଷଣା କରିବା, କୌଣସି 'ଈଶ୍ୱର'ଙ୍କର କାମ ହୋଇ ନ ପାରେ; ନଜକୁ 'ଅବ୍ୟୟ' 'ଅନାଦି', "ଅକ୍ଷୟ" 'ପର'; 'ପରମ' ବା 'ପୁରୁଷୋତ୍ତମ' ଆଦି ଗୁଡାଏ ବିଶେଷଣ ଦେଇ ଝୁଲିବାରେ ପ୍ରକୃତ ଈଶ୍ୱରତ୍ୱ ପ୍ରକାଶ ପାଏ ନାହିଁ । ସାଧାରଣ ମନୁଷ୍ୟ ପ୍ରତି କେବଳ ସେହି

ଈଶ୍ୱରହିଁ ଅର୍ଥବାନ୍, ଯେ ମନୁଷ୍ୟ ପ୍ରତ କରୁଣାମୟ, କ୍ଷମାଶୀଳ ଏବଂ ଯେ ସତ୍ୟରେ 'ପତିତ-ପାବନ' ଯିଏ ତାଙ୍କୁ ଚିନ୍ତା କଲନି ବୋଲି ମନୁଷ୍ୟକୁ ଜନ୍ମ ଜନ୍ମ ଧରି ମୂଢ଼ରୁ ମୂଢ଼ତର କରି ରଖେ, ସେ କି ଭଗବାନ୍ ?

ଉଭୟ ଗୌତମ ବୁଦ୍ଧ ଓ ଯୀଶୁଖ୍ରୀଷ୍ଟ ଏ କ୍ଷେତ୍ରରେ ଗୀତାର ଏ ପ୍ରକାର ନିଷ୍କରୁଣ ଈଶ୍ୱରଙ୍କଠାରୁ ଅସାମାନ୍ୟ ଭାବରେ ମହତ୍ତର ଓ ସର୍ବଥା ଯୁକ୍ତିଯୁକ୍ତ ପଥ ଦେଖାଇ ଯାଇଛନ୍ତି । ଏମାନଙ୍କ ବାଣୀରେ ଅଧଃପତିତର ଊର୍ଦ୍ଧ୍ୱ-ଗମନର ସମ୍ଭାବନା କେବେହେଲେ ରୁଦ୍ଧ ହୋଇ ଯାଇ ନାହିଁ । ବୌଦ୍ଧ 'ଧର୍ମପଦ' (ଲୋକ ବଗ୍‌ଗ)ରେ ଆମେ ତେଣୁ ପାଉଁ····

"ଯେ ପୂର୍ବେ ପ୍ରମାଦଗ୍ରସ୍ତ ଥିଲେ ମଧ୍ୟ ପରେ ଆଉ ପ୍ରମାଦରେ ପଡନ୍ତିନ ସେ ଏ ସଂସାରରେ ମେଘ-ମୁକ୍ତ ଚନ୍ଦ୍ର ସମ ପୁଣି ପ୍ରଭାସିତ ହୋଇ ଉଠିବେ ।" (୬)

ମହାଯାନୀ ସନ୍ଥ ଶାନ୍ତ ଦେବଙ୍କର ନିମ୍ନଲିଖିତ ପ୍ରାର୍ଥନା ଓ ପାପ ସ୍ୱୀକୃତି ଆଧ୍ୟାତ୍ମିକ ଜଗତ୍ ଓ ସାହିତ୍ୟରେ ଏକ ପରମ ଅଭିଜ୍ଞତା—

ଦୟନୀୟ ଏକ ଜୀବମାତ୍ର ମୁଁ, ଅଗଣିତ ଜନ୍ମ ଜନ୍ମାନ୍ତରେ ଘୋର ଅଜ୍ଞତା ବଶତଃ ଯେତେ ଯେତେ ପ୍ରକାରେ ସତ୍‌ପଥଭ୍ରଷ୍ଟ ହୋଇ ନିଜେ ପାପକର୍ମ ସବୁ କରିଛି ବା ଅନ୍ୟମାନଙ୍କୁ କରାଇବାରେ ସାହାଯ୍ୟ କରିଛି, ସେ ସମସ୍ତହିଁ ଆଜି ମୁଁ ଚରମ ଅନୁତାପରେ ବିଶ୍ୱସମ୍ମୁଖରେ ସ୍ୱୀକାର କରୁଛି । ତ୍ରି-ରତ୍ନଙ୍କ ପ୍ରତି, ପିତାମାତାଙ୍କ ପ୍ରତି, ବା ଯେ କୌଣସି ବୟସ୍କଙ୍କ ପ୍ରତ, କର୍ମ, ବଚନ ବା ଚିନ୍ତାରେ; ଯାହା ଯେବେ ଅପରାଧ କରିଛି, ହେ ପ୍ରଭୁଗଣ, ସେ ସବୁରୁ ଏହି ପରମ ପାପୀକୁ କ୍ଷମା ଦିଅ । କିପରି ବା ମୁଁ ସେ ସବୁର ପ୍ରତିକ୍ରିୟାରୁ ପଳାୟନ କରିପାରିବି ? ମତେ ରକ୍ଷାକର । ଏହି ପାପସବୁ ଚିତ୍ତରୁ ଅପସାରିତ ହୋଇପିବା ପୂର୍ବରୁ ହୁଏତ ମୃତ୍ୟୁହିଁ ଆସି ଯାଇପାରେ" ।

ଏବଂ ସର୍ବୋପରି ବାଇବଲ୍‌ରେ ଯୀଶୁଖ୍ରୀଷ୍ଟଙ୍କ ବର୍ଣ୍ଣିତ 'ହଜିଲା ମେଣ୍ଢା'ର ରୂପକ ଗଳ୍ପଟି ସମଗ୍ର ବିଶ୍ୱର ଆଧ୍ୟାତ୍ମିକ ସାହିତ୍ୟରେ ଈଶ୍ୱର-କରୁଣାର ସର୍ବାଧିକ ପ୍ରାଣସ୍ପର୍ଶୀ ପ୍ରମାଣ । ଯୀଶୁ କହିଛନ୍ତି—

"ଜଣେ ଲୋକର ଶହେଟି ମେଣ୍ଢା ଅଛି । ସେ ସେହି ମେଣ୍ଢାଗୁଡ଼ିକୁ ପାହାଡ଼କୁ ଚରାଇବାକୁ ନେଇଥିଲା । ପରେ ସେ ମେଣ୍ଢାମାନଙ୍କୁ ନେଇ ଘରକୁ ଫେରିଲା ବେଳେ ଜାଣିପାରିଲା ଯେ, ଅନେଶ୍ୱତ ମେଣ୍ଢା ଅଛନ୍ତି, ଗୋଟିଏ

ମେଣ୍ଢା ନାହିଁ । ସେ ଲୋକ ତାର ଅନେଶ୍ୱତଟିଯାକ ମେଣ୍ଢକୁ ସେହି ପାହାଡରେ ଛାଡଦେଇ ସେହି ଗୋଟିକ ହଜିଲା-ମେଣ୍ଢାକୁ ଖୋଜିବା ପାଇଁ ଯିବ ନାହିଁ କ ? ଏବଂ ସେ ଯଦି ସେହି ଗୋଟିକ ହଜିଲା ମେଣ୍ଢାକୁ ଫେରିପାଏ, ସେ ତାର ନ ହଜିଲା ଅନେଶ୍ୱତ ଅପେକ୍ଷା, ସେହି ଗୋଟିକ ପାଇଁ ଅଧିକ ଖୁସୀ ହେବ ନାହିଁ କି ? ତୁମର ସ୍ୱର୍ଗସ୍ଥ ପିତା ମଧ୍ୟ ସେହିପରି ରହାନ୍ତି ନାହିଁ ଯେ ତାଙ୍କର ସନ୍ତାନମାନଙ୍କ ମଧ୍ୟରୁ ଜଣେ ହେଲେ କେହି ପଥ-ଭ୍ରଷ୍ଟ ବା ନଷ୍ଟ ହୋଇଯିବ ।" ମାଥ୍ୟୁ-୧୪)

ଧର୍ମ ଜଗତରେ କେବଳ ବିଧି ବିଧାନ ପାଳନ ଅପେକ୍ଷା ବିଶ୍ୱାସ ଓ ଶ୍ରଦ୍ଧା ଯେ ଅଧିକ ଆବଶ୍ୟକ ଏହାର ଦୃଷ୍ଟାନ୍ତ ରୂପେ ଅନ୍ୟତ୍ର ଯୀଶୁ କହିଛନ୍ତି—

"ମୁଁ କହି ରଖୁଛି ଯେ ତୁମ ଆଗରୁ ମଦ୍ୟବ୍ୟବସାୟୀ ଓ ବାରବନିତା ମଧ୍ୟ ସ୍ୱର୍ଗ ରାଜ୍ୟରେ ପ୍ରବେଶ ଲାଭ କରିବେ । କାରଣ ସନ୍ଥ ଜନ୍ ଆସିଲେ, ସ୍ୱର୍ଗ ରାଜ୍ୟର କଥା ପ୍ରଚାର କଲେ, କିନ୍ତୁ ତୁମେ ତ କେହି ତାଙ୍କୁ ବିଶ୍ୱାସ କଲ ନାହିଁ । ଶୁଣ୍ଢୀ ଓ ଗଣିକାମାନେ ବିଶ୍ୱାସ କଲେ । ତୁମେ କେବଳ ଅନେଇ ରହିଲ ଏବଂ ପୂର୍ବକୃତ ପାପ ପାଇଁ ସାମାନ୍ୟ ଅନୁତାପ ମଧ୍ୟ କଲନି ।" (ମାଥ୍ୟୁ-୨୧)

ଯୀଶୁ ବିଶେଷ ଭାବରେ ସମାଜର ନିମ୍ନ, ଇତର ସାଧାରଣ ହେୟ ଶ୍ରେଣୀର ଲୋକମାନଙ୍କ ସହିତ ବୁଲାଚଲା କରିବାର ଦେଖି ଭଦ୍ରଲୋକେ ତାଙ୍କର ଶିଷ୍ୟମାନଙ୍କୁ ପଚାରଥିଲେ—ତୁମର ଗୁରୁ ଏହି ପ୍ରକାର ପାପୀ ଓ ଇତର ଶ୍ରେଣୀର ଲୋକଙ୍କ ଭିତରେ ବସାଉଠା କରୁଛନ୍ତି କାହିଁକି ?

ଯୀଶୁ ନିଜେ ଏହା ଶୁଣିପାରି ଉତ୍ତର ଦେଲେ—"ସୁସ୍ଥ ଲୋକ ବୈଦ୍ୟ ଦରକାର କରେ ନାହିଁ; କରେ ସେହି ଯେ ବ୍ୟାଧିଗ୍ରସ୍ତ । ଶାସ୍ତ୍ରରେ ଲେଖା ନାହିଁକି ଯେ "ହେ ପ୍ରଭୁ, ନ୍ୟାୟ ବଳର ପରିବର୍ତ୍ତରେ ମୁଁ ତୁମର ପ୍ରସନ୍ନତାହିଁ ଭିକ୍ଷା କରୁଛ ? ଘରେ ଯାଇ ଚିନ୍ତାକର; ଏହାର ତାତ୍ପର୍ଯ୍ୟ କ'ଣ । ମୁଁ ପାପୀଙ୍କୁ ଡାକି ବାହାର କରିବାକୁ ଆସିଛ । ନ୍ୟାୟପରାୟଣ ଲୋକଙ୍କ କଥା ବୁଝିବା ପାଇଁ ନୁହେଁ ।" (ସେଣ୍ଟ ମାଥ୍ୟୁ-୯)

ବୁଦ୍ଧଙ୍କ ସ୍ପର୍ଶରେ ନିଷ୍ଠୁର ଆତତାୟୀ ଦସ୍ୟୁ ଅଙ୍ଗୁଳିମାଳ ଓ ଗଣିକା ଆମ୍ରପାଳୀର ମୁହୂର୍ତ୍ତକେ ଜନ୍ମାନ୍ତର ଘଟିବାର କାହାଣୀ ମଧ୍ୟ ଭାରତୀୟ ସାହିତ୍ୟରେ ସୁବିଦିତ ।

ଗୀତା ଯେଉଁ ସାଂଖ୍ୟ ତ୍ରି-ଗୁଣ (ସତ୍ତ୍ୱ, ରଜ, ତମ,)କୁ ଗ୍ରହଣ କରି ବଗବର ପ୍ରଚାର କରିଛନ୍ତି, ସେଥିରେ ମଧ୍ୟ ବିଶ୍ୱାସ ରଖିଲେ, ସଂସାରରେ ଦୈବୀ ଓ ଆସୁରୀ ବୋଲି ଦୁଇଟି ନିର୍ଦ୍ଦିଷ୍ଟ ଓ ଏକାବେଳକେ ଅପରିବର୍ତ୍ତନୀୟ ଶ୍ରେଣୀର ଅବସ୍ଥିତି ଅସମ୍ଭବ ହେବ । କାରଣ ତ୍ରିଗୁଣାତ୍ମିକା ପ୍ରକୃତି ଆମ ସମସ୍ତଙ୍କଠି ଅଛି । ଆମ ପ୍ରତ୍ୟେକଙ୍କ ଭିତରେ ସତ୍ତ୍ୱ, ରଜ ଓ ତମ ରହିଛି ଏବଂ 'ତମ'ହିଁ ଶେଷରେ 'ସତ୍ତ୍ୱ'ରେ ପରିଣତ ହେବା ପ୍ରାକୃତିକ ନିୟମ । ମହାଭାରତର "ନାତ୍ୟନ୍ତଂ ଗୁଣବଦ୍ କିଂଚିତ ନାତ୍ୟନ୍ତଂ ଦୋଷବଦ୍ ତଥା ।"

(ଏ ଜଗତରେ କୌଣସି ବସ୍ତୁ ଏକାବେଳକେ ଗୁଣବାନ୍ ନୁହେଁ ବା କୌଣସି ବସ୍ତୁ ଏକାବେଳକେ ଦୋଷଯୁକ୍ତ ନୁହେଁ)—ଏହା ମଧ୍ୟ ଏଠାରେ ସ୍ମରଣୀୟ । ତେଣୁ ପୃଥିବୀରେ କେତେକ ଯୁଗଯୁଗରି "ଦୈବୀ" ଓ ଆଉ କେତେକ ଯୁଗଯୁଗରି 'ଆସୁରୀ' ବୋଲି ଭାବିବା ଅଥବା ଆସୁରୀ ଭିତରେ କୌଣସି ହେଲେ ଦୈବୀଗୁଣ ନ ଥାଏ ଏବଂ ଯେ ଆସୁରୀ ସେ ଚିରକାଳ ଆସୁରୀ ରହିବ, ଏପରି ଭାବିବା ଏକାନ୍ତ ଅଯୌକ୍ତିକ କଥା ।

ବିବର୍ତ୍ତନହିଁ ଏ ସଂସାରରେ ପରମ ଆଶାର କଥା । ତାହାହିଁ ବିଧାତାର ପରମ ଯୋଜନା । ଏହି ପ୍ରାକୃତିକ ନିୟମ ଅନୁଯାୟୀହିଁ ଅଗଣିତ ପାପୀ ତାପୀ ଶେଷରେ ସାଧୁ-ସନ୍ଥ ମହାତ୍ମା ହୋଇ ପାରିଛନ୍ତି । ପାପୀ ବା ଆସୁରୀ ମନୁଷ୍ୟ ଚିରକାଳ ସେହିପରି ରହିବାର କୌଣସି ହେଲେ ଯୁକ୍ତିଯୁକ୍ତତା ନାହିଁ । ଏହା ଆମ ପ୍ରତ୍ୟେକଙ୍କର ଅଗଣିତ ଜନ୍ମ ଜନ୍ମାନ୍ତର ଦେଇ ଘଟି ଚାଲିଥିବା ଆତ୍ମିକ ବିବର୍ତ୍ତନ ଭିତରେ ଗୋଟିଏ ଜନ୍ମର ଏକ ଅବସ୍ଥା ମାତ୍ର ହୋଇପାରେ । ଗୀତା ପରବର୍ତ୍ତୀ ଶ୍ଳୋକରେହିଁ ଆସୁରୀ ଭାବମାନଙ୍କର ଉତ୍ପତ୍ତି ଓ ସେଥିରୁ ନିସ୍ତାରର ଉପାୟ ବର୍ଣ୍ଣନାକରି ବିବର୍ତ୍ତନବାଦକୁ ବରଂ ସମର୍ଥନ କରିଛନ୍ତି ।

ଏହିସବୁ କାରଣରୁ ଏହି ଲେଖକ ମତରେ ଏହି ଶ୍ଳୋକ ଓ ଏହି ଧରଣର ଅନ୍ୟଶ୍ଳୋକ ଗୀତାରେ ହୁଏତ ପ୍ରକ୍ଷିପ୍ତ ବୋଲି ଧରାଯାଇ ପାରେ । ତେବେ ଶେଷ ସିଦ୍ଧାନ୍ତ ପାଠକଙ୍କର ନିଜର 'ବୁଦ୍ଧିଯୋଗ' ଉପରେ ଛାଡ଼ି ଦିଆଯାଉଛି । ଗୀତାର ମହତ୍ ବାକ୍ୟ—"ବୁଦ୍ଧୌ ଶରଣମନ୍ୱିଚ୍ଛ" (ବୁଦ୍ଧିବିଷୟର ଶରଣ ନିଅ) ୨/୪୯—ପାଠକେ ଯେପରି ଭୁଲି ନ ଯାନ୍ତି । ଗୀତାର ସେହି ଉପଦେଶ ଅନୁଯାୟୀହିଁ ଲେଖକର ଏହି ଶ୍ଳୋକ ଉପରେ ଏହି ପ୍ରକାର ବିଚାର ଦିଆଗଲା । ମତେ ନ ମାନିଲେ ଚିରକାଳ ପୋଡ଼ିହୋଇ ମରୁଥିବ ଇତ୍ୟାଦି ବିଭୀଷିକା ସବୁ ଧର୍ମରେ ପରିଚିତ ଘଟଣା ; କିନ୍ତୁ ଗୀତାପରି ଗ୍ରନ୍ଥରେ ଏପରି

କଥା ଏକାନ୍ତ ଅଶୋଭନୀୟ ଦେଖାଯାଉଛି । ବ୍ୟକ୍ତି କେନ୍ଦ୍ରିକ ଭକ୍ତି-ବାଦର ଏହା ଏକ ନମ୍ର ଶ୍ରେଣୀର ପ୍ରଚାର ।

( ୨୧ )

ତ୍ରିବିଧଂ ନରକସ୍ୟେଦଂ ଦ୍ୱାରଂ ନାଶନ ମାତ୍ମନଃ
କାମଃ କ୍ରୋଧ ସ୍ତଥା ଲୋଭ ସ୍ତସ୍ମା ଦେତତ୍ତ୍ରୟଂ ତ୍ୟଜେତ୍ । ୨୧ ।

କାମଃ, କ୍ରୋଧଃ ତଥା ଲୋଭଃ (କାମ, କ୍ରୋଧ ଓ ଲୋଭ)—ଇଦଂ ତ୍ରିବିଧଂ ନରକସ୍ୟ ଦ୍ୱାରଂ, ଆତ୍ମନଃ ନାଶନଂ (ଏହି ତିନୋଟି ଦୋଷହିଁ ମାନବାତ୍ମା ପାଇଁ ନରକର ତିନୋଟି ଦ୍ୱାର ଓ ଆତ୍ମାର ବିନାଶକ) [ତେଣୁ] ଏତତ୍ ତ୍ରୟଂ ତ୍ୟଜେତ୍ (ଏ ତନିକୁ ତ୍ୟାଗ କରିବ) ।

ଅନୁବାଦ—

ହେ ଅର୍ଜୁନ; ଏ ଜଗତରେ କାମ, କ୍ରୋଧ, ଲୋଭ ଏହି ତିନୋଟି ଦୋଷ ଆତ୍ମାର ଅନିଷ୍ଟକାରୀ ହୋଇ, ତା'ପାଇଁ ନରକର ଦ୍ୱାର ଖୋଲି ଦେଇଥାନ୍ତି । ତେଣୁ ସମଗ୍ର ଜୀବନ କାଳ ଭିତରେ ଏ ତିନୋଟିକୁ ନଜଠାରୁ ଦୂରରେ ରଖିବ ।

( ୨୨ )

ଏତୈର୍ବିମୁକ୍ତଃ କୌନ୍ତେୟ ତମୋଦ୍ୱାରୈ ସ୍ତ୍ରିଭିର୍ନରଃ
ଆଚରତ୍ୟାତ୍ମନଃ ଶ୍ରେୟସ୍ତତୋ ଯାତି ପରାଂ ଗତିଂ । ୨୨ ।

[ହେ] କୌନ୍ତେୟ (ଅର୍ଜୁନ) ଏତୈଃ ତ୍ରିଭିଃ ତମୋ ଦ୍ୱାରୈଃ ମୁକ୍ତଃ ନରଃ (ଏହି ତନୋଟି ନରକର ଦ୍ୱାରରୁ ମୁକ୍ତି ପାଇଥିବା ଲୋକ) ଆତ୍ମନଃ ଶ୍ରେୟଃ ଆଚରତି (ଆପଣାର ମଙ୍ଗଳ ଆଚରଣ କରନ୍ତି) । [ଏବଂ] ତତଃ ପରାଂଗତିଂ ଯାତି (ସେହି କ୍ରମରେ ପରମ ଗତି ପ୍ରାପ୍ତ ହୋଇଥାନ୍ତି) ।

ଅନୁବାଦ—

ହେ ଅର୍ଜୁନ, ଯିଏ ଅନ୍ତତଃ ନରକ-ଦ୍ୱାର-ସ୍ୱରୂପ ଏହି ତିନୋଟି ଦୋଷରୁ ନଜକୁ ମୁକ୍ତ ରଖିପାରନ୍ତି, ସେ ନିଜ ଆତ୍ମାର ନଶ୍ଚିତ କଲ୍ୟାଣ ସାଧନା କରନ୍ତି ଏବଂ ସେହି ପରମ ଗତି ଲାଭ କରିଥାନ୍ତି ବୋଲି ଜାଣିବ ।

**ବିଶେଷ ଭାଷ୍ୟ—**

ଆସୁରୀଭାବ ମାନଙ୍କର ଦୀର୍ଘ-ବର୍ଣ୍ଣନା ପରେ ଗୀତା ଉପରର ଏହି ଦୁଇ ୨୧ ଓ ୨୨ ଶ୍ଳୋକରେ ଶେଷରେ ଆସୁରୀଭାବ ଆମ୍ଭମାନଙ୍କ ଭିତରେ କେଉଁଠୁ ଆସେ ଓ କାହିଁକି ସେ ସବୁକୁ ଆମେ ପରିତ୍ୟାଗ କରିବା, ତାର ସୂଚନା ଦେଲେ । କାମ, କ୍ରୋଧ, ଲୋଭ, ଆମର ସକଳ ବ୍ୟକ୍ତିଗତ ଦୁଃଖର କେବଳ ନୁହେଁ, ସକଳ ସାମାଜିକ ସଂଘର୍ଷର ମଧ୍ୟ କାରଣ, ତେଣୁ ଏହି ତିନୋଟି ଦୋଷ ସର୍ବଥା ପରିତ୍ୟାଜ୍ୟ, କିନ୍ତୁ ଏ କ୍ଷେତ୍ରରେ ଗୌତମବୁଦ୍ଧଙ୍କ ମାଧ୍ୟମ-ପନ୍ଥା ଏବଂ ସ୍ୱୟଂ ଗୀତାର (୬।୧୭) "ଯୁକ୍ତାହାର ବିହାର" ରୂପକ ଉପଦେଶ ପ୍ରତି (ଯାହାକି ମଧ୍ୟ ବୌଦ୍ଧ ମଧ୍ୟମ-ପନ୍ଥା) ସାଧାରଣ ଗୃହସ୍ଥର ଲକ୍ଷ୍ୟ ରହିବା ଉଚିତ । ଉଭୟ ଗୌତମ ବୁଦ୍ଧ ଓ ଗୀତା ଆମେ ନର୍ମାଲ ବା ସ୍ୱାଭାବିକ ମନୁଷ୍ୟ ଜୀବନ ବଞ୍ଚୁ ଏହାହିଁ ଚାହାନ୍ତି । ନର୍ମାଲ ଜୀବନରେ କିଛି କାମ, କିଛି କ୍ରୋଧ, କିଛି ଲୋଭ ଅପରିହାର୍ଯ୍ୟ । ହିନ୍ଦୁର ଜୀବନାଦର୍ଶ ହେଲା ଅର୍ଥ, କାମ, ଧର୍ମ ଓ ମୋକ୍ଷ । ତଥାକଥିତ "ସଂସାରୀ" ଜୀବନ ହେଲା ପ୍ରଥମ ଦୁଇଟିରେ ଅନ୍ଧ ଭାବରେ ଜଡ଼ିତ ହୋଇ ରହିବା, ସଂସାର ପ୍ରତି 'ଆସକ୍ତ' ହୋଇ ପଡ଼ିବା ସଂସାରରେ ଥାଇ ଧର୍ମୀୟ ଜୀବନ ଅନୁସରଣର ଆଦର୍ଶ ହେଲା, ସେହି ଦୁଇଟିକୁ, ଶେଷୋକ୍ତ ଦୁଇଟି ଉପରେ ଆଖି ରଖିହିଁ ପରିଚାଳିତ କରିବା । ଜୀବନର ଲକ୍ଷ୍ୟ ଭାବରେ ଧର୍ମ ଓ ମୋକ୍ଷ ଉପରେ ସର୍ବଦା ଆଖି ରଖିଲେ, କାମ, କ୍ରୋଧ, ଲୋଭ ପ୍ରଭୃତି 'ନରକର ଦ୍ୱାର' ନ ହୋଇ, କ୍ରମେ Sublimated ବା ଊର୍ଦ୍ଧ୍ୱଗ ହୋଇ ଉଠିବେ । କାମ ପରିଣତ ହୋଇଉଠିବ ପ୍ରେମ, ମୈତ୍ରୀ ଓ କରୁଣାରେ, ଲୋଭ ପରିଣତ ହୋଇ ଉଠିବ, ଜାତୀୟତା ବା ଲୋକ ସଂଗ୍ରହରେ ଏବଂ କ୍ରୋଧ ପରିଣତ ହୋଇ ଉଠିବ ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ଯୁଦ୍ଧରେ । ସେହିହିଁ ହେବ ଧର୍ମ, ସେହିହିଁ ହେବ ମୋକ୍ଷ, ସେହି ଅନୁସାରେ ଯାହା ଆସୁରୀ ଥିଲା ତାହା ଦୈବୀରେ ପରିଣତ ହେବ—ମନୁଷ୍ୟ ରୂପାନ୍ତରିତ ହେବ ଦେବତାରେ । ବାରମ୍ବାର ଅଧିକରୁ ଅଧିକ ଅଧମତାରେ ବୁଡ଼ୁଥିବାର କଳ୍ପନା, ଉଭୟ ମାନବାତ୍ମା ପ୍ରତି ଓ ଈଶ୍ୱର କଳ୍ପନା ପ୍ରତି ଘୋର ଅପମାନ ।

( ୨୩ )

ଯଃ ଶାସ୍ତ୍ରବିଧି ମୁତ୍ସୃଜ୍ୟ ବର୍ତ୍ତତେ କାମକାରତଃ
ନ ସ ସିଦ୍ଧି ମବାପ୍ନୋତି ନ ସୁଖଂ ନ ପରାଂଗତିଂ । ୨୩ ।

[କିନ୍ତୁ] ଯଃ (ଯେ) ଶାସ୍ତ୍ରବିଧିଂ ଉତ୍ସୃଜ୍ୟ (ଶାସ୍ତ୍ରମାନଙ୍କର ବିଧିବିଧାନକୁ ନ ମାନି) କାମକାରତଃ ବର୍ତ୍ତତେ (ସ୍ୱେଚ୍ଛାଚାରୀ ଭବରେ ଚଳେ) ସଃ ସିଦ୍ଧିଂ ନ ଅବାପ୍ନୋତି (ସେ ଜୀବନରେ କୌଣସି ସିଦ୍ଧି ପାଏନା) ନ ସୁଖଂ ନ ପରାଂଗତିଂ (ପୁଣି ସୁଖ ପାଏନା ଜୀବନରେ ଏବଂ ମୃତ୍ୟୁ ପରେ ଉତ୍କୃଷ୍ଟ ଗତି ପାଏନା)

## ଅନୁବାଦ—

କିନ୍ତୁ ହେ ଅର୍ଜୁନ, ଏହା ମଧ୍ୟ ମନେ ରଖିଥିବ ଯେ, ଯେଉଁ ଲୋକ ଶାସ୍ତ୍ରବିଧି ସବୁ ନ ମାନି ଉଚ୍ଛୃଙ୍ଖଳ ଜୀବନ ଯାପନ କରେ, ସେ ଏ ଜୀବନରେ ସିଦ୍ଧି ବା ପର ଜୀବନରେ ପରମ ଗତି, କୌଣସିଟି ପାଇବନି ।

( ୨୪ )

ତସ୍ମାଚ୍ଛାସ୍ତ୍ରଂ ପ୍ରମାଣଂ ତେ କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ
ଜ୍ଞାତ୍ୱା ଶାସ୍ତ୍ରବିଧାନୋକ୍ତଂ କର୍ମକର୍ତ୍ତୁମିହାର୍ହସି । ୨୪ ।

ତସ୍ମାତ୍ (ସେହି ହେତୁରୁ) କାର୍ଯ୍ୟାକାର୍ଯ୍ୟ ବ୍ୟବସ୍ଥିତୌ (କାର୍ଯ୍ୟ କ'ଣ ଅ-କାର୍ଯ୍ୟ କ'ଣ ଏହାକୁ ନିରୁପିତ କରିବାରେ) ଶାସ୍ତ୍ରଂ ତେ ପ୍ରମାଣଂ (ଧର୍ମ ପୁସ୍ତକ ସବୁହିଁ ତୁମର ପ୍ରମାଣ) । ଶାସ୍ତ୍ରବିଧାନୋକ୍ତଂ ଜ୍ଞାତ୍ୱା ଇହ କର୍ମକର୍ତ୍ତୁଂ ଅର୍ହସି (ଶାସ୍ତ୍ର ବିଧାନରେ କ'ଣ କୁହାଯାଇଛି ତାହା ଜାଣି ତୁମେ ଏ ସଂସାରରେ ନିଜର କର୍ତ୍ତବ୍ୟ କର୍ମସବୁ କରିବ ।

## ଅନୁବାଦ—

ତେଣୁ ହେ ଅର୍ଜୁନ, ଜୀବନରେ କ'ଣ କରିବା ବା ନ କରିବା ଏହାର ବିଷୟରେ ଧର୍ମ-ପୁସ୍ତକହିଁ ତୁମର ଶ୍ରେଷ୍ଠ ପ୍ରମାଣ । ଶାସ୍ତ୍ରରେ କ'ଣ କୁହାଯାଇଛି ତାହା ଜାଣି; କେଉଁ ଅବସ୍ଥା ବା କ୍ଷେତ୍ରରେ କ'ଣ କରିବାକୁ ହେବ ବା ନ କରିବାକୁ ହେବ, ତାହା ଠିକ୍ କରିବ ।

## ବିଶେଷ ଭାଷ୍ୟ—

କେହି ଜିଜ୍ଞାସୁ ପାଠକ ସ୍ୱାଭାବିକ ଅଧିକାରରେ ପଚାରି ପାରନ୍ତି— ଶାସ୍ତ୍ର ? କେଉଁ ଶାସ୍ତ୍ର ? ଶାସ୍ତ୍ର ଯେ ସବୁ ଠିକ୍ କହୁଛନ୍ତି ତାର ପ୍ରମାଣ କ'ଣ ?

ଦୁଇ ଶାସ୍ତ୍ର ମଧ୍ୟରେ ଭିନ୍ନତା ଦେଖାଦେଲେ, କାହାକୁ ଠିକ୍, କାହାକୁ ଭୁଲ ବୋଲି ମଣିଷ ଧରିବ ? ପୁଣି ଆମରି ସାହିତ୍ୟରେ ତ ବାକ୍ୟ ଅଛି ଯେ—

ବେଦାର୍ବିଭିନ୍ନାଃ ମତୟଶ୍ଚ ଭିନ୍ନା
ନାସୌ ମୁନିର୍ଯସ୍ୟ ମତଂ ନ ଭିନ୍ନଂ ।

ପୁଣି ଏକମାତ୍ର ଈଶ୍ୱରଙ୍କୁ ଓ ତାଙ୍କର ବାଣୀକୁ ପ୍ରଚାର କରୁଛନ୍ତି ବୋଲି ପ୍ରତ୍ୟେକେ କହିଲେ ମଧ୍ୟ, ପୃଥିବୀର ଧର୍ମଗୁଡ଼ିକ ପରସ୍ପର ହଣାହଣି ହୋଇ ଏ ପର୍ଯ୍ୟନ୍ତ ଧରଣୀର ମାଟିକୁ କିପରି ମନୁଷ୍ୟର ଅଶ୍ରୁ ଓ ରକ୍ତରେ ସିକ୍ତ ଓ ଧରଣୀର ବାୟୁମଣ୍ଡଳକୁ ହାହାକାରମୟ କରି ରଖୁଛନ୍ତି ତାହା କାହାକୁ ଅଜଣା ? ସତ୍ୟ ତେଣୁ କେଉଁଠି ? କେଉଁ ଧର୍ମରେ ବା କେଉଁ ଶାସ୍ତ୍ରରେ ?

ପାଠକେ ଜାଣି ଖୁସି ହେବେ ଯେ, ମହାଭାରତର ଶାନ୍ତିପର୍ବରେ ଏହି ପ୍ରକାର ପ୍ରଶ୍ନର ଯଥାର୍ଥତା ମଧ୍ୟ ଆଲୋଚିତ ହୋଇଛି ଏବଂ ଶେଷରେ ଗୀତା ଯେପରି "ବୁଦ୍ଧୌ ଶରଣ ମନ୍ୱିଚ୍ଛ"—"ସ୍ୱ ବିଚାର ଶକ୍ତିରହିଁ ଆଶ୍ରୟ ନିଅ" ବୋଲି କହିଛନ୍ତି, ମହାଭାରତ ମଧ୍ୟ ଠିକ୍ ସେହି ଉପଦେଶ ଦେଇଛନ୍ତି, ଅବିକଳ ସେହି ଭାଷାରେ—

ତସ୍ମାତ୍ କୌନ୍ତେୟ ବିଦୁଷାଂ ଧର୍ମାଧର୍ମ ବିନିଶ୍ଚୟେ
ବୁଦ୍ଧିମାସ୍ଥାୟ ଲୋକେଽସ୍ମିନ୍ ବର୍ତ୍ତିତବ୍ୟଂ କୃତାତ୍ମନା

(୧୪୧-ଅଧ୍ୟାୟ)

(ତେଣୁ, ହେ କୌନ୍ତେୟ, ପଣ୍ଡିତ ଲୋକମାନେ ଏ ସଂସାରରେ ଧର୍ମ କ'ଣ ଓ ଅ-ଧର୍ମ କ'ଣ ଏ ବିଷୟରେ ନିଜ ବୁଦ୍ଧି ଉପରେହିଁ ନିର୍ଭର କରିବେ) ।

ଏ ସଂପର୍କରେ ପଞ୍ଚତନ୍ତ୍ରର ମନୋଜ୍ଞ ପ୍ରବଚନ ମଧ୍ୟ ସର୍ବଥା ସ୍ମରଣୀୟ—

ଯସ୍ୟ ନାସ୍ତି ସ୍ୱୟଂ ପ୍ରଜ୍ଞା, ଶାସ୍ତ୍ରଂ ତସ୍ୟ କରୋତି କିଂ
ନେତ୍ରାଭ୍ୟାଂତୁ ବିହୀନସ୍ୟ ଦର୍ପଣଃ କଂ କରିଷ୍ୟତି ?

(ଯାହାର ନିଜର ବିଚାର-ଶକ୍ତି ନାହିଁ, ଶାସ୍ତ୍ର ତା'ର କି ଉପକାର କରିବ ? ଯେ ଦୃଷ୍ଟିଶକ୍ତିହୀନ, ଦର୍ପଣ ତା ପ୍ରତି ଅନାବଶ୍ୟକ ନୁହେଁ କି ?)

ପୁଣି ମନେ ରଖିବାକୁ ହେବ ଯେ, ଗୀତା ନିଜେ ଆରମ୍ଭରୁହିଁ ବ୍ରାହ୍ମଣ୍ୟ ଧର୍ମର ଶ୍ରେଷ୍ଠ 'ଶାସ୍ତ୍ର' ବେଦର ବିରୋଧୀତା କରିଛନ୍ତି । ଗୀତା, ବେଦୋକ୍ତ ଯଜ୍ଞ ସବୁକୁ ପ୍ରଶ୍ରୟ ନ ଦେଇ ତାର ଏକ ବିପ୍ଳବାତ୍ମକ ତାତ୍ପର୍ଯ୍ୟ ଉପସ୍ଥାପିତ କରିବାକୁ ଯାଇଛନ୍ତି । ପୁଣି ହିନ୍ଦୁ ସମାଜର ସାଧାରଣ-ଗୃହୀତ ଜନ୍ମ-ପ୍ରତଷ୍ଠ ଜାତି-ବିଭାଗକୁ ମଧ୍ୟ ଗୀତା ସ୍ୱୀକାର କରିନାହାନ୍ତି । ଗୀତା ଭକ୍ତିବାଦର ଗ୍ରନ୍ଥ ହେଲେହେଁ ହିନ୍ଦୁ ସମାଜରେ ଅଧୁନା-ପରିବ୍ୟାପ୍ତ ପୌତ୍ତଳିକତା ମଧ୍ୟ ସେଥିରେ ପ୍ରଚଳିତ ହୋଇ ନାହିଁ ।

ଗୀତା ପୂର୍ବ ଅଧ୍ୟାୟଟିରେହିଁ (ପଞ୍ଚଦଶ, ପୁରୁଷୋତ୍ତମ ଯୋଗ) ପ୍ରଥମ କରି "ଶାସ୍ତ୍ର" ଶବ୍ଦଟି ବ୍ୟବହାର କରିଛନ୍ତି । କିନ୍ତୁ ସେଠି 'ଶାସ୍ତ୍ର'ର ଅର୍ଥ ଆଦୌ କୌଣସି ଗ୍ରନ୍ଥ ବା ପୁସ୍ତକ ନୁହେଁ । ତାର ଏକାନ୍ତରେ 'ଜ୍ଞାନ' ବା ଏକ ବିଶେଷ ଧରଣର ଜ୍ଞାନ, ସଂପୃକ୍ତ ଶ୍ଳୋକ ଦୁଇଟି ଉଦ୍ଧାର କରି ଦେଉଛୁ—

ଯୋ ମାମେବ ମସଂମୂଢୋ ଜାନାତି ପୁରୁଷୋତ୍ତମ
ସ ସର୍ବବିଦ୍ ଭଜତି ମାଂ ସର୍ବଭବେନ ଭରତ ।

ଇତ ଗୁହ୍ୟତମଂ 'ଶାସ୍ତ୍ରଂ ଇଦମୁକ୍ତଂ ମୟାନଘ
ଏତଦ ବୁଦ୍ଧ୍ୱା ବୁଦ୍ଧିମାନ ସ୍ୟାତ୍ କୃତକୃତ୍ୟଶ୍ଚ ଭରତ୍ ।

(ଯେ ମତେ ଏହିପରି ମୋହ-ବିମୁକ୍ତ ଭବରେ ପୁରୁଷୋତ୍ତମ ବୋଲି ଜାଣିପାରେ ସେ ସର୍ବବିଦ ହୋଇ ଉଠିବ ଏବଂ ସେହିହିଁ ମତେ ସର୍ବଭବରେ ଉପାସନା କରିବ । ତୁମକୁ ମୁଁ ଏହି ଗୋପନୀୟତମ "ଶାସ୍ତ୍ର" (ଜ୍ଞାନ) ଯାହା କହିଲି, ତାହା ଉତ୍ତମରୂପେ ଅବବୋଧ କରିପାରିଲେ ଯେ, କୌଣସି ଲୋକ ମଧ୍ୟ ବୋଧିଯୁକ୍ତ ଓ ଏ ସଂସାରରେ କୃତକୃତ୍ୟ ହୋଇ ପାରିବ) ।

ତେଣୁ ଏହି ଷୋଡଶ ଅଧ୍ୟାୟରେ ବ୍ୟବହୃତ ଶାସ୍ତ୍ର ଶବ୍ଦକୁ ମଧ୍ୟ, ପାଠକେ କେବଳ ଖଣ୍ଡିଏ ଖଣ୍ଡିଏ ପୁରୁଣା ପୋଥି ବୋଲି ଧରି ବସିବେନ ଏବଂ ମନେ କରିବେନି ଯେ, ସେଥିରେ ଯାହାସବୁ କୁହାଯାଇଛି ତାହା ବିନା ବିଚାରରେ ମାନିନିବାକୁ ଗୀତା ତୁମକୁ ବାଧ୍ୟ କରୁଛନ୍ତି । ପ୍ରାଚୀନ ଶାସ୍ତ୍ରମାନଙ୍କର ଯୁଗୋପଯୋଗୀ ପରିବର୍ତ୍ତନ କରି ପ୍ରତ୍ୟେକ ଧର୍ମର ସଂସ୍କାର ଚାଲିଛି ଓ ଚାଲିବ । ସବୁଠାରୁ ରକ୍ଷଣଶୀଳ ଓ ମତାନ୍ଧ ଧର୍ମ ହେଉଛି ଇସ୍‌ଲାମ । କିନ୍ତୁ ଆତାତୁର୍କ କେମାଲଙ୍କର ନବଗଠିତ ତୁର୍କୀରେ ସେ ଧର୍ମର ଆଦି ବେଶ ଓ ସମସାମୟିକ ବେଶ ଭିତରେ କି ତଫାତ ବୁଝନ୍ତୁ ପାଠକେ ।

ତେବେ, ଶାସ୍ତ୍ର-ବିଧି-ବିଧାନ ମାନିବା ବିଷୟରେ ଗୀତା ଏହି ଅଧ୍ୟାୟର ଶେଷ ଶ୍ଳୋକ ଦୁଇଟିରେ ଯାହା କହିଛନ୍ତି, ତାହା ମଧ୍ୟ ଏକାବେଳେ ଉଡାଇ ଦେଇ ହେବନ । ଶାସ୍ତ୍ର ସବୁ ବିଶେଷ ବିଶେଷ ଦେଶ, ଜଳବାୟୁ ଓ ସମାଜକୁ ଆଖିରେ ରଖି ରଚିତ ହୋଇଥାନ୍ତି । ସେହି ଦେଶ, ସେହି ଜଳବାୟୁ ଓ ସେହି ସମାଜରେ ରହି ଲୋକେ କିପରି ସହଜରେ ଧର୍ମ ଜୀବନ ଯାପନ କରିପାରିବ ଭିନ୍ନ ଭିନ୍ନ ଶାସ୍ତ୍ରସବୁ ସେହି ପ୍ରକାର ନିର୍ଦ୍ଦେଶ ଦେଇଥାନ୍ତି । ଏଗୁଡ଼ିକହିଁ ପ୍ରତ୍ୟେକ ଧର୍ମର 'ଆଚାର' ବିଭାଗ । ଧର୍ମସାଧନାର ପ୍ରଥମ ପାଦରେ ପ୍ରତ୍ୟେକ ସାଧକର କେତେଗୁଡ଼ିଏ ଆଚାର ଏକାନ୍ତ ଆବଶ୍ୟକ । ଉଦାହରଣ ସ୍ୱରୂପ ସବୁ ଧର୍ମରେ, ଉପବାସ ଧର୍ମ-ସାଧନାର ଏକ ଅପରିହାର୍ଯ୍ୟ ଅଙ୍ଗ । ସେହିପରି ମଧ୍ୟ ଖାଦ୍ୟାଖାଦ୍ୟ ବିଚାର । ଏଗୁଡ଼ିକ ଏକାବେଳେକେ ଅର୍ଥହୀନ ନୁହନ୍ତି । ହିନ୍ଦୁ ପାଇଁ ଦୈନିକ ତୁଳସୀ ସେବନ ବା ବେଲପତ୍ର ସେବନର ଶାସ୍ତ୍ରୀୟ ବ୍ୟବସ୍ଥା ଥିଲା । ଏବେ ବୈଜ୍ଞାନିକ ପରୀକ୍ଷା ପରେ ଜଣାଯାଉଛି ଯେ, ତୁଳସୀ ପତ୍ରରେ ସୁନା ଅଛି, ଯାହା ଉଚ୍ଚକୋଟିର ରସାୟନ ଏବଂ ବେଲପତ୍ର ଭିଟାମିନ୍-ପୂର୍ଣ୍ଣ । ଉତ୍କଳର ଗ୍ରାମେ ଗ୍ରାମେ ସରଳା ପଲ୍ଲୀସ୍ତ୍ରୀଏ ଗାଁର ଠାକୁର ଠାକୁରାଣୀଙ୍କୁ ଏବେ ବି ଯେଉଁ ଭୋଗ ଦିଅନ୍ତି ତାହା ପ୍ରଧାନତଃ ଲିଆ, ଦୁଧ, ଗୁଡ଼, ନଡ଼ିଆ ଓ ପାଚିଲା କଦଳୀର ମିଶ୍ରଣ । ଏ ସବିଟିକ ମିଶାଇଦେଲେ; ଆମେ ଆଜିର ଭାଷାରେ ଯାହାକୁ ବାଲାନ୍‌ସେଡ୍ ଫୁଡ୍ (Balanced Food) ବା 'ସୁସମ ଖାଦ୍ୟ' କହୁଛୁ ତାର ଏକ ଉତ୍କୃଷ୍ଟ ନମୁନା ଆମେ ପାଉଁ । କାଲି ପର୍ଯ୍ୟନ୍ତ, ଆମର ଗ୍ରାମବାସୀଙ୍କର ଏହାହିଁ ଥିଲା ଉତ୍ତମ ଭୋଜନ । ଆମେ ତାକୁ ଛାଡ଼ୁଛୁ ମାନେ, ଆମ ଶାସ୍ତ୍ରର ବିଧି ବିଧାନକୁ ଛାଡ଼ୁଛୁ । କିନ୍ତୁ ତା ପରିବର୍ତ୍ତରେ ପାଉଛୁ କ'ଣ ? ତାର ଉତ୍ତର ପ୍ରତ୍ୟେକ ପାଠକ ଦେଇପାରିବେ ।

ତେଣୁ କାମକାରୀ (ସ୍ୱେଚ୍ଛାଚାରୀ) ହୋଇ ନିଜ ଧର୍ମର ଶାସ୍ତ୍ରମାନଙ୍କର ବିଧିବିଧାନକୁ ଏକାବେଳେକେ ଉଡ଼ାଇ ଦେବା ଯେପରି ଏକ ପରମ ପ୍ରମାଦ ସେହିପରି ପ୍ରମାଦ ମଧ୍ୟ ବୁଦ୍ଧିବିଚାର ପ୍ରୟୋଗ ନକରି, ଦେଶ କାଳ ପାତ୍ର ଭେଦକୁ ଦୃଷ୍ଟିରେ ନ ରଖି, ଧର୍ମ ନାମରେ ଯେ କୌଣସି ପ୍ରାଚୀନ ଶାସ୍ତ୍ରର ପ୍ରତି ଅକ୍ଷରକୁ ପାଳନ କରି ବସିବା ।

ତେଣୁ ଗୀତାର ଶେଷ ନିଷ୍ପତ୍ତି ଆମ ପ୍ରତି—'ବୁଦ୍ଧୌ ଶରଣ ମନ୍ୱିଚ୍ଛ' ।

ଏବଂ ଗୀତାର ବାଣୀର ସାର୍ବଜନୀନତାର ପରମ ପ୍ରମାଣ ଏହି ଯେ, ଏସବୁ କରିସାରିଲା ପରେ ମଧ୍ୟ ଗୀତା ପୁଣି ପରବର୍ତ୍ତୀ ଅଧ୍ୟାୟରେ ମାନିଛନ୍ତି

ଯେ, ଶାସ୍ତ୍ରର ବିଧି-ବିଧାନ ନ ମାନି ମଧ୍ୟ ଅଧ୍ୟାତ୍ମ ଜୀବନ ସମ୍ଭବ । କିନ୍ତୁ ସେଠି ଶାସ୍ତ୍ରର ସ୍ଥାନ ଅଧିକାର କରିବ 'ଶ୍ରଦ୍ଧା' । ଅର୍ଥାତ ଆମେ ପୁଣି ପୂର୍ବ ବା ପଞ୍ଚଦଶ ଅଧ୍ୟାୟର ପୁରୁଷୋତ୍ତମ ଯୋଗକୁ ଫେରିଯିବା । ସାଧକର ଯଦି ପ୍ରାଣମୟ ଓ ଚେତନାମୟ ଅନୁଭବହିଁ ଆସିଯାଏ ଯେ, ଏ ଜୀବନ, ଏ ସଂସାର ଓ ଏ ସୃଷ୍ଟିର ଗୁରୁ ନାହିଁ, ଶାସ୍ତ୍ର ନାହିଁ, ଚର୍ଚ୍ଚ ନାହିଁ, ମନ୍ଦର ନାହିଁ, ମସଜିଦ ନାହିଁ; ଏ ଭିତରୁ କେହି ହେଲେ ମନୁଷ୍ୟର ପ୍ରକୃତ ଶରଣ ନୁହନ୍ତି ଏବଂ ଏକମାତ୍ର ଶରଣ, ଏକମାତ୍ର ସଖା, ଏକମାତ୍ର ସମ୍ପଦ ହେଉଛନ୍ତି ସେହି ଯେ କି ଏ ସୃଷ୍ଟିର କ୍ଷର ଓ ଅକ୍ଷରର ଉପରେ , ପୁରୁଷୋତ୍ତମ ରୂପେ ବିଦ୍ୟମାନ; ତେବେ ସେ ସାଧକର ସାମାଜିକ ବା ଶାସ୍ତ୍ରୀୟ ବିଧିବିଧାନ ମାନିବା ଆଉ ଆବଶ୍ୟକ କ'ଣ ? ସେ ତ ସେଠି ପହଞ୍ଚି ସାରିଲେଣି ଯାହା କି ସବୁ ଶାସ୍ତ୍ର; ସବୁ ମନ୍ଦର, ସବୁ ଗୁରୁର ଉପରେ ।

ହିନ୍ଦୁ ଧର୍ମ ସାଧନାରେ; ପ୍ରଥମ ଅବସ୍ଥାରେ ନିରାମିଷ ଭୋଜନ ଥାଏ । କିନ୍ତୁ ପରମହଂସତ୍ୱ ପ୍ରାପ୍ତିପରେ ଖାଦ୍ୟାଖାଦ୍ୟର ବିଚାର ଆଉ ନ ଥାଏ । ସବୁଧର୍ମର ଶାସ୍ତ୍ର ସମ୍ବନ୍ଧରେ ମଧ୍ୟ ସେଇକଥା କୁହାଯାଇ ପାରେ । ଧର୍ମସାଧନାର ପ୍ରଥମ ସ୍ତରରେ ପ୍ରତ୍ୟେକ ଶାସ୍ତ୍ର ସହାୟକ, ଏହି ଅର୍ଥରେ ଯେ, ମନୁଷ୍ୟର ଶ୍ରଦ୍ଧାକୁ ସେ ସବୁ ଈଶ୍ୱରାଭିମୁଖୀ କରଇଥାନ୍ତି । କିନ୍ତୁ ଯାର ଶ୍ରଦ୍ଧା ମୂଳରୁହିଁ ଈଶ୍ୱରଙ୍କ ପାଇଁ ତୀବ୍ର ଓ ଗଭୀର ଓ ନିରବିଚ୍ଛିନ୍ନ ତାଙ୍କର ଶୁଷ୍କ ବିଧି-ବିଧାନ ସବୁର କି ଆବଶ୍ୟକତା ?

ଶେଷରେ ଦୈବୀ ଓ ଆସୁରୀ ମନୁଷ୍ୟମାନଙ୍କର ସମ୍ପର୍କରେ ଏବଂ ଆଧ୍ୟାତ୍ମିକ ସାଧନାରେ ଶାସ୍ତ୍ର ପାଣ୍ଡିତ୍ୟର ଆବଶ୍ୟକତା ସମ୍ପର୍କରେ ପରମହଂସ ରାମକୃଷ୍ଣଙ୍କର କେତୋଟି ପରମବାଣୀ ପାଠକ ପାଠିକାଙ୍କୁ ପରିବେଷଣ କରି ବିଦାୟ ନେଉଛୁ ।

"ଧର୍ମ-ବା-ଈଶ୍ୱର ସଂପୃକ୍ତ ଯାହା କିଛି ଆଲୋଚନା ତାହା ପ୍ରତି ବୀତ-ସ୍ପୃହତାରୁହିଁ ତୁମେ ସଂସାରୀ ବା ଆସୁରୀ ଲୋକ କିଏ ତାହା ସହଜରେ ଚିହ୍ନି ପାରିବ । ଈଶ୍ୱର କୀର୍ତ୍ତନ ତା ପକ୍ଷରେ ଅସହ୍ୟ । କେହି ଧର୍ମ-ପଥରେ ଯିବାର ସେ ସହିବନି ଏବଂ ସକଳ ଧର୍ମୀୟ ଅନୁଷ୍ଠାନ ତାର କ୍ରୋଧର ବସ୍ତୁ । ସାଧୁ ସନ୍ନ୍ୟାସୀମାନେ ତାର କେବଳ ପରିହାସର ପାତ୍ର । ସଂସାରାସକ୍ତ ଲୋକର ଏଇ ସବୁ ହେଲା ପ୍ରକାଶିତ ଲକ୍ଷଣ ।"

"ସଂସାରସକ୍ତି ଭୟଙ୍କର ଓ ବିସ୍ମୟକର ! ଘୋର ବ୍ୟର୍ଥତା, ଦୁରବସ୍ଥା ଓ ଦୈନ୍ୟରେ ପଡ଼ ମଧ୍ୟ ଲୋକେ ସଂସାରସକ୍ତି ଛାଡ଼ିପାରନ୍ତି ନାହିଁ । ପ୍ରିୟତମା ସ୍ତ୍ରୀ ମରିଗଲା ବା ଛାଡ଼ି ପଳାଇଲା । ସ୍ୱାମୀ ଅଳ୍ପକେ ସେ ସବୁ ପାଶୋରି ଦେଇ ପୁଣି ବିବାହ କରିବସେ । ପ୍ରାଣସମ ପୁତ୍ରର ମରଣରେ ଦୁଃଖ ମାଡ଼ିବସେ, କିନ୍ତୁ ପିତା ମାତ୍ର କେତୋଟି ଦିନରେ ସେ ସବୁ ଭୁଲି ପୁଣି ସଂସାର କାମରେ ଲାଗିଯାଏ । ମା, ସଂସାର ଫଟେଇ କାନ୍ଦେ, କିନ୍ତୁ ଦେଖିବ ଯେ, ପରମୁହୂର୍ତ୍ତରେ ସେ ପିଲାର ଅଳଙ୍କାରପତ୍ର ସଜାଡ଼ି ରଖୁଛି ଏବଂ ନିଜର ବେଶ-ବାସ ପ୍ରତି ବେଶ୍ ଧ୍ୟାନ ଦେଇ ଚାଲିଛି ।

ଏଣେ ଦି:ତିନୋଟି ଝିଅ ବିଭାକରି ବାପ ମା ଋଣଗ୍ରସ୍ତ ହୋଇ ସାରିଲେଣି, ତେଣେ କିନ୍ତୁ ସନ୍ତାନୋତ୍ପାଦନର ଶେଷ ନାହିଁ । ମକଦ୍ଦମାରେ ସମ୍ପତ୍ତି ଉଡ଼ିଗଲାଣି, କିନ୍ତୁ ତଥାପି ମକଦ୍ଦମା ଚାଲିଛି । ଯେତେକ ପିଲା ହେଲେଣି ସେମାନଙ୍କୁ ଭଲକରି ଖୁଆଇ-ପିଆଇବାକୁ ସମ୍ବଳ ନାହିଁ, ଅଥଚ ବର୍ଷକୁ ବର୍ଷ ନୂତନ ବଚ୍ଚାର ଆମଦାନୀ ଚାଲିଛି ! ହାୟରେ ସଂସାର !"

"ଜଗତରେ ଦି'ପ୍ରକାର ମଣିଷହିଁ ଆମେ ଦେଖୁଁ । କେତେକ କେବଳ ଆକାରରେ ମଣିଷ, ଭିତରେ ସେଗୁଡ଼ାକ ସାଧାରଣତଃ ନୀଚ ଓ ଇତର । ସେମାନଙ୍କର ଦୁଇ ଧ୍ରୁବତାରା ହେଲେ କାମ ଓ କାଞ୍ଚନ, ଆଉ କିଛି ନୁହେଁ । ଅନ୍ୟଯେଉଁ କେତେକ ମନୁଷ୍ୟ, ସେମାନେ ଆଧ୍ୟାତ୍ମିକ ଉନ୍ନତି ଖୋଜିଥାନ୍ତି ।"

କେହି ଲୋକ ପରମହଂସ ଦେବଙ୍କୁ ପଚାରିଲେ, "ଆପଣ କେଉଁ ଶାସ୍ତ୍ରକୁ ମାନି ଚଳନ୍ତି ?" ପରମହଂସଦେବ ଏଇ ଉତ୍ତର ଦେଇଥିଲେ । "ମୋର ଅନ୍ତରସ୍ଥ ଦେବତାଙ୍କୁ ମୁଁ ସର୍ବଦା ପ୍ରାର୍ଥନା କରେ ମତେ ଚଳାଇବାକୁ ଏବଂ ସେହି ଦେବତା ମତେ ଯେସବୁ ନିର୍ଦ୍ଦେଶ ଦିଅନ୍ତି ମୁଁ ସେହିସବୁ କାମକରି ଆସିଛି । ଫଳରେ ମୁଁ ଜୀବନରେ କୌଣସି ହେଲେ ପ୍ରମାଦରେ ପଡ଼ିନାହିଁ । ଏବଂ ମୁଁ ମନେ କରୁନି ଯେ ମୁଁ ଯାହା କରିଆସିଛି ବା କହୁଛି ସେ ସବୁ କେବେହେଲେ କୌଣସି ଶାସ୍ତ୍ର-ଜ୍ଞାନର ବିରୋଧୀ ହେବ ।"



ଇତିଶ୍ରୀ ମହାଭାରତେ ଶତସହସ୍ରାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍ ଭଗବଦ୍ ଗୀତା ସୂପନିଷତ୍ସୁ ବ୍ରହ୍ମ ବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସଂବାଦେ ଦୈବାସୁର ସମ୍ପଦ ବିଭାଗ ଯୋଗୋ ନାମ ଷୋଡଶୋଽଧ୍ୟାୟ ।

## ସପ୍ତଦଶ ଅଧ୍ୟାୟ

# ଶ୍ରଦ୍ଧାତ୍ରୟ ବିଭାଗ ଯୋଗ

ଅଧ୍ୟାୟ ଦୀପିକା—

ପୂର୍ବ ଅଧ୍ୟାୟରେ ଗୀତା ମନୁଷ୍ୟମାନଙ୍କୁ ଦୈବ ଓ ଅସୁର ଏହିପରି ଦୁଇ ପ୍ରଶସ୍ତ ବିଭାଗରେ ବିଭକ୍ତ କରିଦେଇ ହୁଏତ ନିଶ୍ଚିନ୍ତ ରହି ପାରିଲେ ନାହିଁ । କାରଣ ପୂର୍ବ ଅଧ୍ୟାୟରେ ଯେପରି କହିଛୁ, ମନୁଷ୍ୟ ମାତ୍ରେହିଁ ଏକ ମିଶ୍ର ଜୀବ । ଆମେ ଆମର ପରିଚିତ ସାମାଜିକ ପରିଧି ଭିତରେ ବହୁ ନର ଓ ନାରୀଙ୍କୁ ଭେଟୁ ନାହୁଁ କି, ଯେଉଁମାନଙ୍କୁ ଏକାବେଳେକେ ଦୈବୀ ବା ଏକାବେଳେକେ ଆସୁରୀ କୁହାଯାଇ ନପାରେ ? ଆମେ ପ୍ରତ୍ୟେକେହିଁ ଦୈବୀ ଓ ଆସୁରୀର ମିଶାମିଶି, କାହାଠି ବା ଦୈବୀ ବେଶି ଆସୁରୀ କମ୍; କାହାଠି ବା ଠିକ୍ ବିପରୀତ ଅବସ୍ଥା । ଏଇ କେବଳ ପାର୍ଥକ୍ୟ ।

ମନୁଷ୍ୟମାନଙ୍କୁ ଦୈବୀ ଓ ଆସୁରୀ ଭାବରେ ଭାଗ ଭାଗ କରି କେତେକଙ୍କୁ ସମ୍ମାନ ଦେବା ଏବଂ ଆଉ କେତେକଙ୍କୁ ଘୃଣା କରିବା; ଏହାମଧ୍ୟ ଗୀତାପରି ମହା ଗ୍ରନ୍ଥର ଆଦର୍ଶ ହୋଇ ନପାରେ । ଗୀତାପରି ଗ୍ରନ୍ଥର ଆବିର୍ଭାବ ଓ ସମାଜର ପଶୁକୁ ମନୁଷ୍ୟ ଓ ମନୁଷ୍ୟକୁ ଦେବତା କରିବା ପାଇଁ—ଆମକୁ ଅବିଦ୍ୟା ଓ ଅ-ବିଦ୍ୟା-ଜନିତ ପ୍ରମାଦରୁ ମୁକ୍ତକରି ବିଦ୍ୟାର ସ୍ୱର୍ଣ୍ଣପଥ ଦେଇ 'ବୋଧି'ର ଆଲୋକମୟ ସ୍ତରରେ ପହଁଚାଇବା ପାଇଁ । ଗୀତା ନିଶ୍ଚୟ ଲେଖା ହୋଇଥିଲା, ଆମର ସ୍ୱାଭାବିକ ଭ୍ରମ ଓ ଦୁର୍ବଳତା ପାଇଁ, ସେ ସବୁରୁ ମୁକ୍ତହୋଇ ଉତ୍ତମ ହେବାର ସୁଯୋଗ ଆମକୁ ନଦେଇ ଆମ ପାଇଁ ଚିରକାଳ ନରକ ବାସର ବ୍ୟବସ୍ଥା କରିବାକୁ ।

ଅବିଦ୍ୟାରୁ ଉଠି ବିଦ୍ୟା ଦେଇ ମାନବାତ୍ମାର ଏହି ବାହୁଡା ଯାତ୍ରାରେ କ କି ବାଧା ଆସିପାରେ, ସାଧକକୁ କ'ଣ କ'ଣ ଅଭାବ ଅସୁବିଧାର ସମ୍ମୁଖୀନ ହେବାକୁ ହେବ; ପାଠକେ ମନେରଖନ୍ତୁ ଯେ, ସେଇଥିକୁ ଜୋର ଦେଇ ସ୍ମରଣ କରାଇବା ଲକ୍ଷ୍ୟରେହିଁ; ଟୀକା ବୈଚିତ୍ର୍ୟର ପ୍ରଭେଦ ବର୍ଣ୍ଣନା କରିଛନ୍ତି ଏବଂ ସେହି ଲକ୍ଷ୍ୟରେହିଁ ଏହି ଶ୍ରଦ୍ଧାତ୍ରୟ ଅଧ୍ୟାୟ ମଧ୍ୟ ରଚିତ ।

ପୂର୍ବ ଅଧ୍ୟାୟର ଶେଷରେ ଗୀତା ସୂଚନା ଦେଲେ ଯେ, ତଥାକଥିତ ଆସୁରୀ ଜୀବନର ମୂଳଉପାଦାନ ହେଲା—କାମ, କ୍ରୋଧ ଓ ଲୋଭ । ବୌଦ୍ଧ

ସାହିତ୍ୟରେ ଏହି କାମ ବା କାମନା, 'ତୃଷ୍ଣା' ନାମରେହିଁ ପରିଚିତ । କାମ କହିଲେ କେବଳ ଯୌନ ଭୋଗ ବୁଝାଏ ନାହିଁ—ବୁଝାଇବ ସକଳ ପ୍ରକାର ତୃଷ୍ଣା ବା କାମନା—ଭୋଜନ-ତୃଷ୍ଣା, ସୁଖ-ତୃଷ୍ଣା, ଯୌନ-ତୃଷ୍ଣା, ଅଧିକାର-ତୃଷ୍ଣା ଇତ୍ୟାଦି, ମନୁଷ୍ୟର ସକଳ ପାର୍ଥିବ ତୃଷ୍ଣା । ଏଗୁଡକ ନ ପାଇଲେ ଚିତ୍ତରେ ଯେଉଁ ପ୍ରତିକ୍ରିୟା ହୁଏ ତାର ନାମ କ୍ରୋଧ, ଯାହାହିଁ ସମାଜରେ ଈର୍ଷା, ଅସୂୟା, ପ୍ରତିହିଂସା, ଷଡଯନ୍ତ୍ର ଓ ହତ୍ୟା ଇତ୍ୟାଦି ନାନା ଭବରେ ପ୍ରକାଶିତ ହୋଇଥାଏ । କାମ ଓ କ୍ରୋଧର ଚରିତାର୍ଥତା ପାଇଁ ନିତାନ୍ତ ଆବଶ୍ୟକ ଧନସମ୍ପଦ ପ୍ରତିପତ୍ତି ଇତ୍ୟାଦି, ଏକ କଥାରେ ଯାହାକୁ କୁହାଯାଏ, 'ଲୋଭ' ।

ସ୍ୱାଧୀନତୋତ୍ତର ଭାରତବର୍ଷରେ ରାଜନୀତି ଯେ ଅତିମାତ୍ରାରେ ବୀଭତ୍ସ ଓ କଳୁଷିତ ହୋଇ ଉଠିଲା, ତାର ମୂଳରେ ଗୀତାର ଏହି ସ୍ୱଳ୍ପ-ବିଶ୍ଳେଷିତ ବ୍ୟାଧିହିଁ ସଂକ୍ରାମକ ଆକାରରେ ଦେଶମୟ ହୋଇଯାଇଛି କି ନାହିଁ ପାଠକେ ତାହା ନିଜେ ବିଚାର କରନ୍ତୁ ଏବଂ ସେଇଥିରୁ ଜାଣିରଖନ୍ତୁ ଯେ, ଗୀତାର ବାଣୀ କିପରି ସର୍ବକାଳୀନ, ସାର୍ବଜନୀନ ଓ ସାର୍ବଭୌମ । ଗୀତାର ବାଣୀ ସବୁକୁ ଆମେ ଆମର ଦୈନିନ୍ଦନ ଜୀବନରେ ମାନି ନ ଚଳିଲେ, ବ୍ୟକ୍ତିଗତ ଓ ସାମୂହିକ ଜୀବନରେ ଆମେ ଯେ କି ବୀଭତ୍ସ ଆସୁରୀ ଜୀବନହିଁ ଯାପନ କରିବା, ସ୍ୱାଧୀନତା ପରର ସମଗ୍ର ଭାରତୀୟ ଜାତୀୟ ଜୀବନହିଁ ତାର ଦେଦୀପ୍ୟମାନ ପ୍ରମାଣ ।

ଏବଂ ଏହାର ବିପରୀତରେ ଗୀତାବର୍ଣ୍ଣିତ 'ଦୈବୀ-ସମ୍ପଦ' କି ମହାନ୍ କି ପରମ, କି ମନୋଜ୍ଞ ହୋଇପାରେ ଏବଂ ତାହା କେବଳ ଗୋଟିଏ ମାତ୍ର ଲୋକର ଜୀବନରେ ପରିସ୍ଫୁଟ ହୋଇ ମଧ୍ୟ ସମଗ୍ର ବିଶ୍ୱକୁ କି ପ୍ରକାର ପ୍ରଭାବିତ କରିପାରେ ଗୀତା ବାଣୀର ମୂର୍ତ୍ତିମନ୍ତ ପ୍ରକାଶ ରୂପେ ଗାନ୍ଧି-ଚରିତ୍ର ଭିତରେହିଁ ତାହା ମର୍ମସ୍ପର୍ଶୀ ରୀତିରେ ପ୍ରମାଣିତ ହୋଇ ଯାଇଛି ।

ଗୀତା ଯେ ପୂର୍ବ ଅଧ୍ୟାୟରେ ମନୁଷ୍ୟମାନଙ୍କୁ ଦୈବୀ ଓ ଆସୁରୀ ବୋଲି ଦି'ଭାଗରେ ବିଭକ୍ତ କରିଦେଲେ; ଆମେ ଗୀତା ପାଠକେ ଆଉ ନିଜ ନିଜକୁ ପଚାରିବା ଉଚିତ ନୁହେଁ କି ଆମ ନିଜର ଅବସ୍ଥିତି କେଉଁ ବିଭାଗରେ ? ସେହି ପ୍ରଶ୍ନ ଓ ତାର ପ୍ରକ୍ରିୟାହିଁ ସେହି ଅଧ୍ୟାୟଟିର ଆମ ପ୍ରତି ପ୍ରଥମ ତାତ୍ପର୍ଯ୍ୟ । ଗୀତା ଚାହାନ୍ତି ଆମେ ବରାବର ବୁଦ୍ଧିଯୋଗ ଦେଇ-ବିଶ୍ଳେଷଣ କରି ଚାଲିବା । ଯଦି ଆମେ ମୋଟାମୋଟି ଭାବରେ ଦୈବୀ ବିଭାଗରେ ପଡୁଛୁ, ତେବେ ଆମେ ଠିକ୍ ବାଟରେ ଚାଲୁଥିବାର ଆଶ୍ୱାସନା ପାଇବା । ଯଦି ଆସୁରୀ-ଭାଗରେ ପଡୁଛୁ,

ତେବେ ଆମେ ସଙ୍ଗେ ସଙ୍ଗେ ମୁହଁ ଫେରାଇ ଆର ବାଟରେ ଯାତ୍ରା ଆରମ୍ଭ କରିବା ଉଚିତ । ସେହି ଯାତ୍ରା ହେବ କାମ-କ୍ରୋଧ-ଓ-ଲୋଭ-ପ୍ରବଣ ଜୀବନର ବିପରୀତ ଦିଗରେ ଏବଂ ଶାସ୍ତ୍ରର ବିଧି-ବିଧାନ ପାଳନ, ଯାତ୍ରାର ଅନ୍ତତଃ ପ୍ରଥମ ପାଦରେ ଯାତ୍ରୀକୁ ସହାୟକ ହେବ ବୋଲି ଗୀତା ତାର ମଧ୍ୟ ସୂଚନା ଦେଲେ ।

କିନ୍ତୁ ଜଗତରେ ଅଗଣିତ ନରନାରୀ ଅଛନ୍ତି; ଯେଉଁମାନେ କୌଣସି ହେଲେ ଶାସ୍ତ୍ରର ନର୍ଦ୍ଦେଶ ମଧ୍ୟ ଜାଣନ୍ତି ନାହିଁ । ସେମାନଙ୍କ ପାଇଁ କଣ ଧର୍ମ-ଜୀବନ ବା ଈଶ୍ୱର ନାହାନ୍ତି ?

ଗୀତା କେବଳ ଏହି ଅଧ୍ୟାୟ ନୁହେଁ, ବହୁ ସ୍ଥାନରେ ଘୋଷଣା କରି ସାରିଛନ୍ତି ଯେ, ଧର୍ମୀୟ ବା ଆଧ୍ୟାତ୍ମିକ ଜୀବନରେ ଶାସ୍ତ୍ର-ଜ୍ଞାନ ବା ପୋଥିପାଠ ଆଦୌ ମୁଖ୍ୟକଥା ନୁହେଁ । ମୁଖ୍ୟକଥା ହେଉଛି ଶ୍ରଦ୍ଧା । ମନୁଷ୍ୟ-ବ୍ୟକ୍ତିତ୍ୱ ଭିତରେ ଏହା ଏପରି ମୁଖ୍ୟ ଆଦର୍ଶ ଗୁଣ ଯେ; ଗୀତା ପରମ ଉଦାରତାରେ ସପ୍ତମ ଅଧ୍ୟାୟରେ ଘୋଷଣା କରି ସାରିଛନ୍ତି କି—

ଯୋ ଯୋ ଯାଂ ଯାଂ ତନୁଂ ଭକ୍ତଃ ଶ୍ରଦ୍ଧୟାର୍ଚ୍ଚିତୁ ମିଚ୍ଛତି
ତସ୍ୟ ତସ୍ୟାଚଳାଂ ଶ୍ରଦ୍ଧାଂ ତାମେବ ବିଦଧାମ୍ୟହଂ । ୨୧ ।

( ଯେ କୌଣସି ସାଧକ ଈଶ୍ୱରଙ୍କୁ ଯେପରି ଭାବରେ କଳ୍ପନା କରୁ ନା କାହିଁକି, ଯଦି ଶ୍ରଦ୍ଧାର ସହିତ ଉପାସନା କରନ୍ତି, ମୁଁ ତାଙ୍କ ଭିତରେ ସେହି ଶ୍ରଦ୍ଧାକୁ ନିଷ୍ଠାବାନ୍ (ଅଚଳା) କରାଇବାରେ ସାହାଯ୍ୟ କରିଥାଏ ) ।

ଗୀତା ଏହି ଆଲୋଚ୍ୟମାନ ଅଧ୍ୟାୟର ତୃତୀୟ ଶ୍ଳୋକରେ ପୁଣି ଘୋଷଣା କରିବେ ଯେ; "ଶ୍ରଦ୍ଧାମୟୋଽୟଂ ପୁରୁଷଃ ଯୋ ଯଚ୍ଛ୍ରଦ୍ଧଃ ସ ଏବ ସଃ" ଅର୍ଥାତ୍ ପ୍ରତ୍ୟେକ ମନୁଷ୍ୟର ବ୍ୟକ୍ତିତ୍ୱଟି କେବଳ ଟେକେଟେକ 'ଶ୍ରଦ୍ଧା'ର ସମାହାର ମାତ୍ର । ଯେଉଁ ଲୋକର ଶ୍ରଦ୍ଧା ସବୁ ଯେଉଁ ଆଡକୁ, ସେ ଲୋକ ଠିକ୍ ସେହିପରି ହିଁ ହୋଇଥାଏ ।

ପୂର୍ବ ଅଧ୍ୟାୟରେ ମନୁଷ୍ୟମାନଙ୍କୁ ମୋଟାମୋଟି ଭାବରେ ଦୈବ ଓ ଆସୁର ବୋଲି ଯେଉଁ ବିଭାଗ କରାଯାଇଛି, ତାହା ଅବଶ୍ୟ ଏହି ପ୍ରକାର 'ଶ୍ରଦ୍ଧା'ର ସ୍ତରରୁ । କେବଳ ଶ୍ରଦ୍ଧାର ବିସ୍ତରରୁ ହିଁ ମନୁଷ୍ୟ ଦୈବୀ ବା ଆସୁରୀ ହୋଇପାରେ । ତେବେ ଶ୍ରଦ୍ଧା କ'ଣ ?

ଗୀତା ଏହି ଅଧ୍ୟାୟରେ ତେଣୁ ଧର୍ମ ସାଧନାର ସେହି ମୁଖ୍ୟ ଉପାଦାନ 'ଶ୍ରଦ୍ଧା'ର ଆଲୋଚନା କରିବାକୁ ଯାଉଛନ୍ତି, ଯେପରିକି ଆମେ ପ୍ରତ୍ୟେକେ ଗଭୀର ଭାବରେ ଆତ୍ମ-ବିଶ୍ଳେଷଣ କରି, ଆମର ଶ୍ରଦ୍ଧାଟା ପ୍ରକୃତରେ କେଉଁ ଆଡକୁ ଅଭିମୁଖୀ ହୋଇଛି ଏବଂ କେଉଁଆଡକୁ ତାହା ମୁହାଁଇବା ଉଚିତ, ତାହା ଜାଣିପାରି, ସେହି ଅନୁଯାୟୀ ଆମେ ଚେଷ୍ଟାବାନ ହେବା। ପାଠକେ ଏହି ଦୃଷ୍ଟିରୁ ହିଁ ଏହି ଅଧ୍ୟାୟଟିକୁ ପଢ଼ିବାକୁ ଅନୁରୋଧ । ବର୍ତ୍ତମାନ ଅଧ୍ୟାୟର ଆଲୋଚନା ହେଉ ।

ଅର୍ଜ୍ଜୁନ ଉବାଚ

(୧)

ଯେ ଶାସ୍ତ୍ରବିଧିମୁତ୍ସୃଜ୍ୟ ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ
ତେଷାଂ ନିଷ୍ଠା ତୁ କା କୃଷ୍ଣ ସତ୍ତ୍ୱମାହୋରଜସ୍ତମଃ । ୧ ।

ଅର୍ଜ୍ଜୁନ ଉବାଚ (ଅର୍ଜ୍ଜୁନ କହିଲେ) (ହେ) କୃଷ୍ଣ, ଯେ ଶାସ୍ତ୍ରବିଧିଂ ଉତ୍ସୃଜ୍ୟ (ଯେଉଁମାନେ ଶାସ୍ତ୍ର ବିଧିକୁ ତ୍ୟାଗକରି) (ଅଥଚ) ଶ୍ରଦ୍ଧୟା ଅନ୍ୱିତାଃ ଯଜନ୍ତେ (ଶ୍ରଦ୍ଧାଯୁକ୍ତ ହୋଇ ଉପାସନାଦି କରିଥାନ୍ତି ) ତେଷାଂ ନିଷ୍ଠା କା ? (ସେମାନଙ୍କର ସେହି ନିଷ୍ଠାକୁ କ'ଣ ବୋଲି କହିବ ? ) (ତାକୁ) ସତ୍ତ୍ୱଂ, ରଜଃ, ଅହୋ ତମଃ ? (ସାତ୍ତ୍ୱିକ ନା ରାଜସିକ ନା ତାମସିକ, କ'ଣ କହିବ ?)

ଅନୁବାଦ—

ଅର୍ଜ୍ଜୁନ କହିଲେ । ହେ କୃଷ୍ଣ, ଯେଉଁମାନେ କେବଳ ନ-ଜାଣିଥିବା-ଯୋଗୁ ବାହାରକୁ ଅଶାସ୍ତ୍ରୀୟ ରୀତିରେ ଅଥଚ ପ୍ରାଣପୂର୍ଣ୍ଣ ନିଷ୍ଠାରେ ଈଶ୍ୱରଙ୍କୁ ଉପାସନା କରିଥାନ୍ତି, ସେମାନଙ୍କର ସେହି ନିଷ୍ଠା, ସାତ୍ତ୍ୱିକ, ନା ରାଜସିକ ନା ତାମସିକ ଶ୍ରେଣୀଭୁକ୍ତ ହେବ ?

ଶ୍ରୀ ଭଗବାନୁବାଚ

(୨)

ତ୍ରିବିଧା ଭବତି ଶ୍ରଦ୍ଧା ଦେହିନାଂ ସା ସ୍ୱଭାବଜା
ସାତ୍ତ୍ୱିକୀ ରାଜସୀ ଚୈବ ତାମସୀ ଚେତିତାଂ ଶୃଣୁ । ୨ ।

ଶ୍ରୀ ଭଗବାନ୍ ଉବାଚ (ଭଗବାନ୍ ଶ୍ରୀକୃଷ୍ଣ କହିଲେ) ଦେହିନାଂ (ଦେହଧାରୀ ପ୍ରତ୍ୟେକ ମନୁଷ୍ୟର ଶ୍ରଦ୍ଧା) ସାତ୍ତ୍ୱିକୀ, ରାଜସୀ, ତାମସୀ ଚ ଇତି ତ୍ରିବିଧା ଏବ ଭବତି (ସାତ୍ତ୍ୱିକୀ, ରାଜସୀ ଓ ତାମସୀ ଏହିପରି ତିନିପ୍ରକାର ହୋଇଥାଏ) । ସା ସ୍ୱଭାବଜା (ଏପରି ହେବା ପ୍ରକୃତଗତ) । ତାଂ ଶୃଣୁ (କପର୍ଦ୍ଦ, ତାହା ଶୁଣ) ।

## ଅନୁବାଦ—

ଶ୍ରୀକୃଷ୍ଣ କହିଲେ । ହେ ଅର୍ଜ୍ଜୁନ, ସ୍ୱାଭାବିକ ଭାବରେ ହିଁ ମନୁଷ୍ୟମାନଙ୍କ ଭିତରେ ସାତ୍ତ୍ୱିକୀ, ରାଜସୀ ଓ ତାମସୀ ଏହିପରି ତିନିପ୍ରକାରର ଶ୍ରଦ୍ଧା ଦେଖା ଦେଇଥାଏ । ସେସବୁର ବର୍ଣ୍ଣନା ମୁଁ କରୁଛି ଶୁଣ ।

(୩)

ସତ୍ତ୍ୱାନୁରୂପା ସର୍ବସ୍ୟ ଶ୍ରଦ୍ଧା ଭବତି ଭାରତ
ଶ୍ରଦ୍ଧାମୟୋଽୟଂ ପୁରୁଷୋ ଯୋ ଯଚ୍ଛ୍ରଦ୍ଧଃ ସ ଏବ ସଃ । ୩ ।

(ହେ) ଭାରତ (ଅର୍ଜ୍ଜୁନ) ସର୍ବସ୍ୟ ଶ୍ରଦ୍ଧା ସତ୍ତ୍ୱାନୁରୂପା (ପ୍ରତ୍ୟେକ ନର ବା ନାରୀର ସାମଗ୍ରିକ ଶ୍ରଦ୍ଧା ତା'ର ସତ୍-ତ୍ୱ ବା ଅସ୍ତିତ୍ୱ ବା ବ୍ୟକ୍ତିତ୍ୱର ଅନୁରୂପହିଁ ହୋଇଥାଏ) । ଅୟଂ ପୁରୁଷଃ ଶ୍ରଦ୍ଧାମୟଃ [ପ୍ରତି ନର ଓ ନାରୀଠାରେ ଥିବା] (ଦେହସ୍ଥ ପୁରୁଷ ବା ଆତ୍ମା କେବଳ ଶ୍ରଦ୍ଧାମୟ ; ଅର୍ଥାତ୍ କେତେଗୁଡ଼ଏ ଶ୍ରଦ୍ଧାର ସମାହାର ମାତ୍ର) । ଯଃ ଯଚ୍ଛ୍ରଦ୍ଧଃ ସ ଏବ ସଃ (ଜାଣିରଖ ଯେ) (ଯେ ଯେପ୍ରକାର ଶ୍ରଦ୍ଧାଯୁକ୍ତ ସେ ଲୋକର ଚରିତ୍ର ବା ବ୍ୟକ୍ତିତ୍ୱ ସେହିପରି ହୋଇଥାଏ) ।

## ଅନୁବାଦ—

ହେ ଅର୍ଜ୍ଜୁନ, ପ୍ରତ୍ୟେକ ମନୁଷ୍ୟର ଶ୍ରଦ୍ଧା ତାର ସହଜାତ ସତ୍ତା ବା ବ୍ୟକ୍ତିତ୍ୱର ଅନୁରୂପ ହିଁ ହେବ, ଅନ୍ୟଥା ହେବାନାହିଁ । ପ୍ରତ୍ୟେକ ମନୁଷ୍ୟ କେତେଗୁଡ଼ଏ ବିଶେଷ ଶ୍ରଦ୍ଧାର ସମାହାର ମାତ୍ର । ଏହି ଶ୍ରଦ୍ଧାର ଭିନ୍ନତା ଯୋଗୁଁ ହିଁ ମନୁଷ୍ୟ ମନୁଷ୍ୟ ଭିତରେ ବ୍ୟକ୍ତିତ୍ୱର ଭିନ୍ନତା ଦେଖାଯାଏ । ଯେଉଁ ଲୋକର ଶ୍ରଦ୍ଧା ଯେ ପ୍ରକାର ସେ ଲୋକ ସେହିପରି ।

( ୪ )

ଯଜନ୍ତେ ସାତ୍ତ୍ୱିକା ଦେବାନ୍ ଯକ୍ଷରକ୍ଷାଂସି ରାଜସାଃ
ପ୍ରେତାନ୍ ଭୂତଗଣାଂଶ୍ଚାନ୍ୟେ ଯଜନ୍ତେ ତାମସାଜନାଃ । ୪ ।

ସାତ୍ତ୍ୱିକାଃ ଦେବାନ ଯଜନ୍ତେ (ସାତ୍ତ୍ୱିକ-ଶ୍ରଦ୍ଧା-ଯୁକ୍ତ ଲୋକେ ସାଧାରଣତଃ ଦେବତାମାନଙ୍କୁ ପୂଜା କରିଥାନ୍ତି)। ରାଜସାଃ ଯକ୍ଷରକ୍ଷାଂସି ରାଜସିକ ଶ୍ରଦ୍ଧାର ଲୋକେ ଯକ୍ଷ-ରକ୍ଷସାଦିଙ୍କର ପୂଜା କରିଥାନ୍ତି। ଅନ୍ୟେ ତାମସାଃ ଚ ପ୍ରେତାନ୍ ଭୂତଗଣାନ୍ ଚ ଯଜନ୍ତେ (ଅନ୍ୟସବୁ ତାମସିକ ଶ୍ରଦ୍ଧାର ଲୋକ, ଯେଉଁମାନେ କି ସାଧାରଣତଃ ଭୂତ-ପ୍ରେତମାନଙ୍କୁ ମଧ୍ୟ ପୂଜା କରିଥାନ୍ତି)।

## ଅନୁବାଦ—

ହେ ଅର୍ଜୁନ, ସାତ୍ତ୍ୱିକଭାବାପନ୍ନ ଲୋକେ ଅନ୍ତତଃ ପରିଚିତ ଓ ପ୍ରତିଷ୍ଠିତ ଦେବତାମାନଙ୍କୁହିଁ ପୂଜା କରିଥାନ୍ତି। ଭଗଭବରେ ଭୋଗ-କର୍ମାଭିଳାଷୀ ରାଜସିକ ଲୋକେ ନିଜ ନିଜର ଲକ୍ଷ୍ୟସିଦ୍ଧି ପାଇଁ ଯକ୍ଷ-ରକ୍ଷସ ରୂପକ ଅପ-ଦେବତାମାନଙ୍କ ପୂଜାକୁ ମଧ୍ୟ ପଶ୍ଚାତ୍‌ପଦ ହୋଇ ନଥାନ୍ତି। ବିଷ୍ୱରହୀନ ଓ ଅନ୍ଧବିଶ୍ୱାସୀ ତାମସିକମାନଙ୍କ କଥା ଛାଡ। ସେମାନେ ଭୂତ-ପ୍ରେତ ପୂଜାରେହିଁ ସନ୍ତୁଷ୍ଟ ଥିବାର ଦେଖାଯାଏ।

## ବିଶେଷ ଭାଷ୍ୟ—

ଗୀତାର ଏହି ଶ୍ଳୋକଟି ବୋଧହୁଏ ସମସାମୟିକ ଭାରତୀୟ ସମାଜରେ ଘଟୁଥିବା ଭିନ୍ନ ଭିନ୍ନ ପୂଜା-ପଦ୍ଧତିକୁ ଆଖିରେ ରଖି ଲେଖାହୋଇଛି। କାରଣ ଏ ଦେଶରେ ଗୁଣିଆମାନେ ଭୂତପ୍ରେତମାନଙ୍କର ଏବେ ବି ପୂଜା କରିବାର ଜଣାଥିଲେ ମଧ୍ୟ ଯକ୍ଷ ଓ ରକ୍ଷସମାନଙ୍କର ପୂଜା ଏ ଦେଶରେ ଏବେ କେଉଁଠି ହେଉଥିବାର ଜଣାନାହିଁ କି ଇତିହାସରେ ବି ତାର କୌଣସି ସୂଚନା ନାହିଁ। ରକ୍ଷସମାନେ ବ୍ରାହ୍ମଣ୍ୟ ଧର୍ମର ପରମ ଶତ୍ରୁ ବୋଲି ଆମର ପୁରଣମାନଙ୍କରେ ବର୍ଣ୍ଣିତ। ସେମାନଙ୍କର ବା ପୂଜା କରୁଥିଲା କିଏ ?

ଏବେ ତାମସିକ-ରାଜସିକ ଶ୍ରଦ୍ଧାଦ୍ୱାରା ପରିଚ୍ଚାଳିତ ହୋଇ ମଧ୍ୟ ବହୁ ଲୋକ 'ଦେବାନ୍ ଯଜନ୍ତେ' ( ଦେବତା ବା ଦେବ-ଦେବୀମାନଙ୍କୁ ପୂଜା କରିଥାନ୍ତି)। କାଳୀ-ଉପାସକ କାମାଖ୍ୟରୀ ତାନ୍ତ୍ରିକମାନଙ୍କ କଥା ଛାଡଦିଅ, ଅଗଣିତ ହିନ୍ଦୁ, ଯେଉଁମାନେ "ପୁରୁଷୋତ୍ତମ ଜଗନ୍ନାଥ ଦେବ"ଙ୍କୁ ମଧ୍ୟ ପୂଜା କରିବାକୁ ଆସୁଛନ୍ତି, ତାଙ୍କ ଭିତରୁ କେତେଜଣ "ସାତ୍ତ୍ୱିକ" ଶ୍ରଦ୍ଧାଦ୍ୱାରା ପ୍ରଣୋଦିତ ହୋଇଥାନ୍ତି ?

ତେଣୁ, ସାତ୍ତ୍ୱିକ ଲୋକେହିଁ "ଦେବତା" ପୂଜା କରନ୍ତି ବୋଲି ଗୀତା ଯାହା କହିଛନ୍ତି ତାହାର ତାତ୍‌ପର୍ଯ୍ୟ ଆମର ଏବକାଳ ପ୍ରତି ଅସ୍ପଷ୍ଟ ରହିଯାଉଛି।

ଋଗ୍‌ବେଦରେ ବୈଦିକ ଦେବତାମାନଙ୍କ-ପ୍ରତି-ଉଦ୍ଦିଷ୍ଟ ଅଗଣିତ ମନ୍ତ୍ର (ପ୍ରାର୍ଥନା) ମାନଙ୍କରେ ପ୍ରକାଶିତ ଶ୍ରଦ୍ଧା ବିଶେଷ ଭାବରେ "ରାଜସିକ"। ସେମାନଙ୍କ ଭିତରୁ କେବଳ 'ପୁରୁଷସୁକ୍ତ' ବା 'ନାସଦୀୟ-ସୁକ୍ତ' ପରି ଅଳ୍ପ କେତୋଟି ମାତ୍ର, ବଳୁଷ୍ଠ ଭାବରେ 'ସାତ୍ତ୍ୱିକ ଉପାସନା' ବୋଲି ଗଣା ଯାଇପାରନ୍ତି। ଶ୍ରୀକୃଷ୍ଣ, ଶ୍ରେଷ୍ଠ ବୈଦିକ ଦେବତା ଇନ୍ଦ୍ରର ପୂଜା ବନ୍ଦକରି ଦେଇ ଗୋବର୍ଦ୍ଧନ ପାହାଡଟାର ପୂଜା ଯେ ପ୍ରବର୍ତ୍ତନ କଲେ ବୋଲି କୁହାଯାଏ, ତାହା ମଧ୍ୟ କି ପ୍ରକାର ପୂଜା, -ସାତ୍ତ୍ୱିକ ରାଜସିକ ନା ତାମସିକ ? ତେଣୁ ଏଠାରେ ସାତ୍ତ୍ୱିକ ଲୋକେ କେଉଁ ଦେବତାମାନଙ୍କୁ ପୂଜା କରନ୍ତି, ବା ଦେବତାମାନଙ୍କୁ ପୂଜା କଲେ ହିଁ ଯେ ଲୋକ "ସାତ୍ତ୍ୱିକ" ବୋଲାଇବ,-ଏହାର ତାତ୍‌ପର୍ଯ୍ୟ ସତ୍ୟରେ ଧରି ହେଉନି।

ଗୀତାର କୌଣସି ହେଲେ ଟୀକାକାର ଏହି ଗୁରୁତର ଜିଜ୍ଞାସା ଉପରେ ପ୍ରଶ୍ନହିଁ ଉଠାଇ ନାହାନ୍ତି—ସମାଧାନ ଦେବା ତ ଦୂରର କଥା।

ଗୀତା ତେଣୁ ବାଧ୍ୟହୋଇ ବୋଧହୁଏ, ପରବର୍ତ୍ତୀ ଦୁଇ ଶ୍ଳୋକରେ ବ୍ରାହ୍ମଣ୍ୟ କୃଚ୍ଛ୍ର ସାଧନା (ତପସ୍ୟା)ର ନିନ୍ଦାପାଇଁ ପୁଣି ପୂର୍ବ ଅଧ୍ୟାୟର "ଅସୁର" ଶବ୍ଦକୁ ଫେରି ଆସିଛନ୍ତି ଏବଂ ସେହି ସୂତ୍ରରେ ଗୌତମ ବୁଦ୍ଧଙ୍କର ବୈଦିକ କୃଚ୍ଛ୍ର ସାଧନାଦିର ଯେଉଁ ଘୋର ନିନ୍ଦା, ତାହାକୁ ହିଁ ଗ୍ରହଣ କରି ନେଇଛନ୍ତି।

( ୫—୬ )

ଅଶାସ୍ତ୍ରବିହିତଂ ଘୋରଂ ତପ୍ୟନ୍ତେ ଯେ ତପୋଜନାଃ
ଦମ୍ଭାହଂକାର ସଂଯୁକ୍ତାଃ କାମରାଗ ବଳାନ୍ୱିତାଃ । ୫ ।

କର୍ଶୟନ୍ତଃ ଶରୀରସ୍ଥଂ ଭୂତଗ୍ରାମମଚେତସଃ
ମାଂ ଚୈବାନ୍ତଃ ଶରୀରସ୍ଥଂ ତାନ୍ ବିଦ୍ଧ୍ୟାସୁର ନିଶ୍ଚୟାନ୍ । ୬ ।

ଦମ୍ଭାହଂକାର ସଂଯୁକ୍ତାଃ କାମରାଗ ବଳାନ୍ୱିତାଃ ଯେ ଅଚେତସଃ ଜନାଃ (ଦମ୍ଭ ଓ ଅହଂକାର ପ୍ରଣୋଦିତ ଏବଂ କାମନା ଓ ଆସକ୍ତି ପରିଚାଳିତ ହୋଇ ଯେଉଁ ଅବିବେକୀ ଲୋକେ) ଶରୀରସ୍ଥଂ ଭୂତଗ୍ରାମଂ ଅନ୍ତଃ ଶରୀରସ୍ଥଂ ମାଂଚ ( ଶରୀରରେ ଥିବା ପଞ୍ଚଭୂତକୁ ଏବଂ ଶରୀର ଭିତରେ ଥିବା ମତେ ମଧ୍ୟ) କର୍ଶୟନ୍ତଃ (କଷ୍ଟଦେଇ) ଅଶାସ୍ତ୍ର ବିହିତଂ ଘୋରଂ ତପଃ ତପ୍ୟନ୍ତେ (ଶାସ୍ତ୍ର ବିରୁଦ୍ଧ ଭାବରେ ଘୋର ତପସ୍ୟା ସବୁ କରନ୍ତି) ତାନ୍ ଅସୁର ନିଶ୍ଚୟାନ୍ ବିଦ୍ଧି (ସେମାନଙ୍କୁ ଅସୁର ବୁଦ୍ଧି ବିଶିଷ୍ଟ ବୋଲି ଜାଣ)।

## ଅନୁବାଦ—

ହେ ଅର୍ଜୁନ, ଏକ ପକ୍ଷରେ ଦମ୍ଭ ଓ ଅହଂକାର ଏବଂ ଅନ୍ୟପକ୍ଷରେ କାମ ଓ ଅନ୍ୟାନ୍ୟ ଆସକ୍ତିମାନଙ୍କ ଦ୍ୱାରା ପରିଚାଳିତ ହୋଇ ଯେଉଁ ଅବିବେକୀ ଲୋକେ, ଶାସ୍ତ୍ରରେ-ନିର୍ଦ୍ଦେଶ-ନଥିବା କଠୋର କୃଚ୍ଛ୍ର ସାଧନା ସବୁ କରି ଚାଲନ୍ତି, ଜାଣିରଖ ଯେ ସେମାନେ ନଡର ଶରୀର ଏବଂ ଶରୀରଭ୍ୟନ୍ତରସ୍ଥ ମତେହିଁ ଅକାରଣ ବ୍ୟଥା ଦେଇ ଚାଲନ୍ତି । ଏ ଶ୍ରେଣୀ ଲୋକଙ୍କର ଶ୍ରଦ୍ଧା ନିଶ୍ଚିତ ଭାବରେ ଆସୁରିକ ବୋଲି ଜାଣିବ ।

## ବିଶେଷ ଭାଷ୍ୟ—

ପ୍ରାଚୀନ ଭାରତରେ କିପରି ଏକ ଧାରଣା ଜନ୍ମିଥିଲା ଯେ, ଶରୀରକୁ ଆମେ ଯେତେ କ୍ଳେଶ ଦେଇପାରିବା, ଆମେ ସେହି ପରିମାଣରେ ପ୍ରକୃତିକୁ ଜୟ କରି ପାରିବା ଓ ମୃତ୍ୟୁପରେ ମଧ୍ୟ ସେହି ପରିମାଣ ସୁଖର ଅଧିକାରୀ ହେବା । ଏହି କୃଚ୍ଛ୍ରସାଧନାର ନାମ ଥିଲା, 'ତପସ୍ୟା' । ଘୋର ତପସ୍ୟା ଫଳରେ ସାଧକ ଇନ୍ଦ୍ରପଦ ମଧ୍ୟ ଲାଭ କରିପାରୁଥିଲା—ଯାହାର ଭଳିଆ ତାତ୍ପର୍ଯ୍ୟଟି ହେଲା, ଶଚୀ ପରି ଚିରଯୌବନା ପରମା ସୁନ୍ଦରୀର ଉପଭୋଗ । ସେଥିପାଇଁ ଆମେ ଆମର ପୁରାଣମାନଙ୍କରେ ଦେଖୁ ଯେ, କୌଣସି ଋଷି ତପସ୍ୟାରେ ସିଦ୍ଧି ପାଇବା ପରି ହେଲା ମାତ୍ରେ, ସ୍ୱର୍ଗର ଇନ୍ଦ୍ର କାଳେ ସ୍ଥାନ-ଚ୍ୟୁତ ହୋଇଯିବ, ସେଥିପାଇଁ ସେ ଧାଇଁପଡ଼ ସକଳ ବାଧା ସୃଷ୍ଟି କରିଥାଏ । ଅଥଚ ଆମ ପୁରାଣମାନଂକରେ ଏହି ତପସ୍ୟା ମଧ୍ୟ ଉଚ୍ଚ ଆଧ୍ୟାତ୍ମିକ ଅଭିଜ୍ଞତାର ଉତ୍ସ ବୋଲି ଧରାଯାଉଥିଲା ।

ଗୌତମ ବୁଦ୍ଧ ଆଧ୍ୟାତ୍ମିକ ସାଧନା ଭାବରେ ଏହି ପ୍ରକାର କୃଚ୍ଛ୍ର-ସାଧନା ଯେ ଏକାବେଳକେ ଅର୍ଥହୀନ ତାହା ପ୍ରଥମ କରି ସ୍ପଷ୍ଟ ଘୋଷଣା କଲେ । ସେ ନିଜେ ଏହି ମାର୍ଗରେ ଦୀର୍ଘ ପାଞ୍ଚ ବର୍ଷ ସାଧନା କରି ଏହି ମାର୍ଗର ବ୍ୟର୍ଥତା ନିଜ ଅଙ୍ଗେ ଅନୁଭବ ଏପରି କହିଥିଲେ ।

ଗୀତା ଲେଖାହେଲା ବେଳକୁ ବୌଦ୍ଧ ପ୍ରଭାବରେହିଁ କୃଚ୍ଛ୍ର-ସାଧନା ପ୍ରତି ଜନ ବିଶ୍ୱାସ ହୁଏତ ବହୁତ ତୁଟିଗଲାଣି, ଏବଂ ଗୀତା ସେହି ହେତୁରୁହିଁ ତାହାକୁ ଉଦାର ଭାବରେ ଗ୍ରହଣ କରି ନେଇଛନ୍ତି । ସମଗ୍ର ଗୀତାରେ ଆଧ୍ୟାତ୍ମିକ ସାଧନା ଭାବରେ ଶରୀରକୁ କଷ୍ଟ ଦେବାପାଇଁ କୌଣସିଠାରେ ସାମାନ୍ୟତମ ସୂଚନା ମଧ୍ୟ ନାହିଁ । ଏପରିକି ସାଧାରଣ 'ଉପବାସ'ର ସୂଚନା ମଧ୍ୟ ଗୀତା

କେଉଁଠି ହେଲେ ଦେଇ ନାହାନ୍ତି । ଦ୍ୱିତୀୟ ଅଧ୍ୟାୟ ( ୫୯ ) ରେ ବ୍ୟବହୃତ 'ନିରାହାର' ଶବ୍ଦ ବ୍ୟଂଜନାର୍ଥକ, ତାହା ନ ଖାଇବା ଅର୍ଥରେ ଆଦୌ ବ୍ୟବହୃତ ହୋଇ ନାହିଁ । ଗୀତା ଅବଶ୍ୟ ଆହାର-ବିହାରରେ ସଂଯମ (moderation) ପାଇଁ ଉପଦେଶ ଦେଇଛନ୍ତି, ଯାହା ଆମର ସାଧାରଣ ସ୍ୱାସ୍ଥ୍ୟ ପାଇଁ ମଧ୍ୟ ଏକାନ୍ତ ଆବଶ୍ୟକ । ତାହା ଆତ୍ମିକ ସାଧନା ପାଇଁ ମଧ୍ୟ ଅନୁକୂଳ ବରଂ 'କାମରାଗ ବଳାନ୍ୱିତ', 'ଭୋଗୈଶ୍ୱର୍ଯ୍ୟଗତି' ଏବଂ 'ଜନ୍ମକର୍ମ ଫଳପ୍ରଦ' ମାତ୍ର ବୋଲି ଗୀତା ପ୍ରାରମ୍ଭରୁହିଁ (ଦ୍ୱିତୀୟ ଅଧ୍ୟାୟରୁ) ବୈଦିକ ଯାଗ-ଯଜ୍ଞାଦିର ଘୋର ନିନ୍ଦା କରି ଆସିଛନ୍ତି । ଆମର ପୁରାଣମାନଂକରେ ରାବଣାଦି ରାକ୍ଷସ (ଅସୁର) ମାନେହିଁ ଐହିକ ଭୋଗାଦିର ପରମ ପ୍ରତୀକ ରୂପେ ଦଣ୍ଡାୟମାନ । ଏବଂ ଏମାନେ ସାଧାରଣତଃ 'ଘୋର' ତପସ୍ୟା ଫଳରେହିଁ ସେହି ଭୋଗ, ସେହି ଐଶ୍ୱର୍ଯ୍ୟ ଓ ଅନ୍ୟାନ୍ୟ ଅଲୌକିକ ଶକ୍ତିସବୁ ପାଇଥିବାର କୁହାଯାଇଛି । ବୋଧହୁଏ ଅନ୍ତତଃ ଗୀତା ଲେଖାହେଲା ବେଳକୁ ବୈଦିକ ବ୍ରାହ୍ମଣ୍ୟ ଧର୍ମର ଜୀବନାଦର୍ଶ ଏ ପ୍ରକାର "ଆସୁରୀ" ଆଦର୍ଶର ସଂପୂର୍ଣ୍ଣ ବିପରୀତ ହୋଇ ସାରିଲାଣି । ସେ-ପର୍ଯ୍ୟନ୍ତ କାମ ଓ ଅର୍ଥ ଜୀବନର ଅପରିହାର୍ଯ୍ୟ ଲକ୍ଷ୍ୟ ବୋଲି ଧରା ହୋଇଥିଲେହେଁ, ଜୀବନର ଅଭିମୁଖ୍ୟ ହୋଇ ସାରିଲାଣି, ଧର୍ମ ଓ ମୋକ୍ଷ । ତେଣୁ ସେ ସବୁର ବିପରୀତ ଆଦର୍ଶକୁ ହିଁ ଗୀତା"ଆସୁର" କହିବା ସ୍ୱାଭାବିକ ।

( ୭ )

ଆହାରସ୍ତ୍ୱପି ସର୍ବସ୍ୟ ତ୍ରିବିଧୋ ଭବତି ପ୍ରିୟଃ
ଯଜ୍ଞସ୍ତପସ୍ତଥା ଦାନଂ ତେଷାଂ ଭେଦମିମଂ ଶୃଣୁ । ୭୫ ।

ସର୍ବସ୍ୟ ଆହାରଃ ତୁ ଅପି ତ୍ରିବିଧଃ ପ୍ରିୟଃ ଭବତି [ଶ୍ରଦ୍ଧା ଅନୁସାରେ ବା ଦୈବୀ ଓ ଅସୁରୀ ପ୍ରକୃତି ଅନୁସାରେ ବା ପ୍ରାକୃତିକ ତିନି ଗୁଣାନୁସାରେ] (ସମସ୍ତଙ୍କର ଆହାର ମଧ୍ୟ ତିନି ପ୍ରକାର ପ୍ରିୟତା ଲାଭ କରିଥାଏ) । ଯଜ୍ଞ, ତପଃ ତଥା ଦାନଂଚ (ସେମାନଙ୍କର ଯଜ୍ଞ, ତପ ଓ ଦାନ ମଧ୍ୟ ସେହିପରି ତିନି ପ୍ରକାର ହୋଇଥାଏ) । ତେଷାଂ ଇମଂ ଭେଦଂ ଶୃଣୁ (ସେମାନଙ୍କର ଏହି ପ୍ରଭେଦ ଶୁଣ) ।

ଅନୁବାଦ—

ହେ ଅର୍ଜୁନ, ମନୁଷ୍ୟମାନଙ୍କର ସ୍ୱସ୍ୱ ଶ୍ରଦ୍ଧାନୁଯାୟୀ ସେମାନଙ୍କର ଦେବତା ଭିନ୍ନ ଭିନ୍ନ ହୋଇଥାନ୍ତି କେବଳ ନୁହେଁ, ସେମାନଙ୍କର ଖାଦ୍ୟ ପଦାର୍ଥ, ଯଜ୍ଞ, ତପ, ଦାନ ଇତ୍ୟାଦି ସବୁହିଁ ତିନି ଶ୍ରେଣୀର ହୋଇଥାଏ । ତାହା ଶୁଣ ।

( ୮ )

ଆୟୁଃ-ସତ୍ତ୍ୱ-ବଳାରୋଗ୍ୟ ସୁଖ ପ୍ରୀତି ବିବର୍ଦ୍ଧନା
ରସ୍ୟାଃ ସ୍ନିଗ୍ଧାଃ ସ୍ଥିର ହୃଦ୍ୟା ଆହାରାଃ ସାତ୍ତ୍ୱିକ ପ୍ରିୟାଃ । ୮ ।

ଆୟୁଃ ସତ୍ତ୍ୱ ବଳାରୋଗ୍ୟ ସୁଖପ୍ରୀତି ବିବର୍ଦ୍ଧନା (ଆୟୁ, ଜୀବନୀଶକ୍ତି, ବଳ, ନିରୋଗୀତା, ନିଜର ଆନନ୍ଦ (ସୁଖ), ପରର ଆନନ୍ଦ (ପ୍ରୀତି)—ଏସବୁକୁ ଯାହା ବଢ଼ାଏ) [ପୁଣି ଯାହା] ରସ୍ୟାଃ (ରସଯୁକ୍ତ, ସ୍ୱାଦୁ) ସ୍ନିଗ୍ଧାଃ (ଚିକ୍କଣ) ସ୍ଥିରଃ (ଯାହା ବହୁକାଳ ରହେ) ହୃଦ୍ୟା (ଦୃଷ୍ଟିମାତ୍ରେ ହୃଦୟାକର୍ଷକ) ଆହାରାଃ ସାତ୍ତ୍ୱିକ ପ୍ରିୟାଃ (ଏ ପ୍ରକାର ଆହାର ସାତ୍ତ୍ୱିକ ଜନଙ୍କର ପ୍ରିୟ) ।

## ଅନୁବାଦ—

ହେ ଅର୍ଜ୍ଜୁନ, ସାତ୍ତ୍ୱିକ ସ୍ୱଭାପନ୍ନ ଲୋକେ ଯେଉଁ ଖାଦ୍ୟ ସାଧାରଣତଃ ପସନ୍ଦ କରିଥାନ୍ତି ତାହା ଏହିପରି ଗୁଣସମ୍ପନ୍ନ ହୋଇଥାଏ । ସାତ୍ତ୍ୱିକ-ଖାଦ୍ୟ ସେହି, ଯାହା ଆୟୁ, ଜୀବନୀ ଶକ୍ତି, ବଳ, ନିରୋଗିତା, ନିଜର ମାନସିକ ଆନନ୍ଦ ଏବଂ ଅନ୍ୟମାନଙ୍କର (ଅତିଥିମାନଙ୍କର) ପ୍ରୀତିର କାରଣ ହୋଇଥାଏ । ତାହା ସାଧାରଣତଃ ରସଯୁକ୍ତ, ସ୍ୱାଦୁ, ମସୃଣ, ବହୁକାଳ ସ୍ଥାୟୀ ଏବଂ ଦୃଷ୍ଟିମାତ୍ରେ ହୃଦୟ ରଂଜକ ।

( ୯ )

କଟ୍ୱମ୍ଳ ଲବଣାତ୍ୟୁଷ୍ଣ ତୀକ୍ଷ୍ଣ-ରୂକ୍ଷ ବିଦାହିନଃ
ଆହାରା ରାଜସସ୍ୟେଷ୍ଟା ଦୁଃଖ ଶୋକାମୟ ପ୍ରଦାଃ । ୯ ।

କଟ୍ୱମ୍ଳ ଲବଣାତ୍ୟୁଷ୍ଣ ତୀକ୍ଷ୍ଣ ରୂକ୍ଷବିଦାହିନଃ (ଅତ ପିତା, ଅତିଖଟା, ଅତ ଲୁଣିଆ, ଅତିଗରମ, ଅତରାଗ, ଅତିକଟୁ, ଅତି ପ୍ରଦାହକାରୀ) ଦୁଃଖ-ଶୋକାମୟ ପ୍ରଦାଃ (ଦୁଃଖ, ଶୋକ ଓ ରୋଗ (ଆମୟ) ଆଣିବା) ଆହାରାଃ ରାଜସସ୍ୟ ଇଷ୍ଟାଃ (ରାଜସିକ ଲୋକର ପ୍ରିୟ) ।

## ଅନୁବାଦ—

ହେ ଅର୍ଜ୍ଜୁନ, ଅତିରିକ୍ତ ଭାବରେ ପିତା, ଖଟା, ଲୁଣିଆ, ଗରମ, ରାଗ, କଟୁ ଓ ପ୍ରଦାହକାରୀ ଏବଂ ପରିଣାମରେ ବ୍ୟାଧି ରୂପରେ ଦୁଃଖ ଶୋକ ଦାୟୀ ଖାଦ୍ୟ, ରାଜସିକମାନଙ୍କର ପ୍ରିୟ ହୋଇଥାଏ ବୋଲି ଜାଣିବ ।

( ୧୦ )

ଯାତଯାମଂ ଗତରସଂ ପୂତି ପର୍ଯ୍ୟୁଷିତଂ ଚ ଯତ୍
ଉଚ୍ଛିଷ୍ଟମପି ଚାମେଧ୍ୟଂ ଭୋଜନଂ ତାମସପ୍ରିୟଂ । ୧୦ ।

ଯାତଯାମଂ (ଅନେକ ସମୟ ପୂର୍ବେ ରନ୍ଧା ହୋଇଥିବା) ଗତରସଂ ରସଶୂନ୍ୟ, ଅର୍ଥାତ୍ ଯାହାର ସ୍ୱାଦ ଚାଲିଯାଇଛି) ପୂତ (ଦୁର୍ଗନ୍ଧ) ପର୍ଯ୍ୟୁଷିତଂ (ବାସି) ଉଚ୍ଛିଷ୍ଟଂ (ଅଇଁଠା) ଅପିଚ ଅମେଧ୍ୟଂ (ଆହୁରି ମଧ୍ୟ ଯାହା ଅପବିତ୍ର) ତାମସପ୍ରିୟଂ (ଏସବୁ ତାମସିକ ଲୋକଙ୍କ ପ୍ରିୟ ଖାଦ୍ୟ) ।

**ଅନୁବାଦ—**

ହେ ଅର୍ଜୁନ, ବହୁ ସମୟ ପୂର୍ବେ ରନ୍ଧା ହୋଇଥିବା, ସ୍ୱାଦଶୂନ୍ୟ, ଦୁର୍ଗନ୍ଧ, ବାସି ଏବଂ ଅନ୍ୟର ଭୁକ୍ତାବଶିଷ୍ଟ ଓ ଅପବିତ୍ର, ଏପରି ଖାଦ୍ୟ ତାମସିକ ଲୋକଙ୍କର ପ୍ରିୟ ବୋଲି ଜାଣିବ ।

**ବିଶେଷ ଭାଷ୍ୟ—**

ଖାଦ୍ୟ ସଂବନ୍ଧରେ ଗୀତାର ଏହି ତିନିଟିଯାକ ଶ୍ଳୋକ ଭାରତବର୍ଷରେ ଭୋଜନ ବିଷୟକ ଆଲୋଚନାରେ ବାରବାର ଉଦ୍ଧୃତ ହୋଇଥାଏ । କିନ୍ତୁ ଏସବୁ ଯେବେ କୁହାଯାଇଥିଲା, ସେ କାଳ ଅନ୍ତତଃ ଦୁଇ ହଜାର ବର୍ଷରୁ ଊଣା ହେବ ନାହିଁ ।

କିନ୍ତୁ ଦୁଇ ହଜାର ବର୍ଷ କଥା ଛାଡ, ଗତ ଦେଢ଼ଶ’-ଦୁଇ ଶହ ବର୍ଷ ଭିତରେ, ଗଭୀର ଗବେଷଣା ଫଳରେ ବିଜ୍ଞାନ, ମାନବ ଜୀବନର ପ୍ରତ୍ୟେକଟି କ୍ଷେତ୍ରରେ ଏପରି ସ୍ପଷ୍ଟ ଆଲୋକ ବିକିରଣ କରିଛି ଯେ ଏ ପର୍ଯ୍ୟନ୍ତ ଯାହାକୁ ‘ଜ୍ଞାନ’ ବୋଲି ମନୁଷ୍ୟ ଧରି ବସିଥିଲା, ତାହା ଏବେ ଜଣାପଡୁଛି ଘୋର ଅଜ୍ଞତା ବୋଲି । ହଇଜା, ବସନ୍ତ, କୁଷ୍ଠ, ମ୍ୟାଲେରିଆ ପ୍ରଭୃତି ରୋଗମାନଙ୍କର ଚିକିତ୍ସା ଓ ପ୍ରତିଷେଧକମାନଙ୍କର କଥାହିଁ ପାଠକେ ସ୍ମରଣ କରନ୍ତୁ । ଏପର୍ଯ୍ୟନ୍ତ ଆମେ ସେ ସବୁକୁ ହୁଏତ ଦେବ-ଦେବୀର କୋପ ବା ‘ଅଦୃଷ୍ଟ’ର ବିପଦ ବୋଲି ଛାଡି ଦେଇଥିଲୁ । କିନ୍ତୁ ଏବେ ମାତ୍ର ଆଠଣା ପଇସାର ଇଞ୍ଜେକସନ, ପୂର୍ବର ଦୁର୍ଦ୍ଧର୍ଷ କଲେରା ବେମାରୀକୁ ସାବାଡ କରି ଦେଉଛି ।

ଖାଦ୍ୟ ଉପରେ ମଧ୍ୟ ଗତ ପଚାଶ ବର୍ଷ ଭିତରେ ବହୁ ଗବେଷଣା ହୋଇ ଯାଇଛି । ଏହି ଜ୍ଞାନ ଉପରେ ନିର୍ଭର କରି ଏବେ ଅନେକ ବ୍ୟାଧି

କେବଳ ଖାଦ୍ୟ ଦେଇହିଁ ଭଲ ହୋଇଯାଉଛି । ଏବର ଗବେଷଣାମୂଳକ ବୈଜ୍ଞାନକ ପରିଭଷାରେ ଉତ୍କୃଷ୍ଟ ଖାଦ୍ୟର ନାମ ସାତ୍ତ୍ୱିକ ବା ରାଜସିକ ନୁହେଁ, ତାର ନାମ ହେଲା 'ବାଲନ୍‌ସଡ୍ ଡାଏଟ' (Balanced Diet) ବା 'सुଷମ ଖାଦ୍ୟ' ଅର୍ଥାତ ତାହା ସେହିପରି ଭୋଜନ, ଯେଉଁଥିରେ ପ୍ରୋଟିନ୍ କାରବୋହାଇଡ୍ରେଟ୍, ଫାଟ୍, ମିନେରଲ୍‌ସ ଏବଂ ସର୍ବୋପରି ଭିଟାମିନ ଯଥାଯଥ ପରିମାଣରେ ଅବସ୍ଥିତ ଥିବ । ପାଶ୍ଚାତ୍ୟ ଦେଶବାସୀଗଣ ଏହି ପ୍ରକାର ଖାଦ୍ୟ ଖାଇଥାନ୍ତି ଓ ସେହି କାରଣରୁ ସେମାନେ ପ୍ରଚୁର କର୍ମ-ଶକ୍ତି ମଧ୍ୟ ପାଇଥାନ୍ତି । ଭରତବର୍ଷରେ ଶିଖମାନେ ସବୁଠାରୁ ଅଧିକ କର୍ମଠ ଗୋଷ୍ଠୀରୂପେ ପ୍ରସିଦ୍ଧ । କୁହାଯାଏ ଯେ, ଶିଖ୍-ଖାଦ୍ୟହିଁ ଭରତରେ ସବୁଠାରୁ ସୁଷମ ଓ ବଳକାରକ । ଏ ସମ୍ପର୍କରେ ପାଠକମାନଙ୍କୁ ଏକ ସଂବାଦ ଏଠାରେ ଦେବା ଆଦୌ ଅପ୍ରାସଂଗିକ ହେବ ନାହିଁ । ହୀରାକୁଦ ବନ୍ଧ ଯୋଜନାର ଆରମ୍ଭ ଅବସ୍ଥାରେ ବହୁ ଶିଖ୍ କେନ୍ଦ୍ର ସରକାରୀ କର୍ମଚାରୀ ସମ୍ବଲପୁର ଆସି, ସେଠୁ ଫେରି ଯାଇଥିଲେ କେବଳ ଏହି ଗୋଟିଏ କାରଣରୁ ଯେ, ସେଠି ସେମାନଙ୍କର ଚାହିଦା ଅନୁସାରେ ପ୍ରଚୁର ଖାଣ୍ଟି ଦୁଧ ମିଳିଲାନି । ଏହି ଲେଖକ ମେହେର କଲେଜର ପ୍ରିନ୍‌ସପାଲ ଥିବାବେଳେ ବରାବର ଲକ୍ଷ୍ୟ କରିଥିଲା ଯେ, ସେହି କଲେଜର, ଭରତର ସବୁ ସଂପ୍ରଦାୟରୁ ମିଶି ରହିଥିବା ପ୍ରାୟ ହଜାରେ ଛାତ୍ରଙ୍କ ଭିତରେ; ହଷ୍ଟେଲରେ ଥିବା କେବଳ ଦୁଇ-ତିନୋଟି ଶିଖ ଛାତ୍ରହିଁ ସେତେବେଳେ ସେ ସହରରେ ଥିବା ଏକମାତ୍ର ଫଳ ଦୋକାନକୁ ବରାବର ଯାଉଥିଲେ, ଫଳ କିଣି ଖାଇବାକୁ । ଅର୍ଥାତ ପ୍ରଚୁର ଦୁଧ ଓ ଫଳ , ଶିଖର ନିତ୍ୟ ଖାଦ୍ୟ । ସାଧାରଣ ଜଣେ କର୍ମଠ ଶିଖ୍ ଦୈନିକ ପ୍ରାୟ ସେରେ ଖଣ୍ଡେ ଦୁଧ ଦରକାର କରେ । ଅଧୁନା-ପ୍ରସିଦ୍ଧ ଖାଣ୍ଟି-ଦହି-ପ୍ରସ୍ତୁତ ଏକ ବଡ-ଗ୍ଲାସେ 'ଲସ୍‌ସି' ସାଧାରଣ ଶିଖର ପ୍ରାତରାଶର ଅଂଶ ମାତ୍ର । ପାଶ୍ଚାତ୍ୟ ଦେଶୀଏ ପ୍ରତ୍ୟହ 'ସାଲାଡ୍' ନାମରେ ମେଂଚ୍ଛଏ କଞ୍ଚାପନିବା ଚୋବାଇ, ଖାଇଥାନ୍ତି;—ଯଥାଯଥ 'ଭିଟାମିନ' ପାଇବା ପାଇଁ । ସେମାନଙ୍କର ଦୈନନ୍ଦିନ ଭୋଜନରେ ଅଣ୍ଡା, ମାଂସ, ମାଖନ, ମାଛ ଓ ଦୁଧର ପ୍ରଚୁର ବ୍ୟବହାର ତ ଜଣା ଶୁଣା କଥା ।

ତେଣୁ ଆମେ ଏ ଯୁଗରେ ଖାଦ୍ୟକୁ ସାତ୍ତ୍ୱିକ, ରାଜସିକ, ତାମସିକ ସଂଜ୍ଞାରେ ବିଚାର କରିବା ନା ଆଧୁନକ ବୈଜ୍ଞାନିକ ପଦ୍ଧତିରେ ?

ଅବଶ୍ୟ ଗୀତା ଚାହାନ୍ତି ଯେ, ଆମେ ସମସ୍ତେ ସାତ୍ତ୍ୱିକ ଜୀବନ ଯାପନ କରୁ ଏବଂ ସେହି ଲକ୍ଷ୍ୟରେ ଆମେ କେବଳ ସାତ୍ତ୍ୱିକ ଖାଦ୍ୟହିଁ ଖାଇବା ଉଚିତ । ଅତି ଉତ୍ତମ ପ୍ରସ୍ତାବ । କିନ୍ତୁ ବିଚାର କରିବାର କଥା ଯେ, ଆମକୁ କଣ ସାତ୍ତ୍ୱିକ

ଖାଦ୍ୟ ପ୍ରତ୍ୟହ ମିଳୁଛି ? ନା ସାତ୍ତ୍ୱିକ ଖାଦ୍ୟ ପ୍ରଚୁର ପରିମାଣରେ ମିଳୁଥିଲେ ମଧ୍ୟ ତାକୁ ଛାଡ଼ଦେଇ ଆମେ ଜାଣି ଜାଣି ତାମସିକ ଖାଦ୍ୟ ଖାଉଛୁ ? ସାତ୍ତ୍ୱିକ ଖାଦ୍ୟ ଯଦି ମହାର୍ଘ ହୁଏ, ଅର୍ଥାତ ଯାହାଙ୍କ କେବଳ ଧନବାନ ଲୋକେହିଁ ଆୟୋଜନ କରିପାରନ୍ତି (ଯାହାହିଁ ସତ୍ୟ ଘଟଣା), ଗୀତାଙ୍କର ଏପରି ଏକ ଅସମ୍ଭବ ଆଦର୍ଶ ଏ ଦେଶର ସାଧାରଣ ପାଠକ ଆଗରେ ଥୋଇବାରେ ଲାଭ କ'ଣ ?

ପୁଣି ଆମ ଭିତରେ ଆଉ ଏକ ଧାରଣା ରହିଛି ଯେ, 'ସାତ୍ତ୍ୱିକ' ଖାଦ୍ୟ ହେଉଛି ନିରାମିଷ ଖାଦ୍ୟ । ଅନ୍ତତଃ ଗୀତାର ସଂପୃକ୍ତ ଶ୍ଳୋକଟିରେ ଏ ପ୍ରକାର ଲେଶମାତ୍ର ବ୍ୟଂଜନା ନାହିଁ । ପୁଣି 'ଜୈବ' ଖାଦ୍ୟ ମାତ୍ରକୁ ଯଦି'ଆମିଷ' ବୋଲି ଧରାଯାଏ, ତେବେ ଦୁଧ ମଧ୍ୟ 'ଜୈବ' ଅର୍ଥାତ୍ ଜୀବ-ଜାତ ତାହା ଉଦ୍ଭିଦ-ଜାତ ନୁହେଁ ଅର୍ଥାତ୍ ଆଦୌ 'ନିରାମିଷ' ନୁହେଁ ।

ପୁଣି ମଧ୍ୟ ବିଚାରିବାର କଥା ଯେ, ତଥାକଥିତ ନିରାମିଷ ବା ସାତ୍ତ୍ୱିକ ଖାଦ୍ୟ କି ମନୁଷ୍ୟ ଭିତରେ ସତ୍ୟରେ ଆଧ୍ୟାତ୍ମିକ ଉନ୍ନତି ଆଣି ଦେଇଥାଏ ? ଆମିଷାଶୀଂକ ମଧ୍ୟରେ କି ଆଧ୍ୟାତ୍ମିକ ଉନ୍ନତ ଦେଖାଯାଏ ନାହିଁ ? ଭାରତବର୍ଷର ଉତ୍ତର, ମଧ୍ୟ ଓ ଦକ୍ଷିଣରେ ଥିବା ବହୁ ଜଣାଶୁଣା କୋଟି କୋଟି ସଂଖ୍ୟକ ବ୍ୟବସାୟୀଗୋଷ୍ଠୀ ସଂପୂର୍ଣ୍ଣ ନିରାମିଷାଶୀ । ଏହି ଶ୍ରେଣୀର ନିରାମିଷାଶୀ ପୁଞ୍ଜିପତି ମାନଙ୍କ ହାତରେହିଁ ଆମଦେଶର ଖାଦ୍ୟୋତ୍ପାଦନର ଓ ଖାଦ୍ୟ ବଣ୍ଟନର ସବୁ ଦଉଡ଼ଯାକ ଯାଇ ସେମାନଙ୍କ ହାତ ମୁଠାରେ । ଫଳରେ ଆଜି ଉତ୍କୃଷ୍ଟ ଅନ୍ନ, ଉତ୍କୃଷ୍ଟ ଦୁଗ୍ଧ ବା ଘୃତ ଯଦି କେହି ଏହି ବିରାଟ ଉପମହାଦେଶରେ ଖାଉଥାଏ ବୋଲି କୁହାଯାଇପାରେ, ତେବେ ସେମାନେ ହେବେ କେବଳ ଆମର ଏହି ସଂପୂର୍ଣ୍ଣ ନିରାମିଷାଶୀ ଜନଗୋଷ୍ଠୀ କି ଆଧ୍ୟାତ୍ମିକ ଭାବରେ ଉନ୍ନତ ? ଅନ୍ତତଃ ରୂପକ ଛଳରେ କୁହାଯାଇ ନ ପାରେ କି ଯେ ଏମାନେ ବାହାରକୁ ନିରାମିଷାଶୀ ହେଲେହେଁ ସତ୍ୟରେ ଏମାନେ କେବଳ ନର-ରକ୍ତ-ସଂପୃକ୍ତ ? କାରଣ ଏ ମାନେ ନିଜ ହାତରେ କୌଣସି ଖାଦ୍ୟ ଦ୍ରବ୍ୟ ଉତ୍ପାଦନ କରୁ ନ ଥିଲେ ମଧ୍ୟ ଏମାନଙ୍କର କୁବୁଦ୍ଧି, ଉତ୍ପାଦକ ଓ ଭକ୍ଷକ, ଉଭୟ ଶ୍ରେଣୀ (ଅର୍ଥାତ୍ ସମଗ୍ରଜାତି) କୁ ସେମାନଂକର ଦୈନନ୍ଦିନ ଜୀବନରେ ଏମାନେ କିପରି ନାକରେ ଦଉଡ଼ ଦେଇ ଟାଣିଥାନ୍ତି ତାହା ଆମେ ସମସ୍ତେ ଅଂଗେ ଅଂଗେ ନିଭଉଛୁ ସକଳ ଖାଦ୍ୟ ଦ୍ରବ୍ୟର ଦୁର୍ମୂଲ୍ୟତା ଓ ଘୋର ପାପ ଅପମିଶ୍ରଣ ଦେଇ । ଏହିକି ନିରାମିଷ ବା ତଥା-କଥିତ 'ସାତ୍ତ୍ୱିକ' ଖାଦ୍ୟରୁ ଉପଜାତ ଆଧ୍ୟାତ୍ମିକ ପ୍ରେରଣା ? ତେଣୁ ନିରାମିଷ ଖାଦ୍ୟ ସହିତ ସାତ୍ତ୍ୱିକତାର କୌଣସି ଅଙ୍ଗାଙ୍ଗୀ ସଂପର୍କ ଅଛି ବୋଲି କହିହେବ କି ?

ଗୀତା ପୁଣି 'ଯାତଯାମ' ଖାଦ୍ୟକୁ ତାମସିକ ବୋଲି ବର୍ଣ୍ଣନା କରିଛନ୍ତି । ଅର୍ଥାତ୍ ସେପରି ଖାଦ୍ୟ ଟାଣ୍ଡା । ଓଡ଼ିଆଙ୍କର 'ପଖାଳ ଭାତ' ଏହି ଶ୍ରେଣୀରେ ପଡ଼ୁଛି । ଯଦିବା ଓଡ଼ିଆଙ୍କର ଖାଦ୍ୟ ଭାବରେ ଏହା ହେୟ ହୋଇପାରେ, କିନ୍ତୁ ପାଠକେ ଜାଣି ବିସ୍ମିତ ହେବେ ଯେ ତୀକ୍ଷ୍ଣ-ମସ୍ତିଷ୍କ ଓ କର୍ମଠତା ପାଇଁ ସମଗ୍ର ବିଶ୍ୱରେ ପ୍ରସିଦ୍ଧ ତାମିଲ ଓ କେରଳୀମାନଙ୍କର ମଧ୍ୟ ଏହା ପ୍ରିୟ, ସୁପରିଚିତ ଦୈନନ୍ଦିନ ଖାଦ୍ୟ । ଏବଂ ବିଶେଷକରି ଶ୍ରମିକ ସଂପ୍ରଦାୟରେ ଏହା ତଥାକଥିତ 'ତାମସିକ' ପଖାଳ ଯେ ଅପରିହାର୍ଯ୍ୟ ଏହା ମଧ୍ୟ ନିଃସନ୍ଦେହ, ପୁଣି ଏବେ ଜଣାଯାଉଛି ଯେ ତଥା-କଥିତ 'ତାମସିକ' ଖାଦ୍ୟ; ଗରିବ ଓଡ଼ିଆର କାଂଜି ଓ ପଖାଳରେ, ପ୍ରଚୁର ଭି-ଜୀବନିକା ଭର୍ତ୍ତି ହୋଇଛି ଏବଂ ତାହାହିଁ ଆମର କୃଷକ-ଶ୍ରମିକ ଶ୍ରେଣୀକୁ ପ୍ରଚୁର କର୍ମ କ୍ଷମତା ଯୋଗାଇ ପାରୁଛି । ତେଣୁ ଖାଦ୍ୟାଖାଦ୍ୟର ଆଲୋଚନା, ଲେଖକର ମତରେ ସାତ୍ତ୍ୱିକ, ରାଜସିକ, ତାମସିକ ଭେଦ ଉପରେ ଠିଆ ନ ହୋଇ, ହେବା ଉଚିତ, ସଂପୂର୍ଣ୍ଣ ବୈଜ୍ଞାନିକ, ଅର୍ଥନୈତିକ ଓ ସାମାଜିକ ଭିତ୍ତିରେ । ଏହି ସଂପର୍କରେ ଯୀଶୁଖ୍ରୀଷ୍ଟଙ୍କ ବାଣୀ ମଧ୍ୟ ଅତ୍ୟନ୍ତ ବ୍ୟଞ୍ଜନାପୂର୍ଣ୍ଣ । ସେ ଖାଦ୍ୟାଖାଦ୍ୟ ସମ୍ବନ୍ଧରେ ଏହିପରି କହିଛନ୍ତି (ବାଇବଲ୍ ସେଣ୍ଟ ମାର୍କ ୭।୧୪)—"ମନୁଷ୍ୟର ବାହାରେ ଥିବା କୌଣସି ଦ୍ରବ୍ୟ ତା'ଭିତରକୁ ଯାଇ ତାକୁ ଅପବିତ୍ର କରି ପକାଇବାର ଆଶଙ୍କା ନାହିଁ । କିନ୍ତୁ ଯାହା ମନୁଷ୍ୟର ଭିତରୁ ବାହାରିଥାଏ (ଅର୍ଥାତ୍ କୁବାକ୍ୟ କୁଚିନ୍ତା ଇତ୍ୟାଦି) ସାଧାରଣତଃ ସେହି ସବୁହିଁ ତାକୁ ଅପବିତ୍ର କରି ପକାଇଥାନ୍ତି । ଯାହାର ଶ୍ରବଣ ଶକ୍ତି ଅଛି, ସେ ଏହାକୁ ଶୁଣି ମନେ ରଖୁ ।"

ବସ୍ତୁତଃ ପ୍ରାୟଇ ଜୀବ-ମାଂସ ଉପରେ ନିର୍ଭର କରୁଥିବା ପାଶ୍ଚାତ୍ୟ ସମାଜରେ ଏହି ଲେଖକ ଏ ପ୍ରକାର ମାନବିକତା, ଭଦ୍ରତା ଓ ଈଶ୍ୱର ପରାୟଣତା ଦେଖିବାକୁ ପାଇଛି ଏବଂ ତାର ବିପରୀତରେ ସାତ୍ତ୍ୱିକ-ଗୁଣ-ସଂପନ୍ନ-ବୋଲି-ନିଜକୁ-ଭାବି ନେଉଥିବା ଭାରତୀୟ ସମାଜରେ ଏ ପ୍ରକାର ଅଭଦ୍ରତା, ଅସଭ୍ୟତା, କ୍ରୁରତା, କୁଟିଳତା ଓ ନୀଚତାକୁ ପ୍ରତ୍ୟକ୍ଷ ଓ ପରୋକ୍ଷରେ ସେ ଭେଟିଛି ଯେ ଆହାର ଉପରେ ଗୀତାର ଏହି ସାତ୍ତ୍ୱିକ-ରାଜସିକ-ତାମସିକ ବିଶ୍ଳେଷଣ, ବହୁଦିନୁ ଲେଖକ ନିକଟରେ ତାର ତାତ୍ପର୍ଯ୍ୟ ହରାଇ ବସିଛି । ପାଠକେ ପୁଣି ମନେରଖନ୍ତୁ ଯେ ଭାରତୀୟ ସଂସ୍କୃତିରେ ନରୋତ୍ତମ ଓ ପୁରୁଷୋତ୍ତମ ବୋଲି ପୂଜା ପାଉଥିବା, ରାମ-ଲକ୍ଷ୍ମଣ-ସୀତା, ଯୁଧିଷ୍ଠିର-ଅର୍ଜ୍ଜୁନ-ଦ୍ରୌପଦୀ ପ୍ରଭୃତି ପ୍ରସିଦ୍ଧ ପୌରାଣିକ ଚରିତ୍ର ସବୁ ସମସ୍ତେ ମାଂସାଶୀ ଥିଲେ । ବୈଦିକ ଋଷି ସବୁ ମାଂସାଶୀ ଥିଲେ ଏବଂ ମତ୍ସ୍ୟ-ମାଂସ ଭକ୍ଷକ ଥିଲେ ରାମକୃଷ୍ଣ ଓ ବିବେକାନନ୍ଦ ।

କିନ୍ତୁ ଏସବୁ ସତ୍ତ୍ୱେ ମନୁଷ୍ୟର କ୍ରିୟା-କର୍ମ-ଚିନ୍ତା ଉପରେ ଖାଦ୍ୟର ପ୍ରଭାବକୁ ଆମେ ଅବଶ୍ୟ ସଂପୂର୍ଣ୍ଣ ଉଡ଼େଇ ଦେଇ ପାରିବା ନାହିଁ । ବୃଷର ଅଭିବୃଦ୍ଧି, ଯାର ଉପରେ ବା ଗାଈମାନଙ୍କର କ୍ଷୀର-ଦେବା-ଶକ୍ତି ସେମାନଙ୍କ ଖାଦ୍ୟ ସହିତ କପରି ଘନିଷ୍ଠ-ସଂପୃକ୍ତ ତାହା ଆମ ସମସ୍ତଙ୍କର ଅଭିଜ୍ଞତା । ଗାନ୍ଧିଜୀ ନିଜ ଖାଦ୍ୟ ବିଷୟରେ ତେଣୁ ଅସମ୍ଭବ ପ୍ରକାରରେ ଜାଗ୍ରତ ଥିଲେ । ଏପରକି, ଆଗାମୀ ଦିନମାନଙ୍କରେ ତାଙ୍କୁ ଯେଉଁ ପ୍ରକାର କାମ କରିବାକୁ ହେବ ସେହି ଅନୁଯାୟୀ ସେହି ଦିନମାନଙ୍କରେ ଫଳ ଖାଦ୍ୟର ପ୍ରକାର ବଦଳାଇବାକୁ ସେ ଆଗରୁ ବନ୍ଦୋବସ୍ତ କରି ରଖୁଥିଲେ ।

କିନ୍ତୁ ପାଠକେ ମନେରଖିବେ ଯେ, ଭାରତର ଦୀନ ଜନତାର ପ୍ରତୀକ ଗାନ୍ଧିଜୀଙ୍କ ଭୋଜନ ମଧ୍ୟ ଥିଲା ଏକ "ବଡ଼ଲୋକୀ" କଥା । ପ୍ରଫେସର ନିର୍ମଳ କୁମାର ବୋଷ ଲେଖିଛନ୍ତି ଯେ, ଗାନ୍ଧିଜୀ ଯାହା ଖାଉଥିଲେ (୧୯୪୭-୪୮ରେ) ସେତେବେଳେ ତାର ଦାମ ପଡ଼ୁଥିଲା ଦିନକୁ ୧୬ ଟଙ୍କା ଖଣ୍ଡେ, ତେଣୁ ଚାହିଁଲେ ମଧ୍ୟ, ଭାରତବର୍ଷରେ କେତେଜଣଙ୍କ ଭାଗ୍ୟରେ ଏପ୍ରକାର 'ସାତ୍ତ୍ୱିକ' ଖାଦ୍ୟ ଜୁଟି ପାରିବ, କେବଳ ଯାହା ଯୋଗୁଁ ହିଁ ଆଧ୍ୟାତ୍ମିକ ଉନ୍ନତି ହେବାର ସମ୍ଭାବନା ?

ଏବଂ ରକ୍ଷଣଶୀଳ ପାଠକେ, ଏସବୁ ଗୀତାଦ୍ରୋହୀ ଆଲୋଚନା ପଢ଼ିଲା ବେଳେ ଦୟାକରି ସ୍ମରଣ ରଖିବେ ଯେ, ଏଇ ଲେଖକ ନିଜେ ସ୍ୱଭାବତଃ ନିରାମିଷ-ଖାଦ୍ୟ-ପ୍ରିୟ ଏବଂ ସେ ଚାହେଁ ଯେ ପୁରୀ ଜଗନ୍ନାଥଙ୍କ ନିରାମିଷ, ଭୋଗହିଁ ଓଡ଼ିଆମାନଙ୍କର ଜାତୀୟ ଖାଦ୍ୟ ହେଉ, କାରଣ ତା'ଠାରୁ ଅଧିକ ସୁଷମ; ପୁଣ୍ୟଗନ୍ଧ, ମେଧ୍ୟ, ସୁସ୍ୱାଦୁ ଓ ରସମୟ ନିରାମିଷ ଖାଦ୍ୟ କଳ୍ପନା କରାଯାଇ ନ ପାରେ, କିନ୍ତୁ ଯାର ଏହା ତାତ୍ପର୍ଯ୍ୟ ନୁହେଁ ଯେ, ଯେଉଁମାନେ ଜଗନ୍ନାଥଙ୍କ ମହାପ୍ରସାଦ ପ୍ରତ୍ୟହ ଭୋଜନ କରନ୍ତି ସେମାନେ ସମସ୍ତେ ବ୍ୟକ୍ତି ନିର୍ବିଶେଷରେ କେବଳ ସାତ୍ତ୍ୱିକ-ଭାବାପନ୍ନ ଲୋକ ।

ବିଷୟଟିର କେବଳ ବୁଦ୍ଧିଯୁକ୍ତ ଓ ଯୁକ୍ତିଯୁକ୍ତ ଆଲୋଚନା ପାଇଁହିଁ ଏତେ ସବୁ କଥା କୁହାଗଲା । ଗୀତାରେ ଯାହା କୁହାଅଛି, ତାହା ବିନା ଆଲୋଚନାରେ ମାନନେବା ପାଇଁ ଗୀତାରେ କୌଣସିଠାରେ ନିର୍ଦ୍ଦେଶ ନାହିଁ ଏବଂ ଯେଉଁ ଚିନ୍ତା ବା ଆଦର୍ଶ ଆଲୋଚିତ ହୋଇ ଗ୍ରହଣ କରାଯାଏ, ତାହା ଅନ୍ଧ-ବିଶ୍ୱାସରେ ବା ବିନାଚିନ୍ତାରେ ଗ୍ରହଣ କରିନେବା ଅପେକ୍ଷା ଯେ, ଅଧିକ ସଭ୍ୟତା ଓ ବିଜ୍ଞତାର ପରିଚାୟକ, ଏହା ପାଠକେ ମାନିନେବେ ବୋଲି ଆଶା କରୁଁ । ଅନ୍ତତଃ ଏ କାଳରେ ଖାଦ୍ୟ-ବିଚାରରେ ସାତ୍ତ୍ୱିକ-ରାଜସିକ-ତାମସିକରୂପକ

ସଂସ୍କାର କଣ ଅର୍ଥ ଅଛି କି ନାହିଁ ଏବଂ ତା'ସହିତ ମନୁଷ୍ୟର ଆଧ୍ୟାତ୍ମିକ ପ୍ରେରଣାରେ କି ଘନିଷ୍ଠ ସଂପର୍କ ତାହା ପାଠକେ ନିଜ ବୁଦ୍ଧି ଓ ଜ୍ଞାନ ଦେଇ ବିଗ୍ଧବ କରିବେ ବୋଲି ଆଶା । ବର୍ତ୍ତମାନ ଅନ୍ୟ ପ୍ରସଙ୍ଗକୁ ଯିବା ।

( ୧୧ )

ଅଫଳାକାଙ୍କ୍ଷିଭିର୍ଯଜ୍ଞୋ ବିଧିଦିଷ୍ଟୋ ଯ ଇଜ୍ୟତେ
ଯଷ୍ଟବ୍ୟମେବେତି ମନଃ ସମାଧାୟ ସ ସାତ୍ତ୍ୱିକଃ । ୧୧ ।

ଅଫଳାକାଙ୍କ୍ଷିଭିଃ ଯଷ୍ଟବ୍ୟଂ ଏବ (ଫଳାକାଂକ୍ଷା ନ ରଖି ହିଁ ଲୋକେ ଯଜ୍ଞ କରିବା ଉଚିତ) ଇତି ମନଃ ସମାଧାୟ (ଏହିପରି ମନକୁ ସମାହିତ କରି) ବିଧିଦିଷ୍ଟ ଯଃ ଯଜ୍ଞଃ ଇଜ୍ୟତେ ଶାସ୍ତ୍ର ବିଧାନାନୁଯାୟୀ ଯେଉଁ ଯଜ୍ଞ କରଯାଏ) ସଃ ସାତ୍ତ୍ୱିକଃ (ତାହା ସାତ୍ତ୍ୱିକ) ।

ଅନୁବାଦ—

ହେ ଅର୍ଜୁନ, କୌଣସି ପାର୍ଥିବ ଫଳାକାଂକ୍ଷା ନରଖି, ଶାସ୍ତ୍ରୀୟ ବିଧି ଅନୁଯାୟୀ, ପାରିବାରିକ, ସାମାଜିକ ବା ବ୍ୟକ୍ତିଗତ କର୍ତ୍ତବ୍ୟ ଭାବରେହିଁ ଯେଉଁ ଯଜ୍ଞ ସାମାହିତ ଚିତ୍ତରେ କରଯାଏ ସେହି ଯଜ୍ଞକୁ ସାତ୍ତ୍ୱିକ ବୁଝାଯିବ ।

( ୧୨ )

ଅଭିସନ୍ଧାୟ ତୁ ଫଳଂ ଦମ୍ଭାର୍ଥମପି ଚୈବ ଯତ୍
ଇଜ୍ୟତେ ଭରତ ଶ୍ରେଷ୍ଠ ତଂ ଯଜ୍ଞଂ ବିଦ୍ଧି ରାଜସଂ । ୧୨ ।

ତୁ ଫଳଂ ଅଭିସନ୍ଧାୟ ( କିନ୍ତୁ ଫଳ କାମନା ରଖି ) ଅପିଚ ଦମ୍ଭାର୍ଥଂ ଏବ ( ଏବଂ ନିଜର ବଡ଼ିମା ଦେଖାଇବା ପାଇଁ ) ଯତ୍ ଇଜ୍ୟତେ (ଯେଉଁ ଯଜ୍ଞ ଅନୁଷ୍ଠିତ ହୁଏ ) [ହେ] ଭରତ ଶ୍ରେଷ୍ଠ (ଅର୍ଜୁନ) ତଂ ଯଜ୍ଞଂ ରାଜସଂ ବିଦ୍ଧି ( ସେ ଯଜ୍ଞକୁ ରାଜସିକ ଯଜ୍ଞ ବୋଲି ଜାଣିବ ) ।

ଅନୁବାଦ—

ଯେଉଁ ଯଜ୍ଞ ନିଜର ଧନ କ୍ଷମତାର ପ୍ରଚାର ପାଇଁ ବା ପାର୍ଥିବ ଲାଭକୁ ଆଖିରେ ରଖି କରଯାଏ , ହେ ଅର୍ଜୁନ, ସେ ଯଜ୍ଞ ନିଶ୍ଚିତ ଭାବରେ ରାଜସିକ ବୋଲି ଜାଣିବ ।

( ୧୩ )

ବିଧିହୀନମସୃଷ୍ଟାନ୍ନଂ ମନ୍ତ୍ରହୀନ ମଦକ୍ଷିଣଂ
ଶ୍ରଦ୍ଧାବିରହିତଂ ଯଜ୍ଞଂ ତାମସଂ ପରିଚକ୍ଷତେ । ୧୩ ।

ବିଧିହୀନଂ (ଶାସ୍ତ୍ରୀୟ ବିଧି ବିଧାନ ଶୂନ୍ୟ) ଅସୃଷ୍ଟାନ୍ନଂ (ଅନ୍ନଦାନ ହୀନ) ମନ୍ତ୍ର ହୀନଂ (ମନ୍ତ୍ର ବର୍ଜିତ) ଅଦକ୍ଷିଣଂ (ଦକ୍ଷିଣାଶୂନ୍ୟ) ଶ୍ରଦ୍ଧା ବିରହିତଂ (ଶ୍ରଦ୍ଧା ବିହୀନ) ଯଜ୍ଞଂ ତାମସଂ ପରିଚକ୍ଷତେ (ଯେଉଁ ଯଜ୍ଞ, ତାକୁ ତାମସ କୁହାଯାଇଥାଏ ) ।

## ଅନୁବାଦ—

ହେ ଅର୍ଜୁନ, ଯେଉଁ ଯଜ୍ଞ, ଏକେ ଶାସ୍ତ୍ର-ବିଧାନ-ହୀନ ପୁଣି ଅନ୍ନଦାନାଦି ଶୂନ୍ୟ, ଦକ୍ଷିଣାଦି ଶୂନ୍ୟ, ଯଥୋଚିତ ମନ୍ତ୍ରହୀନ ଏବଂ ସର୍ବୋପରି ଶ୍ରଦ୍ଧା-ଶୂନ୍ୟ, ତାହାକୁ ସର୍ବଥା ତାମସିକ ବୋଲି ଜାଣିବ ।

## ବିଶେଷ ଭାଷ୍ୟ—

ଗୀତାର ତୃତୀୟ ଓ ଚତୁର୍ଥ ଅଧ୍ୟାୟ ମାନଙ୍କରେ ଗୀତା ଯଜ୍ଞ ଉପରେ ଆଗରୁ ଦୀର୍ଘ ଆଲୋଚନା କରି ସାରିଛନ୍ତି ଏବଂ ଆମେ ସେତେବେଳେ ଦେଖାଇ ଦେଇଛୁ ଯେ, ଗୀତାଙ୍କର 'ଯଜ୍ଞ' ଶବ୍ଦର ନିଜସ୍ୱ ବ୍ୟାଖ୍ୟା ପ୍ରକୃତରେ ବିପ୍ଳବାତ୍ମକ । 'ସହଯଜ୍ଞାଃ ପ୍ରଜାଃ' (ଈଶ୍ୱରଙ୍କ ଦ୍ୱାରା ଜନସମାଜ ଯଜ୍ଞ ସହିତ ହିଁ ସୃଷ୍ଟ ହୋଇଛନ୍ତି ) ବା "ଏବଂ ପ୍ରବର୍ତ୍ତିତଂ ଚକ୍ରଂ" ( ଏହି ପ୍ରକାରେ ସମଗ୍ର ସୃଷ୍ଟିରେ ଦେଖାଦେଉଥିବା ଯଜ୍ଞଚକ୍ର) ଇତ୍ୟାଦିରେ ଅନ୍ତର୍ନିହିତ ଉପଧାର ପ୍ରକୃତରେ ଅସାଧାରଣ, ବିଶେଷ କରି ଆମେ ଯେତେବେଳେ ଗୀତା ରଚନାର କାଳକୁ ସ୍ମରଣ କରୁ । 'ଯଜ୍ଞ' ଏକ ପୁରାପୁରି ବୈଦିକ-ବ୍ରାହ୍ମଣ୍ୟ ଅନୁଷ୍ଠାନ ଏବଂ ଏହା ଇହ ଓ ପର ଜୀବନରେ ବିଶେଷ ବିଶେଷ ଫଳ ଲାଭପାଇ ଆଚରିତ ହେଉଥିଲା । କିନ୍ତୁ ଗୀତାର ସାମଗ୍ରିକ ଉପଧାର କୌଣସି 'ଫଳଲାଭ' ପାଇଁ ନୁହେଁ , ତାହା କେବଳ ଧର୍ମପାଇଁ, ଆଧ୍ୟାତ୍ମିକ ଉନ୍ନୟନ ପାଇଁ, ଆତ୍ମାର ବିଶ୍ୱାତ୍ମା ସହିତ ମିଳନ ପାଇଁ । ତେଣୁ ଗୀତା ଫଳାକାଂକ୍ଷୀ, ବାହ୍ୟ ଓ ଦ୍ରବ୍ୟବହୁଳ (ଅର୍ଥାତ୍ ବ୍ୟୟସାଧ୍ୟ ଏବଂ ସେହି କାରଣରୁ କେବଳ ଧନୀଲୋକଙ୍କ ଦ୍ୱାରା ସମ୍ଭବ ବୈଦିକ 'ଯଜ୍ଞ'ର ସ୍ପଷ୍ଟ ବିରୋଧ କରିଛନ୍ତି ଏବଂ 'ଯଜ୍ଞ'କୁ ଏକ ମାନସିକ ଓ ଆତ୍ମିକ ସାଧନା ରୂପେ ଠିଆ କରାଇଛନ୍ତି । ଗୀତାଙ୍କର ଭାଷାରେ—

ଶ୍ରେୟାନ୍ ଦ୍ରବ୍ୟମୟାତ୍ ଯଜ୍ଞାତ୍ ଜ୍ଞାନ ଯଜ୍ଞ ପରନ୍ତପ, (୪/୩୩) ।

ଯେକୌଣସି ଦ୍ରବ୍ୟବହୁଳ ଯଜ୍ଞ ଅପେକ୍ଷା ହେ ଅର୍ଜୁନ, ଜ୍ଞାନଯଜ୍ଞ ହିଁ ଶ୍ରେଷ୍ଠ )।

ଜ୍ଞାନ ଯଜ୍ଞ କ'ଣ ? ଜ୍ଞାନ ଯଜ୍ଞ ହେଉଛି ଏକପକ୍ଷରେ ଶାସ୍ତ୍ରାଧ୍ୟୟନ, ଏବଂ ଅନ୍ୟ ପକ୍ଷରେ ଯେକୌଣସି ଛଦ୍ୟା ଦେଇ ଗଭୀର ମନନ ଓ ତହିଁରେ କଠୋର ବୁଦ୍ଧିଯୋଗର ପ୍ରୟୋଗ କରି ସତ୍ୟୋଦ୍‌ଘାଟନ ।

ଏହିପ୍ରକାର ଯଜ୍ଞର ସମର୍ଥନରେ ଗୀତା ଦଶମ ଅଧ୍ୟାୟରେ ମଧ୍ୟ କହିଛନ୍ତି "ଯଜ୍ଞାନାଂ ଜପଯଜ୍ଞୋଽସ୍ମି" (ମୁଁ ସକଳ ଯଜ୍ଞମାନଙ୍କ ଭିତରେ ଜପ-ଯଜ୍ଞ, ଅର୍ଥାତ୍ ମନନ ବା ଏକାଗ୍ର ମାନସିକ ସାଧନା) ।

କିନ୍ତୁ ଯଜ୍ଞର ଏ ପ୍ରକାର ଉଦାର, ମହତ୍, ଯୁକ୍ତିଯୁକ୍ତ, ସାରବାନ୍, ସାଧାରଣ ଜନ-ସୁଲଭ ବ୍ୟାଖ୍ୟା ଆଗରୁ ଦେଇ ସାରିଲା ପରେ, ଗୀତାଙ୍କର, ଶେଷ ଆଡକୁ ଯଜ୍ଞର ଏହି ସାତ୍ତ୍ୱିକ, ରାଜସିକ, ତାମସିକ ପ୍ରକାରର ବର୍ଣ୍ଣନା, ଏକପ୍ରକାର 'ଆଣ୍ଟି କ୍ଲାଇମେକ୍‌ସ' ବା ଅପକର୍ଷାବତରଣ ପରି ବୋଧ ହେଉ ନାହିଁକି ? ବୈଦିକ ଯଜ୍ଞସବୁ, ଶେଷକୁ ଜନତାକୁ ଅନ୍ନ ବିତରଣ ଓ ବ୍ରାହ୍ମଣକୁ ଦକ୍ଷିଣା ବିତରଣର ବ୍ୟୟ ବହୁଳତା ଯୋଗୁଁ, ସାଧାରଣ ଲୋକର କର୍ତ୍ତବ୍ୟ ହୋଇ ରହି ପାରିଲା ନାହିଁ । ରାଜା ଓ ଧନୀମାନେ ମଧ୍ୟ ଶେଷକୁ ଏ ଭାର ବହନ କରିବା କଷ୍ଟକର ହେଲା ଏବଂ କରୁଣାମୟ ବୁଦ୍ଧ, ବୈଦିକ ଯଜ୍ଞ ନାମରେ ଯେଉଁ ଅଗଣିତ ପଶୁହତ୍ୟା ହେଉଥିଲା ଏବଂ ଶୂଦ୍ର ଜନତାକୁ ଖରା କାକରରେ ପଡ଼ ଯେମିତି ମାସ ମାସ ଧରି ବେଠି ଖଟିବାକୁ ପଡୁଥିଲା, ତାର ସ୍ପଷ୍ଟ ପ୍ରତିବାଦ କରିଥିଲେ । ଗୀତା ସେହି ପ୍ରତିବାଦକୁ ମାନି ନେଇ ଏବଂ ଯଜ୍ଞର ଚମତ୍କାର ଓ ସାରବାନ୍ ନୂତନ ବ୍ୟାଖ୍ୟା ଦେଇ ସାରିଲା ପରେ, ପୁଣି 'ଦକ୍ଷିଣା' ଓ 'ଅନ୍ନଦାନ' ରୂପକ ସମ୍ପୂର୍ଣ୍ଣ ବାହ୍ୟ କର୍ମ ଉପରେ 'ଯଜ୍ଞ'ର ଉତ୍କର୍ଷକୁ ଯିବାରେ, ଏହି ଲେଖକ, ଏଠାରେ ବ୍ରାହ୍ମଣ ଧର୍ମର ନୈଷ୍ଠିକ ଶ୍ରେଣୀ ପକ୍ଷରୁ ଜୋର କରି ଗୀତାର ସ୍ୱକୀୟ ବିପ୍ଳବାତ୍ମକ ଭାବ ଧାରରେ କମ୍ପମାଇବ୍ ବା ଏକ ଆପୋଷ ମିଳାମିଶାର ଚେଷ୍ଟା କରାଯାଇଛି ବୋଲି ଆଶଙ୍କା କରୁଛ । ପୁଣି ସାତ୍ତ୍ୱିକ ବା ରାଜସିକ ବା ତାମସିକ—କେଉଁ ପ୍ରକାର ହେଲେ ଯଜ୍ଞ କିଏ କରୁଛି ବା କରିପାରିବ ମଧ୍ୟ ? ଯାହା ଗୀତା-ଭୂମି ଭାରତବର୍ଷରେ ଆଜି ଏକାନ୍ତ ଅବାନ୍ତର । ସେ ଜ୍ଞାନର ବା ପ୍ରସ୍ତରର ସାର୍ବଜନୀନତା ବା ସାର୍ବଭୌମତା କାହିଁ ?

( ୧୪ )

ଦେବଦ୍ୱିଜ ଗୁରୁପ୍ରାଜ୍ଞ ପୂଜନଂ ଶୌଚମାର୍ଜବଂ
ବ୍ରହ୍ମଚର୍ଯ୍ୟ ମହିଂସା ଚ ଶାରୀରଂ ତପ ଉଚ୍ୟତେ । ୧୪ ।

ଦେବ ଦ୍ୱିଜ ଗୁରୁ ପ୍ରାଜ୍ଞ ପୂଜନଂ (ଦେବତା, ବ୍ରାହ୍ମଣ, ଗୁରୁ ଓ ଜ୍ଞାନୀ ବ୍ୟକ୍ତିମାନଙ୍କର ପୂଜା ବା ସେମାନଙ୍କ ପ୍ରତି ସମ୍ମାନ), ଶୌଚଂ (ଶୁଚିତା) ଆର୍ଜବଂ (ସରଳତା ବ୍ରହ୍ମଚର୍ଯ୍ୟଂ (ଯୌନ ଶୁଚିତା ଓ ସ୍ଥିରତା) ଅହିଂସା ଚ (ଏବଂ ଅହିଂସା) ଶାରୀରଂ ତପ ଉଚ୍ୟତେ (ଶାରୀରିକ ତପସ୍ୟା କୁହାଯାଏ) ।

## ଅନୁବାଦ –

ହେ ଅର୍ଜୁନ, ଦେବତା, ବ୍ରାହ୍ମଣ, ଗୁରୁଜନ ଓ ପଣ୍ଡିତମାନଙ୍କ ପ୍ରତି ଅନ୍ତତଃ ବାହ୍ୟ ସମ୍ମାନ ଦାନ ଏବଂ ପ୍ରାଣୀହତ୍ୟା ନ କରିବା ଓ ଯୌନ-ବ୍ୟଭିଚାର ନ କରିବା ଏବଂ ଅକପଟ ରହିବା ଓ ବାହ୍ୟ ଓ ଅନ୍ତରରେ ଶୁଚି ରହିବା—ଏ ସବୁକୁ ମଧ୍ୟ ତପସ୍ୟା କୁହାଯିବ, ଯଦି ବା ଏହା ହେବ କେବଳ ଶାରୀରିକ ତପସ୍ୟା ।

( ୧୫ )

ଅନୁଦ୍‌ବେଗକରଂ ବାକ୍ୟଂ ସତ୍ୟଂ ପ୍ରିୟହିତଂଚ ଯତ୍‌
ସ୍ୱାଧ୍ୟାୟାଭ୍ୟାସନଂ ଚୈବ ବାଙ୍‌ମୟଂ ତପଃ ଉଚ୍ୟତେ । ୧୫ ।

ଯତ୍‌ବାକ୍ୟଂ ଅନୁଦ୍‌ବେଦକରଂ (ଯାହା ଅନ୍ୟ ମନରେ କୌଣସି ଉଦ୍‌ବେଗ ସୃଷ୍ଟିକରେ ନାହିଁ) ସତ୍ୟଂ (ଯାହା ସତ୍ୟ) ପ୍ରିୟହିତଂ ଚ (ଯାହା ପ୍ରିୟ ଓ ହିତଜନକ) [ଏ ପ୍ରକାର ଯେଉଁ କଥା] ସ୍ୱାଧ୍ୟାୟାଭ୍ୟାସନଂ ଚ ଏବ (ପୁଣି ଶାସ୍ତ୍ର ପଠନର ଅଭ୍ୟାସ) [ଏହାକୁ] ବାଙ୍‌ମୟଂ ତପଃ ଉଚ୍ୟତେ (ବାଚିକ ତପସ୍ୟା କୁହାଯାଏ ।

## ଅନୁବାଦ—

ହେ ଅର୍ଜୁନ, ଯେଉଁ ବଚନ ଅନ୍ୟ ମନରେ ଉଦ୍‌ବେଗ ସୃଷ୍ଟିକରେ ନାହିଁ, ଯାହା ସତ୍ୟ ଓ ଅନ୍ୟର ହିତକର ଓ ଶ୍ରୁତି ସୁଖକର ଏବଂ ଶାସ୍ତ୍ରାଲୋଚନା—ଏ ସବୁର ସମାହାରକୁ ବାଙ୍‌ମୟ ତପସ୍ୟା କୁହାଯାଇଥାଏ ।

## ବିଶେଷ ଭାଷ୍ୟ—

ପ୍ରିୟ ଓ ହିତ କଥା ସମ୍ପର୍କରେ ମହାଭାରତ (ଶାନ୍ତପର୍ବ ୬୩, ୧୭)ର ପ୍ରସିଦ୍ଧ ବାକ୍ୟ ସ୍ମରଣୀୟ—

"ଅପ୍ରିୟସ୍ୟ ଚ ପଥ୍ୟସ୍ୟ
ବକ୍ତା ଶ୍ରୋତାହି ଦୁର୍ଲଭଃ"

(ପଥ୍ୟ ଅର୍ଥାତ ଉପକାରକ ହେଲେହେଁ ଅପ୍ରିୟ ବାକ୍ୟ କହିବା ଓ ଶୁଣିବା ଏହି ଉଭୟ ଶ୍ରେଣୀର ଲୋକ ପୃଥିବୀରେ ଦୁର୍ଲଭ) ।

( ୧୬ )

ମନଃ ପ୍ରସାଦଃ ସୌମ୍ୟତ୍ୱଂ ମୌନମାତ୍ମ ବିନଗ୍ରହଃ
ଭାବ ସଂଶୁଦ୍ଧିରିତ୍ୟେତତ୍ ତପୋ ମାନସ ମୁଚ୍ୟତେ । ୧୬ ।

ମନଃ ପ୍ରସାଦଃ (ଚିତ୍ତର ପ୍ରସନ୍ନତା) ସୌମ୍ୟତ୍ୱଂ (ଅକ୍ରୂରତା, ଭଦ୍ରତା) ମୌନଂ (ଅପ୍ରଗଲ୍‌ଭତା, ବେଶି କଥା ନ କହିବା) ଆତ୍ମ-ବିନଗ୍ରହଃ (ଆତ୍ମ ସଂଯମ) ଭାବ ସଂଶୁଦ୍ଧଃ (ନିଜ ଚିନ୍ତାରାଜିର ପବିତ୍ରତା) ଇତି ଏତତ୍ ମାନସଂ ତପଃ ଉଚ୍ୟତେ (ଏହି ସବୁକୁ ମାନସିକ ତପସ୍ୟା କୁହାଯାଏ) ।

## ଅନୁବାଦ—

ହେ ଅର୍ଜ୍ଜୁନ; ଚିତ୍ତକୁ ସର୍ବଦା ପ୍ରସନ୍ନ ରଖିବା, ଅନିଷ୍ଠୁରତା ଓ ଭଦ୍ର ବ୍ୟବହାର, ଅକାରଣ ବେଶିକଥା-ନ କହିବା , ଆତ୍ମସଂଯମ, ନିଜ ଚିନ୍ତାରାଜିର ପବିତ୍ରତା, ଏ ସବୁର ସମାହାରକୁ ମାନସିକ ତପସ୍ୟା କୁହାଯାଇଥାଏ ।

( ୧୭ )

ଶ୍ରଦ୍ଧୟା ପରୟା ତପ୍ତଂ ତପସ୍ତତ୍ ତ୍ରିବିଧଂ ନରୈଃ
ଅଫଳାକାଂକ୍ଷିଭିର୍ଯୁକ୍ତୈ ସାତ୍ତ୍ୱିକଂ ପରିଚକ୍ଷତେ । ୧୭ ।

ଅଫଳାକାଂକ୍ଷିଭିଃ (ଫଳଲାଭଆଶା ରହିତ ଯୁକ୍ତୈଃ ନରୈଃ (ଈଶ୍ୱରନ୍ୟସ୍ତ ଚିତ୍ତ ଲୋକମାନଙ୍କ ଦ୍ୱାରା) ପରୟା ଶ୍ରଦ୍ଧୟା ତପ୍ତଂ (ପରମ ଶ୍ରଦ୍ଧାର ସହିତ ଅନୁଷ୍ଠିତ) ତତ୍ ତ୍ରିବିଧଂ ତପଃ (ଉପରେ କୁହାଯାଇଥିବା କାୟିକ, ବାଚିକ ଓ ମାନସିକ ତ୍ରିବିଧ ତପସ୍ୟାକୁ) ସାତ୍ତ୍ୱିକଂ ପରିଚକ୍ଷତେ (ସାତ୍ତ୍ୱିକ କୁହାଯାଇଥାଏ) ।

## ଅନୁବାଦ—

ହେ ଅର୍ଜ୍ଜୁନ, ଏକାନ୍ତ ଭାବରେ ଈଶ୍ୱର-ସମର୍ପିତ ପ୍ରାଣ ଲୋକଙ୍କ ଦ୍ୱାରା ପରମ ଶ୍ରଦ୍ଧାର ସହିତ ଅଥଚ କୌଣସି ଫଳାଶା ନରଖି ଅନୁଷ୍ଠିତ ଏହି ଯେଉଁ

ତିନିପ୍ରକାର ଶାରୀରିକ, ବାଚିକ ଓ ମାନସିକ ତପସ୍ୟାର କଥା ଉପରେ କୁହାଗଲା ସେହି ତିନୋଟିଯାକଙ୍କୁ ସାତ୍ତ୍ୱିକ ତପସ୍ୟା ବୋଲି ଧରଯାନ୍ତି ।

( ୧୮ )

ସତ୍କାରମାନ ପୂଜାର୍ଥଂ ତପୋ ଦମ୍ଭେନ ଚୈବ ଯତ୍
କ୍ରିୟତେ ତଦିହ ପ୍ରୋକ୍ତଂ ରାଜସଂ ଚଳମଧ୍ରୁବଂ । ୧୮ ।

ସତ୍କାର ମାନ ପୂଜାର୍ଥଂ [କିନ୍ତୁ] (ଅନ୍ୟମାନଙ୍କ ଠାରୁ ସତ୍କାର, ସମ୍ମାନ ବା ପୂଜା ପାଇବା ପାଇଁ) ଦମ୍ଭେନ ଚ ଏବ (ଏବଂ ନିଜର ଦାମ୍ଭିକ ଭାବକୁ ଖୁସି କରାଇବା ପାଇଁ) ଯତ୍ ତପଃ କ୍ରିୟତେ (ଯେଉଁ ତପସ୍ୟା କରଯାଏ) ଇହ ଏହି ସଂସାରରେ) ତତ୍ (ତାହା) ଚଳଂ, ଅଧ୍ରୁବଂ (ସ୍ଥିର ରହେନା ଏବଂ ତାହାର ଫଳ ମଧ୍ୟ ଅନିଶ୍ଚିତ । [ସେହି] ତପଃ(ତପସ୍ୟାକୁ) ରାଜସଂ ପ୍ରୋକ୍ତଃ (ରାଜସ ବୋଲି କୁହାଯାଇଥାଏ) ।

**ଅନୁବାଦ—**

କିନ୍ତୁ ହେ ଅର୍ଜ୍ଜୁନ, ଅନ୍ୟମାନଙ୍କଠାରୁ ମାନ ଓ ପ୍ରଶଂସା ଶୁଣିବା ପାଇଁ ବା ନିଜର ଧନ-କ୍ଷମତା ଦେଖେଇ ହେବାପାଇଁ ଯେଉଁ ତପ ଆଚରଣ କରଯାଇ ଥାଏ, ତାହା ରାଜସିକ ତପ ଏବଂ ତାହାର ପରିଣତି ମଧ୍ୟ ଅଚିରସ୍ଥାୟୀ ହୋଇଥାଏ । (ଅର୍ଥାତ୍ ଏସବୁ କପଟତା ଅଳ୍ପଦିନେ ଧରପଡଯାଏ) ।

( ୧୯ )

ମୂଢଗ୍ରାହେଣାତ୍ମନୋ ଯତ୍ ପୀଡୟା କ୍ରିୟତେ ତପଃ
ପରସ୍ୟୋତ୍ ସାଦନାର୍ଥଂ ବା ତତ୍ତାମସ ମୁଦାହୃତଂ । ୧୯ ।

ମୂଢଗ୍ରାହେଣ (ଅବିବେଚନା ସହିତ) ଆତ୍ମନଃ ପୀଡୟା (ନିଜକୁ କଷ୍ଟ ଦେଇ) ପରସ୍ୟ ଉତ୍ସାଦନାର୍ଥଂ (ପରର ବିନାଶ ପାଇଁ) ଯତ୍ ତପଃ କ୍ରିୟତେ (ଯେଉଁ ତପସ୍ୟା କରଯାଏ) ତତ୍ ତାମସଂ ଉଦାହୃତଂ (ତାହାକୁ ତାମସ କୁହାଯାଏ) ।

**ଅନୁବାଦ—**

ହେ ଅର୍ଜ୍ଜୁନ, ଅବିବେଚନାର ସହିତ କେବଳ ପରର ଅନିଷ୍ଟ ପାଇଁ ନିଜକୁ କଷ୍ଟ ଦେଇ ଯେଉଁ ତପ କରଯାଏ ତାକୁ ତାମସ ତପ କୁହାଯାଏ ।

( ୨୦ )

ଦାତବ୍ୟମିତ ଯଦ୍ଦାନଂ ଦୀୟତେଽନୁପକାରିଣେ
ଦେଶେ କାଳେ ଚ ପାତ୍ରେ ଚ ତଦ୍ଦାନଂ ସାତ୍ତ୍ୱିକଂ ସ୍ମୃତଂ । ୨୦ ।

ଅନୁପକାରିଣେ (ଯାହାଠୁ ପ୍ରତିଦାନ ଆଶା କରଯାଏ ନାହିଁ) [ଏବଂ] ଦାତବ୍ୟଂ ଇତ (ଦେବାହିଁ କର୍ତ୍ତବ୍ୟ ଏହି ବୁଦ୍ଧିରେ) ଦେଶେ କାଳେ ଚ ପାତ୍ରେ ଚ (ଯଥା ଦାରିଦ୍ର୍ୟ ପୀଡ଼ିତ ସ୍ଥାନ,ଦୁର୍ଭିକ୍ଷ ବା ସଂକ୍ରାମକ ରୋଗ ପ୍ରାଦୁର୍ଭାବରେ ସମୟ ସମୟ ଏବଂ ପ୍ରକୃତ ଦୁଃଖୀ ଜାଣି ଯଥା ପାତ୍ରରେ) ଯତ୍ ଦାନଂ ଦୀୟତେ (ଯେଉଁ ଦାନ ଦିଆଯାଏ) ତତ୍ ଦାନଂ ସାତ୍ତ୍ୱିକଂ ସ୍ମୃତଂ (ସେହି ଦାନକୁ ସାତ୍ତ୍ୱିକ କୁହାଯାଏ) ।

**ଅନୁବାଦ—**

ହେ ଅର୍ଜ୍ଜୁନ, ଯେଉଁଠି ଦେବାର ଆବଶ୍ୟକତା ଅଛି, ଦେଶ-କାଳ-ପାତ୍ରର ଯଥାର୍ଥତାରେ ପ୍ରତିଦାନର ଆଶା ନରଖି ଯେଉଁ ଦାନ ଦିଆଯାଏ, ତାହା ସାତ୍ତ୍ୱିକ ଦାନ ବୋଲି ଧରଯିବ ।

( ୨୧ )

ଯତ୍ତୁ ପ୍ରତ୍ୟୁପକାରାର୍ଥଂ ଫଳମୁଦ୍ଦିଶ୍ୟ ବା ପୁନଃ
ଦୀୟତେ ଚ ପରିକ୍ଲିଷ୍ଟଂ ତଦ୍ଦାନଂ ରାଜସଂ ସ୍ମୃତଂ । ୨୧ ।

ପୁନଃ (ପୁଣି) ଯତ୍ତୁ (ଯାହା) ପ୍ରତ୍ୟୁପକାରାର୍ଥଂ (ପ୍ରତ୍ୟୁପକାର ଆଶାରେ) ଫଳଂ ଉଦ୍ଦିଶ୍ୟ ବା (ଅଥବା ଫଳ କାମନାରେ) ପରିକ୍ଲିଷ୍ଟଂ (ମନର କଷ୍ଟ, ଅର୍ଥାତ ଅନିଚ୍ଛାସତ୍ତ୍ୱେ) ଦୀୟତେ (ଦିଆ ହୋଇଥାଏ) ତଦାନଂ ରାଜସଂ ସ୍ମୃତଂ (ତାହାକୁ ରାଜସିକ ଦାନ କୁହାଯାଏ) ।

**ଅନୁବାଦ—**

ଜନ୍ତୁ ପ୍ରତ୍ୟୁପକାର ବା ଫଳ ଆଶା କରି ବା ବାଧ୍ୟହୋଇ ଯେଉଁ ଦାନ ଦିଆଯାଏ ତାହା ରାଜସିକ ଦାନ ବୋଲି ଧରଯିବ ।

( ୨୨ )

ଅଦେଶ କାଳେ ଯାଦ୍ଦାନମପାତ୍ରେଭ୍ୟଶ୍ଚ ଦୀୟତେ
ଅସତ୍କୃତମବଜ୍ଞାତଂ ତତ୍ତାମସମୁଦାହୃତଂ । ୨୨ ।

ଅଦେଶ କାଳେ (ଅନୁପଯୁକ୍ତ ସ୍ଥାନ ଓ ସମୟରେ) ଅପାତ୍ରେଭ୍ୟଃ ଚ (ପୁଣି ଅନୁପଯୁକ୍ତ ଲୋକକୁ) ଅସତ୍କୃତଂ (ଅସମ୍ମାନରେ) ଅବଜ୍ଞାତଂ (ଅପମାନିତ କଲା ଭଳିଆ) ଯତ୍‌ଦାନଂ ଦୀୟତେ (ଯେଉଁ ଦାନ ଦିଆଯାଏ) ତତ୍ ତାମସଂ ଉଦାହୃତଂ ତାହାକୁ ତାମସିକ ଦାନ କୁହାଯାଇଥାଏ ।

## ଅନୁବାଦ—

ଅନୁପଯୁକ୍ତ ସ୍ଥାନ ଓ ଅବସ୍ଥାରେ, ଅନୁପଯୁକ୍ତ ଲୋକକୁ ଅସମ୍ମାନ ଓ ଅବମାନନା ସହିତ ଯେଉଁ ଦାନ ଦିଆଯାଏ, ତାହା ତାମସିକ ଦାନ ।

( ୨୩ )

ଓଁ ତତ୍‌ସଦିତି ନିର୍ଦ୍ଦେଶୋ ବ୍ରହ୍ମଣ ସ୍ତ୍ରିବିଧଃ ସ୍ମୃତଃ
ବ୍ରାହ୍ମଣାସ୍ତେନ ବେଦାଶ୍ଚ ଯଜ୍ଞାଶ୍ଚ ବିହିତାଃ ପୁରା । ୨୩ ।

ଓଁ ତତ୍ ସତ୍ ଇତି ତ୍ରିବିଧଃ ବ୍ରହ୍ମଣଃ ନିର୍ଦ୍ଦେଶଃ ସ୍ମୃତଃ (ଓଁ ତତ୍ ସତ୍ —ଏହିପରି ତିନି ପ୍ରକାରରେ ବ୍ରହ୍ମଙ୍କୁ ନିର୍ଦ୍ଦେଶିତ କରଯାଇଛି) ତେନ ବ୍ରାହ୍ମଣାଃ ବେଦାଃ ଯଜ୍ଞାଶ୍ଚ ପୁରା ବିହିତାଃ (ସେହି ନିର୍ଦ୍ଦେଶ ଅନୁସରଣ କରି ପ୍ରାଚୀନ କାଳରୁ, ବେଦ, ବେଦଜ୍ଞ ବ୍ରାହ୍ମଣ ଓ ଯଜ୍ଞ ସୃଷ୍ଟି ହୋଇ ଅଛନ୍ତି) ।

## ଅନୁବାଦ—

ଓଁ ତତ୍, ସତ—ବ୍ରହ୍ମଙ୍କର ଏ ହେଲା ତ୍ରିବିଧ ପ୍ରତୀକ । ଏହି ତିନି ପ୍ରତୀକରୁ ବ୍ରାହ୍ମଣ, ବେଦ ଓ ଯଜ୍ଞ ପୂର୍ବ କାଳରୁ ସୃଷ୍ଟି ହୋଇଛନ୍ତି ।

( ୨୪ )

ତସ୍ମାଦୋମିତ୍ୟୁଦାହୃତ୍ୟ ଯଜ୍ଞ ଦାନ ତପଃ କ୍ରିୟାଃ
ପ୍ରବର୍ତ୍ତନ୍ତେ ବିଧାନୋକ୍ତାଃ ସତତଂ ବ୍ରହ୍ମ ବାଦିନାମ୍ । ୨୪ ।

ତସ୍ମାତ (ସେହି ହେତୁରୁ) ଓଁ ଇତି ଉଦାହୃତ୍ୟ (ଓଁ, ଏହି ଧ୍ୱନି ଉଚ୍ଚାରଣ କରି ହିଁ ବେଦ ବାଦିନାଂ (ବେଦରେ ବିଶ୍ୱାସ କରୁଥିବା ସାଧକମାନଙ୍କର) ବିଧାନୋକ୍ତାଃ ଯଜ୍ଞଦାନ ତପଃ କ୍ରିୟାଃ (ଶାସ୍ତ୍ରୀୟ ନିୟମ ଅନୁସାରେ ଯଜ୍ଞ, ଦାନ ବା ତପସ୍ୟାଦି) ସତତଂ ପ୍ରବର୍ତ୍ତନ୍ତେ (ସବୁ ସମୟରେ ଅନୁଷ୍ଠିତ ହୋଇଥାଏ) ।

## ଅନୁବାଦ—

ସେହି କାରଣରୁହିଁ ବେଦବିଶ୍ୱାସୀମାନଙ୍କର ସକଳ ବେଦ-ନିର୍ଦ୍ଦିଷ୍ଟ ଯଜ୍ଞଦାନ-ତପାଦି କର୍ମ ଓ ଉଚ୍ଚାରଣ କରି ଆରମ୍ଭ କରଯାଇଥାଏ ।

**ବିଶେଷ ଭାଷ୍ୟ—**

ଓଁ ରୁ ବେଦ ଓ ଯଜ୍ଞ ସୃଷ୍ଟି ହୋଇଛି କହିବା କେବଳ କଳ୍ପନା-ବିଳାସ । ବେଦ ତ ସିନ୍ଧୁ ଧାରବାସୀ ଆର୍ଯ୍ୟ-ଋଷି-ରଚିତ ମନ୍ତ୍ରମାନଙ୍କର ସମାହାର । ସେଥିରୁ ଅଧିକାଂଶ ମନ୍ତ୍ର ପୁଣି ଏକାନ୍ତରେ ସାଂସାରିକ କାମନାଦିର ପୂରଣ ପାଇଁ, ଯେପରି ସକଳ ଆଦିମ ସମାଜରେ ଦେଖାଦେଇଥାଏ । ଏ ସମସ୍ତ ଓଁ ରୁ ଉତ୍ପନ୍ନ ହୋଇଛନ୍ତି ବୋଲି କିପରି ଧରିଯିବ ?

( ୨୫ )

ତଦିତ୍ୟନଭିସନ୍ଧାୟ ଫଳଂ ଯଜ୍ଞତପଃ କ୍ରିୟା
ଦାନକ୍ରିୟାଶ୍ଚ ବିବିଧାଃ କ୍ରିୟନ୍ତେ ମୋକ୍ଷ କାଂକ୍ଷିଭିଃ । ୨୫ ।

[ସେହିପରି] ତତ୍ ଇତି (ତତ୍ ଏହି ଶବ୍ଦ) [ଉଚ୍ଚାରଣ କରି] ଫଳଂ ଅନଭିସନ୍ଧାୟ (ଫଳ ଲାଭର ଆଶା ନରଖି) ମୋକ୍ଷ କାଂକ୍ଷିଭିଃ (ମୋକ୍ଷାଭିଳାଷୀମାନେ) ବିବିଧାଃ ଯଜ୍ଞ ତପଃ କ୍ରିୟାଃ ଦାନକ୍ରିୟାଃ ଚ (ନାନାପ୍ରକାର ଯଜ୍ଞ, ତପ ଓ ଦାନକ୍ରିୟା) କ୍ରିୟନ୍ତେ (କରିଥାନ୍ତି) ।

**ଅନୁବାଦ—**

ସେଥିପାଇଁ ମୋକ୍ଷ-ଆଶା-କରୁଥିବା ସାଧକମାନେ ବେଦ-ବିହିତ ଯଜ୍ଞ-ଦାନ-ତପାଦି କ୍ରିୟା ତତ୍ ଉଚ୍ଚାରଣ କରି ହିଁ ସମାଧାନ କରିଥାନ୍ତି ।

( ୨୬ )

ସଦ୍‌ଭାବେ ସାଧୁ ଭାବେଚ ସଦିତ୍ୟେତତ୍ ପ୍ରଯୁଜ୍ୟତେ
ପ୍ରଶସ୍ତେ କର୍ମଣି ତଥା ସଚ୍ଛବ୍ଦଃ ପାର୍ଥ ଯୁଜ୍ୟତେ । ୨୬ ।

[ହେ] ପାର୍ଥ (ଅର୍ଜୁନ) ସଦ୍‌ଭାବେ ('ଅଛି' ଏହି ଅର୍ଥରେ) ସାଧୁ ଭାବେ ଚ ('ସାଧୁତା' ଅର୍ଥରେ) ସତ ଇତି ଏତତ୍ ପ୍ରଯୁଜ୍ୟତେ (ସତ୍ ନାମକ ଶବ୍ଦଟି ପ୍ରଯୁକ୍ତ ହୋଇଥାଏ । ତଥା ପ୍ରଶସ୍ତେ କର୍ମଣି ଏବ ସତ୍ ଶବ୍ଦଃ ଯୁଜ୍ୟତେ (ସେହିପରି ମଙ୍ଗଳଜନକ କାର୍ଯ୍ୟ ମଧ୍ୟ ସତ୍ ଶବ୍ଦର ପ୍ରୟୋଗ ହୁଏ) ।

**ଅନୁବାଦ—**

ହେ ଅର୍ଜୁନ, ସତ ଶବ୍ଦଟି ବାସ୍ତବତା, ଶ୍ରେଷ୍ଠତ୍ୱ ଏବଂ ମଙ୍ଗଳଜନକ କର୍ମ—ଏହିପରି ତିନ ଅର୍ଥରେ ବ୍ୟବହୃତ ହୋଇଥାଏ ।

( ୨୭ )

ଯଜ୍ଞେ ତପସି ଦାନେ ଚ ସ୍ଥିତିଃ ସଦିତି ଚୋଚ୍ୟତେ
କର୍ମଚୈବ ତଦର୍ଥୀୟଂ ସଦିତ୍ୟେବାଭିଧୀୟତେ । ୨୭ ।

ଯଜ୍ଞେ, ତପସି, ଦାନେ ଚ (ଯଜ୍ଞ, ତପସ୍ୟା ଓ ଦାନରେ) ସ୍ଥିତିଃ (ନିଷ୍ଠାକୁ) ସତ୍ ଇତ ଉଚ୍ୟତେ (ମଧ୍ୟ ସତ୍ କୁହାଯାଏ) । ତଦୀୟଂ କର୍ମ ଚ ସତ ଇତି ଅଭିଧୀୟତେ (ଏହି ସମସ୍ତ, ଅର୍ଥାତ୍ ଫଳାଶାହୀନ ଯଜ୍ଞ, ତପ, ଦାନ ଇତ୍ୟାଦି କର୍ମ ମଧ୍ୟ ସତ୍ ବୋଲି କଥିତ ହୋଇଥାନ୍ତି) ।

**ଅନୁବାଦ—**

ଯଜ୍ଞ, ଦାନ ଓ ତପସ୍ୟାରେ ଦୃଢ଼ତାକୁ ଏବଂ ସେହି ଶ୍ରେଣୀୟ ସର୍ବବିଧ କର୍ମକୁ ମଧ୍ୟ 'ସତ୍' କୁହାଯାଏ ।

( ୨୮ )

ଅଶ୍ରଦ୍ଧୟା ହୁତଂ ଦତ୍ତଂ ତପସ୍ତପ୍ତଂ କୃତଂ ଚ ଯତ୍
ଅସଦିତ୍ୟୁଚ୍ୟତେ ପାର୍ଥ ନଚ ତତ୍ ପ୍ରେତ୍ୟ ନୋ ଇହ । ୨୮ ।

ଅଶ୍ରଦ୍ଧୟା (ଅଶ୍ରଦ୍ଧାରେ) ହୁତଂ (ହୋମ) ଦତ୍ତଂ (ଦାନ)ତପ୍ତଂ ଚ ତପଃ (ବା ଅନୁଷ୍ଠିତ ତପସ୍ୟା) ଯତ୍ କୃତଂ (ଯାହା କରାଯାଇଥାଏ) [ତାହା] ଅ-ସତ ଇତି ଉଚ୍ୟତେ (ତାହାକୁ ଅସତ କୁହାଯାଏ) । [ହେ] ପାର୍ଥ (ଅର୍ଜୁନ) ତତ୍ (ତାହା) ନୋ ଇହ (ନା ଇହଲୋକରେ) ନ ଚ ପ୍ରେତ୍ୟ (ନା ପରଲୋକରେ) [ଫଳ ଦାନ କରିଥାଏ] ।

**ଅନୁବାଦ—**

ଜନ୍ମ ହେ ପାର୍ଥ, ଦାନ, ଯଜ୍ଞ ବା ତପ ଯାହାକର ତାହା ଯଦି ଅଶ୍ରଦ୍ଧାରେ କରାଯାଏ, ତେବେ ସେ ସମସ୍ତହିଁ ଅ-ସତ ବୋଲି ଧରାଯିବେ ଏବଂ ତାହା ଇହ ବା ପର ଜୀବନ କୌଣସି ଠାରେ କଲ୍ୟାଣଜନକ ହୋଇ ନ ଥାଏ ।

**ବିଶେଷ ଭାଷ୍ୟ—**

'ତତ୍ ସତ୍'ର ଅର୍ଥ "ସେହିଁ (ବ୍ରହ୍ମ)ହିଁ ସତ୍ୟ" । ଭାରତୀୟ ଶାସ୍ତ୍ରରେ 'ଓଁ' ଏହି ଧ୍ୱନିଟିକୁ ଗଭୀର ଆଧ୍ୟାତ୍ମିକତା ପୂର୍ଣ୍ଣ ବୋଲି କୁହାଯାଇଛି । କୁହାଯାଏ

ଯେ ମାନବ ମୁଖୋଚ୍ଚାରିତ ଯେତେ ପ୍ରକାର ଧ୍ୱନି ଥାଇପାରେ 'ଓଁ' ରେ ତାର ନିର୍ଯ୍ୟାସ ନିହିତ । ଆମେ ଈଶ୍ୱରଙ୍କୁ ଭାଷାରେ ପ୍ରକାଶ କରୁ ; କିନ୍ତୁ କୌଣସି ହେଲେ ମାନବକ ଭାଷା, ଈଶ୍ୱରଙ୍କ ଐଶ୍ୱର୍ଯ୍ୟ ସମ୍ୟକ୍ ଭାବରେ ପ୍ରକାଶିତ କରି ନ ପାରେ । ତେଣୁ ଈଶ୍ୱର କେବଳ ପ୍ରତୀକ ଭାବରେ ପ୍ରକାଶିତ ହୋଇ ପାରନ୍ତି । ଶାବ୍ଦିକ ପ୍ରତୀକ ଭାବରେ ଓଁ ଶ୍ରେଷ୍ଠ, କାରଣ ସେଥିରେ ସକଳ ମାନବକ ଧ୍ୱନି ନିହିତ । ସେଥିପାଇଁ ହିନ୍ଦୁ ସଂସ୍କୃତିରେ 'ଓଁ' ଧ୍ୱନି ଅତି ପବିତ୍ର ବିବେଚିତ ହୋଇଥାଏ । ଏହାର ଅନ୍ୟନାମ 'ପ୍ରଣବ' । ଗୀତାର ସପ୍ତମ ଅଧ୍ୟାୟରେ କୁହାଯାଇଛି "ପ୍ରଣବଃ ସର୍ବବେଦେଷୁ" (ମୁଁ ସକଳ ବେଦରେ ପ୍ରଣବ ବା ଓଁକାର) । ଅଷ୍ଟମ ଅଧ୍ୟାୟ (୧୩)ରେ କୁହାହୋଇଛି କି 'ଓଁ' ଏହି ଧ୍ୱନିଟି କେବଳ ଉଚ୍ଚାରଣ କରି କରି ପ୍ରାଣତ୍ୟାଗ କଲେ ଲୋକ ପରମା ଗତି ଲାଭ କରିପାରିବ । ଓଁ ର । ଏପରି ବ୍ୟାପକ ସମ୍ଭାବନା ହେତୁରୁ ଆମର ସମଗ୍ର ଧର୍ମ ଶାସ୍ତ୍ରରେ ଆମେ ସବୁଠି ଦେଖିବାକୁ ପାଉ ଓଁ, ପ୍ରତ୍ୟେକ ମନ୍ତ୍ରର ଆରମ୍ଭ ହୁଏ ଓଁ ରେ । ଏପରିକି ମହାକବି କାଳିଦାସ ଏହାକୁ ଉପମା ଭାବରେ ମଧ୍ୟ ବ୍ୟବହାର କରି ପାଇଛନ୍ତି—ଆସୀତ ମହୀକ୍ଷିତାଂ ଆଦ୍ୟଃ, ପ୍ରଣବଃ ଛନ୍ଦସାମିବ (ରଘୁ-୧-୧୧) (ମନ୍ତ୍ରମାନଙ୍କ ଆଦ୍ୟରେ ଓଁକାର ପରି ସେ ସର୍ବଦା ରାଜାମାନଙ୍କର ଅଗ୍ରରେ ଥିଲେ) ।

ଏସବୁକୁ ଆମକୁ ମାନି ନେବାକୁହିଁ ହେବ । କାରଣ, ଏହା ଆମପରି ସାଧାରଣ ଜନର ଆଲୋଚନା ଶକ୍ତିର ବାହାରେ, କିନ୍ତୁ 'ତତ୍ ସତ୍' (ସେ ସତ୍ୟ) ଏହି ଶବ୍ଦ ଦୁଇଟି ସହିତ ଓଁର କୌଣସି ଅଙ୍ଗାଙ୍ଗୀ ସମ୍ପର୍କ ଅଛି ବୋଲି ମନେ ହେଉନାହିଁ । ଓଁ ସବୁଠାରେ ଯେପରି ବ୍ୟବହୃତ ହୁଏ, ଏଠି ବି ସେହିପରି ବ୍ୟବହୃତ । ପ୍ରକୃତ ମନ୍ତ୍ରହେଲା ତତ୍ ସତ୍ (ତାହାହିଁ ସତ୍ୟ) । ଓଁକୁ ଧରି ମଧ୍ୟ, "ଓଁ ତତ୍ ସତ୍" ସମଗ୍ର ଭାବରେ, ସେହି ଏକା ଅର୍ଥକୁହିଁ ପ୍ରକାଶ କରିଥାଏ ।

କିନ୍ତୁ ଏଠାରେ ଗୀତା ୨୩, ୨୪, ୨୫, ୨୬, ୨୭ ଶ୍ଳୋକମାନଙ୍କରେ ଓଁ ତତ ସତ—ଏହି ସୁନ୍ଦର ସଂକ୍ଷିପ୍ତ ଏକକ ମନ୍ତ୍ରଟିକୁ ଭାଙ୍ଗି ଖଣ୍ଡ ଖଣ୍ଡ କରି ଭିନ୍ନ ଭିନ୍ନ ଭାବରେ ଓଁର, ତତ୍‌ର ଓ ସତର ଯେପରି କଷ୍ଟ-କଳ୍ପିତ ଅର୍ଥ ସବୁ ବାହାର କଲେ, ତାହା କେତେଦୂର ସଙ୍ଗତ ବୁଝାଯାଉନାହିଁ । ପୂର୍ଣ୍ଣ ରୂପରେ ଗୋଟିଏ-ଭାବ-ପ୍ରକାଶ-କରୁଥିବା-ମନ୍ତ୍ର 'ଓଁ' ତତ୍ ସତ୍ (ସେହି ବ୍ରହ୍ମହିଁ ସତ୍ୟ) ଓଁ ରୂପରେ, ତତ୍ ରୂପରେ ଓ ସତ୍ ରୂପରେ ଏହିପରି ତିନିଖଣ୍ଡରେ ମଧ୍ୟ କିପରି ସେହି ଏକ କଥା ବୁଝେଇବ ?

କିନ୍ତୁ ଏହି ଅଧ୍ୟାୟଟି ହେଲା "ଶ୍ରଦ୍ଧାତ୍ରୟ"ର ବର୍ଣ୍ଣନା । ଗୀତା ଚାହାନ୍ତି ଯେ, ଆମ ପ୍ରତ୍ୟେକଙ୍କର "ଶ୍ରଦ୍ଧା" କେବଳ ସତ୍ତ୍ୱ ସ୍ତରରେ ହିଁ ରହୁ । ତାହା

ହେଲେ ଆମ ପ୍ରତ୍ୟେକଙ୍କର ବ୍ୟକ୍ତିଗତ ଓ ସାମୂହିକ ସାମାଜିକ ଜୀବନ ମଧ୍ୟ ଶାନ୍ତିମୟ ରହିବ । ରାଜସିକ ଶ୍ରଦ୍ଧା ସମାଜରେ ସଂଘର୍ଷ ସୃଷ୍ଟି କରିବ, ତାମସିକ ଶ୍ରଦ୍ଧା ସମାଜରେ ସଂସ୍କୃତିର ଅଧଃପତନ ଘଟାଇବ ।

ତେଣୁ ଆମର ଧର୍ମୀୟ ବାହ୍ୟ ଆଚରସବୁ ମଧ୍ୟ ଯେପରି ସତ୍ତ୍ୱ ସ୍ତରରେ ହିଁ ରହୁ ଗୀତା ତାହାହିଁ ଚାହାନ୍ତି । ସେହି ହେତୁରୁ ବୋଧହୁଏ, ଏହି 'ଶ୍ରଦ୍ଧାତ୍ରୟ' ଅଧ୍ୟାୟରେ ରାଜସିକ ଓ ତାମସିକ ଶ୍ରଦ୍ଧାର ଅବାଞ୍ଛନୀୟତା ବର୍ଣ୍ଣନା କରସାରି ଆମର ପ୍ରତ୍ୟେକଟି କର୍ମକୁ ଆମେ କିପରି ଉପାୟରେ 'ସତ୍ତ୍ୱ' ସ୍ତରକୁ ଉଠେଇ ନେଇ ପାରିବା, ତାରି ନିର୍ଦ୍ଦେଶ ସ୍ୱରୂପ ସେ 'ଓଁ ତତ୍ ସତ୍' ମନ୍ତ୍ରର ଅବତାରଣା କରି ସାଧାରଣ ପାଠକ ଚିତ୍ତରେ ଏହାକୁ ଗଭୀର ଭାବରେ ଖୋଦିତ ରଖିବା ପାଇଁ, ସେହି ମନ୍ତ୍ରର ପ୍ରତ୍ୟେକଟି ଅଂଶର କପରି ଆଧ୍ୟାତ୍ମିକ ବ୍ୟଞ୍ଜନା ଅଛି ତାହା ପ୍ରଚାର କରି ବସିଲେ । ଅର୍ଥାତ୍ ଗୀତା ଏହି କେତୋଟି ଶ୍ଳୋକରେ ଏହାହିଁ ନିର୍ଦ୍ଦେଶିତ କରୁଛନ୍ତି ଯେ, ଆମେ ଯାହା କରୁନା କାହିଁକି, ତାର ଆରମ୍ଭରେ ଆମେ ଅନ୍ତତଃ "ଓଁ ତତ୍ ସତ୍" ଏହି ମନ୍ତ୍ରଟି ଉଚ୍ଚାରଣ କରି ତାର ଗଭୀର ତତ୍ତ୍ୱଟିକୁ ମନେ ମନେ ଅନୁଭବ କରିବା । ଆମେ ବରାବର ମନେରଖିବା ଯେ, "ତତ୍ ସତ୍" (ସେହି ହିଁ ସତ୍ୟ) । ଆମେ ବା ଆମର କାର୍ଯ୍ୟ, ନିମିତ୍ତ ମାତ୍ର । ତାହା ହେଲେ ଗୀତାଙ୍କର ପ୍ରଧାନ ନିର୍ଦ୍ଦେଶ ଯେ, କର୍ତ୍ତୃତ୍ୱାଭିମାନ-ଶୂନ୍ୟତା ତାହା ଆପେ ଆପେ ଆସିଯିବ, ପୁଣି, କୃତକର୍ମମାନଙ୍କରେ ଦମ୍ଭ, ଅଭିମାନ, ଈର୍ଷା ବା ସ୍ୱୈରଚାରିତା ଆଦି ଯେପରି ଦେଖା ନ ଯାଏ, ସେଥିପ୍ରତି ଆମେ ସାବଧାନ ରହିବା ।

ପ୍ରତକର୍ମର ଆରମ୍ଭରେ ଏ ପ୍ରକାର ମନୋଭାବ ଯେ ଆମର ଶ୍ରଦ୍ଧାକୁ ସାତ୍ତ୍ୱିକ ସ୍ତରରେ ରଖିବାରେ ସହାୟତା କରିବ, ଏହା ନିଃସନ୍ଦେହ । ପାଠକେ ଏହା ମାନିବେ ଆଶା କରଯାଏ ।

ଇତି ଶ୍ରୀମଦ୍ ଭଗବଦ୍ ଗୀତା ସୁପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଯୋଗ ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନ ସମ୍ବାଦେ ଶ୍ରଦ୍ଧାତ୍ରୟ ବିଭାଗ
ଯୋଗୋ ନାମ ସପ୍ତଦଶୋଽଧ୍ୟାୟଃ ।

# ଅଷ୍ଟାଦଶ ଅଧ୍ୟାୟ

## ମୋକ୍ଷଯୋଗଃ

### ଅଧ୍ୟାୟ ଦୀପିକା

ଏହି ଅଧ୍ୟାୟଟି ଗୀତାର ପୂର୍ବବର୍ତ୍ତୀ ସତର ଅଧ୍ୟାୟର ସାରାଂଶ ବୋଲି ଯାହା କୁହାଯାଇଥାଏ, ତାହା ମୋଟାମୋଟି ସତ୍ୟ ; କିନ୍ତୁ ଏଥିରେ କେତେକ ନୂତନ ବିଷୟ ମଧ୍ୟ ସଂଯୋଗ କରଯାଇଛି; ଯାହାକି ଗୀତାର ଉଦାରତା ଓ ମହତ୍ତ୍ୱକୁ ପରିପୋଷଣ ନ କରି ବରଂ କ୍ଷୁର୍ଣ୍ଣ କରିଛି ବୋଲି କୁହା-ଯାଇପାରେ । ପ୍ରଥମାଂଶରେ ଗୀତା ଚିନ୍ତାର ଉଚ୍ଚତମ ସ୍ତରକୁ ଉଠି ବୈଦିକ ଯଜ୍ଞ ଓ ବ୍ରାହ୍ମଣ୍ୟ ସମାଜର ଜନ୍ମଗତ ଜାତି-ବିଭାଗକୁ ମଧ୍ୟ କିପରି ଏକ ପ୍ରକାର ଅସ୍ୱୀକାର କରି ପକାଇଛନ୍ତି, ଏହା ଯଥା ସ୍ଥାନରେ ଆଲୋଚନା କରି ସାରିଛୁ । ସମସାମୟିକ କାଳରେ ପରସ୍ପର—ବିବଦମାନ ଦର୍ଶନ ଓ ସାଧନ ମାର୍ଗ-ମାନଙ୍କର ଏକ ପ୍ରକାର ଐକ୍ୟ ବା ଏକଧର୍ମୀତା ଠିଆ କରାଇବା ଲକ୍ଷ୍ୟରେ ଗୀତା, ପ୍ରତ୍ୟେକକୁ ସମ୍ମାନ ଦେବାକୁ ଯାଇଛନ୍ତି—ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ତଥୈବ ଭଜାମ୍ୟହଂ (ମତେ ଯେ ଯେମିତି ପୂଜା କରିବ, ମୁଁ ତାକୁ ସେହି-ପରି ଉପରେ ସନ୍ତୋଷ ଦେବି) ; କିନ୍ତୁ ବିଦ୍ୱାନ୍ ଓ ଚିନ୍ତାଶୀଳ ଲୋକଙ୍କ ପ୍ରତି ଏ ଉଦାରତା ଶୁଭବାର୍ତ୍ତା ହେଲେ ହେଁ, ସାଧାରଣ ଲୋକ ପ୍ରତି ଏ ପ୍ରକାର ଅତ୍ୟୁଦାର ସମାଧାନ ହୁଏତ ହୋଇ ଉଠିବ, ପୂର୍ବାପେକ୍ଷା ଅଧିକ ବିପଦ । ଚିନ୍ତାର ଏ ପ୍ରକାର ସୂକ୍ଷ୍ମ ବାୟୁରେ ସାଧାରଣ ଲୋକ ଅଣ-ନିଶ୍ୱାସୀ ହୋଇଯିବାର ଆଶଙ୍କା । ସାଧାରଣ ଲୋକ କଥା ଛାଡ, ସାଧାରଣ ତଥାକଥିତ ଉଚ୍ଚଶିକ୍ଷିତ ଲୋକ ମଧ୍ୟ ଆଦୌ ଚିନ୍ତା କରିବାକୁ ଚାହେଁନା । କାରଣ ମୌଳିକ ଚିନ୍ତାଠାରୁ କଠିନତର ଶ୍ରମ ଜଗତରେ ଦ୍ୱିତୀୟ ନାହିଁ । ସାଧାରଣ ଲୋକ ତେଣୁ ଅନ୍ୟ ଦଶଜଣ ଅନୁସରଣ କରୁଥିବା ସହଜ ପନ୍ଥା ହିଁ ଧରେ । ଧର୍ମ ନାମରେ ସେହି କାରଣରୁ ବାହ୍ୟ ଆଡ଼ମ୍ବର ହିଁ ସର୍ବତ୍ର, ସବୁ ଧର୍ମରେ ଏତେ ପ୍ରିୟ । ବ୍ରାହ୍ମଣକୁ ଡାକି ଦି'ଟା ମନ୍ତ୍ର ପଢେଇ ଦେଲେ, ଟିକିଏ ହୋମ କରେଇ ନେଲେ ବା ତୀର୍ଥଯାତ୍ରା କରି ଗଲେ ଯଦି 'ଧର୍ମ' ହେଲା, ତେବେ ସାଧାରଣ ଲୋକ ପ୍ରତି ସେହି ହିଁ ଯଥେଷ୍ଟ । ଦେହ ଓ ଆତ୍ମା ବା ପ୍ରକୃତି ଓ ପୁରୁଷର ଭେଦ ବା

ସର୍ବଭୂତରେ ସମଦର୍ଶନ—ଏ ସବୁର ଆଲୋଚନା ସାଧାରଣ ଲୋକ ଠାରୁ କପରି ଆଶା କରାଯିବ ?

ଗୀତାକାର ଷୋଳଟି ଅଧ୍ୟାୟରେ ଉଦାର ସବରେ ଦାର୍ଶନିକ ତତ୍ତ୍ୱ, ମୁକ୍ତିମୁକ୍ତ ସତରେ ବଞ୍ଚିବା ଓ ମୃତ୍ୟୁ ପରେ ମଧ୍ୟ କପରି ସୁଖମୟ ଜୀବନ ପାଇବାକୁ ହେବ, ତାର ବିସ୍ତୃତ ବ୍ୟାଖ୍ୟା ସବୁ କରିଗଲା ପରେ; ନିଜଠାରୁ ବା ନଜର ସହୃଦୟମାନଙ୍କଠାରୁ ଏହି ଜିଜ୍ଞାସା ହୁଏତ ପାଇଥିବେ ଯେ, ସାଧାରଣ ଲୋକ ଏ ସବୁକୁ ନେଇ ଚଳିପାରିବେ ତ ? ତୁମେ ତ ଯଜ୍ଞକୁ ଉଠେଇଲ, ଜାତି ପ୍ରଥା ଉଠେଇଲ, ଫଳାଶା ରଖି କୌଣସି ହେଲେ କାମ ମଧ୍ୟ ନ କରିବାକୁ ଉପଦେଶ ଦେଲ—ସାଧାରଣ ଲୋକ ଏଥିରେ ବିଭ୍ରାନ୍ତ ହୋଇ ପଡ଼ିବେ ନାହିଁ କି ? ସମାଜର ସଂହତି ପାଇଁ, ସାଧାରଣ ନାଗରିକର ଦୈନନ୍ଦିନ ଜୀବନରେ ଉତ୍ସାହ ଓ ଆନ୍ତରିକତା ପାଇଁ, ସମାଜର ନିମ୍ନ ସ୍ତରରେ ଧର୍ମ ବଞ୍ଚିରହିବା ପାଇଁ କିଛି ସୂକ୍ଷ୍ମ ନିର୍ଦ୍ଦେଶ ଦେଇ ନ ଗଲେ, କିପରି ହେବ ?

ଗୀତାର ସପ୍ତଦଶ ଓ ଅଷ୍ଟାଦଶ ଅଧ୍ୟାୟ ମନେହୁଏ ତାହାରି ଉତ୍ତର । ଯେଉଁ ଗୀତା ଦ୍ୱିତୀୟ ଅଧ୍ୟାୟରେ "କ୍ରିୟା ବିଶେଷ ବହୁଳା" ଓ "ଜନ୍ମ କର୍ମ ଫଳପ୍ରଦା" ବୈଦିକ ଯଜ୍ଞରେ ମନ ନ ଦେଇ ସାଧକକୁ "ଯୋଗସ୍ଥ" ହେବାକୁ ଉପଦେଶ ଦେଇଥିଲେ, ଅଷ୍ଟାଦଶ ଅଧ୍ୟାୟରେ ସେହି ଗୀତା ପୁଣି କହିଲେ, ଯଜ୍ଞଦାନ ତପଃକର୍ମ ନତ୍ୟାଜ୍ୟଂ କାର୍ଯ୍ୟ ମେବତତ୍ (ଯଜ୍ଞ, ଦାନ ଓ ତପସ୍ୟାଦି ବାହ୍ୟାଚାର ସବୁ ଛାଡ଼ ଦେବନି, କରିବ) । ଯେଉଁ ଗୀତା ବ୍ରାହ୍ମଣ୍ୟ ସମାଜର ଜନ୍ମ-ପ୍ରତିଷ୍ଠ ଜାତି-ବିଭାଗକୁ ଚତୁର୍ଥ ଅଧ୍ୟାୟରେ ଗୁଣ-ଓ-କର୍ମ ପ୍ରତିଷ୍ଠ କରିବାକୁ ଯାଇଥିଲେ, ସେହି ଗୀତା ଅଷ୍ଟାଦଶ ଅଧ୍ୟାୟରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୁଦ୍ର ମାନଙ୍କର ସୁନର୍ଦ୍ଦିଷ୍ଟ ଓ ଅପରିବର୍ତ୍ତନୀୟ କର୍ତ୍ତବ୍ୟ ତାଲିକା ବାନ୍ଧି ବସିଲେନି କେବଳ, ଅଧିକନ୍ତୁ ଏୟା ବି କହିବାକୁ ଗଲେ ଯେ, "ପରିଚର୍ଯ୍ୟାତ୍ମକଂ କର୍ମ ଶୂଦ୍ରସ୍ୟାପି ସ୍ୱଭବଜଂ" (ଅନ୍ୟର ଭୃତ୍ୟାକାମ କରିବା ଶୂଦ୍ରର କେବଳ ଜନ୍ମଜ ନୁହେଁ, ସ୍ୱଭବଜ" କର୍ମ) ।

ଏ କଥା ହେଲା ଗୀତାର ସାମାଜିକ ଦିଗ । ବ୍ୟକ୍ତିଗତ ଜୀବନ ଦର୍ଶନ ସବରେ, ଗୀତା ଏହି ଶେଷ ଅଧ୍ୟାୟରେ ମଧ୍ୟ କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତିଯୋଗ ସମ୍ବନ୍ଧରେ ଏବଂ କର୍ତ୍ତୃତ୍ୱାଭିମାନ ତ୍ୟାଗ, ଫଳାଶାହୀନ-କର୍ମତତ୍-ପରତା ଏବଂ ସର୍ବୋପରି ଏକ ବ୍ୟକ୍ତିତ୍ୱସମ୍ପନ୍ନ ଈଶ୍ୱରଙ୍କ ଠାରେ ପରିପୂର୍ଣ୍ଣ ଆତ୍ମ ସମର୍ପଣ ନେଇ, ପୂର୍ବ ପୂର୍ବ ଅଧ୍ୟାୟରେ ଯାହା ଯାହା କହିଥିଲେ ତାହାରହିଁ ପୁନରାବୃତ୍ତି କରିଛନ୍ତି । କିନ୍ତୁ ଏହି ଅଧ୍ୟାୟଟିର ମୁଖ୍ୟତାନ ବୋଲି ଧରିବାକୁ

ହେବ "ଭକ୍ତିଯୋଗ," ଯାହା ମଧ୍ୟ ସମଗ୍ର ଭାରତରେ ଗୀତାର ମୁଖ୍ୟତମ ବାଣୀ ବୋଲି କହିବାକୁ ହେବ । ସବୁ ପ୍ରକାର ଜ୍ଞାନ-ବିଜ୍ଞାନ, ଜୀବନ-ଦର୍ଶନ ଓ ତତ୍ତ୍ୱ-ତଥ୍ୟ ବୁଝେଇ ସାରିଲା ପରେ ଗୀତା ଶେଷ ସଂଦେଶ ରୂପେ କହୁଛନ୍ତି—

"ମଚ୍ଚିତ୍ତଃ ସତତଂ ଭବ"

(ମୋତେହିଁ ସବୁବେଳେ ଚିତ୍ତସ୍ଥ କରି ରଖ )।

ପୁଣି

"ମନ୍ମନା ଭବ ମଦ୍‌ଭକ୍ତୋ ମଦଯାଜୀ ମାଂ ନମସ୍କୁରୁ"

( ମତେ ହିଁ ମନୋମୟ କରି ରଖ, ମୋର ପରିପୂର୍ଣ୍ଣ ଭକ୍ତ ହୋଇ ରହ, ମୋର ଉପାସନା କର, ମତେ ହିଁ ନମସ୍କାର କର) ।

ପୁଣି

"ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ"

( ଅନ୍ୟ ସକଳ ଧର୍ମ ତ୍ୟାଗ କରି, ମତେ ହିଁ ଏକମାତ୍ର ଶରଣ ବୋଲି ଧର) ।

କିନ୍ତୁ କୌଣସି ଜିଜ୍ଞାସୁ ପାଠକ ପାଠିକାଙ୍କ ଚିତ୍ତରେ ସ୍ୱାଭାବିକ ପ୍ରଶ୍ନ ଉଠିପାରେ—'ଏହି' "ମୁଁ" କିଏ' ? ଯଦି ଏହି "ମୁଁ" କେବଳ ଶ୍ରୀକୃଷ୍ଣ ହୁଅନ୍ତି, ତେବେ ଏକ ପକ୍ଷରେ ଗୀତା ତାର ତଥାକଥିତ ଉଦାର ସାର୍ବଜନୀନତା ଓ ମହତ୍ତ୍ୱ ହରଉଛି । ଦ୍ୱିତୀୟରେ ସମଗ୍ର ପୃଥିବୀ କଥା ଛାଡ, ଏହି ଭାରତବର୍ଷରେ ଏ ପ୍ରକାର ପ୍ରସ୍ତାବ ର କୌଣସି ଯଥାର୍ଥତା ନାହିଁ ଏ ପ୍ରକାର ପ୍ରସ୍ତାବର କୌଣସି ଯଥାର୍ଥତା ନାହିଁ ବୋଲି ମାନନେବାକୁ ହେବ । କାରଣ ହିନ୍ଦୁ ସମାଜରେ ମଧ୍ୟ କେବଳ ଶ୍ରୀକୃଷ୍ଣଙ୍କୁ ଇଷ୍ଟଦେବତା ବୋଲି ଧରୁଥିବା ଲୋକଙ୍କ ସଂଖ୍ୟା, ହୁଏତ ହିନ୍ଦୁ ଜନ ସଂଖ୍ୟାର ଏକ ଲଘୁ ଅଂଶ ହିଁ ହେବେ । ରାମ-କେନ୍ଦ୍ରିକ ଦୁର୍ଗା କେନ୍ଦ୍ରିକ ଓ ଶିବ କେନ୍ଦ୍ରିକ ଧର୍ମସାଧନା, ହିନ୍ଦୁ ସମାଜରେ ଏବେ ବି କୃଷ୍ଣ-କେନ୍ଦ୍ରିକ ଧର୍ମ-ସାଧନାଠାରୁ କମ୍ ପ୍ରଭାବଶାଳୀ ନୁହନ୍ତି । ତେଣୁ ଅନ୍ୟ ସବୁ ଧର୍ମକୁ ଛାଡ଼ି ଦେଇ "ମୋରି ଶରଣ" ନିଅ—ଗୀତାର ଏହି ଶେଷ ନିର୍ଦ୍ଦେଶ ଯଦି କେବଳ ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟ କରି କୁହାହୋଇଥାଏ, ତେବେ ମାନିନେବାକୁ ହେବଯେ, ହିନ୍ଦୁ ସମାଜ ମଧ୍ୟ ତାହା ପୁରାପୁରି ଗ୍ରହଣ କରି ନାହିଁ । ତେଣୁ ବୁଝି

ଖ୍ରୀଷ୍ଟ-ମହମ୍ମଦ-କେନ୍ଦ୍ରକ ବିଶ୍ୱବ୍ୟାପ୍ତ ଧର୍ମମାନଙ୍କ ସହିତ କେବଳ କୃଷ୍ଣ-କେନ୍ଦ୍ରକ ଧର୍ମର କୌଣସି ତୁଳନାହିଁ ହୋଇ ନ ପାରେ ।

କିନ୍ତୁ ଗୀତାର ଏହି 'ମୁଁ' ଅର୍ଜୁନଙ୍କ ରଥଚାଳକ ଓ ସ୍ୱୟଂ ଗୀତାର ବ୍ୟାଖ୍ୟାପକ ଶ୍ରୀକୃଷ୍ଣଙ୍କୁ ନ ବୁଝାଇ ଯଦି ବ୍ୟଂଜନାର୍ଥରେ ସର୍ବଧର୍ମର ଈଶ୍ୱରଙ୍କୁ ବୁଝେଇବ ତେବେ ତା ଦ୍ୱାରା ଗୀତାର ଉଦାରତା ଯେପରି ରକ୍ଷିତ ହେବ, ସେହିପରି ମଧ୍ୟ ତାହା ଗୀତାର ପୂର୍ବ-ପୂର୍ବ ଅଧ୍ୟାୟରେ ମନୋଜ୍ଞ ବାଣୀରେ ଉଦ୍‌ଘୋଷିତ ଉଦାର-ମହତ୍ ବାଣୀ ସବୁ ସହିତ ସାମଂଜସ୍ୟ ରକ୍ଷାକରି ଚାଲିବ । ଅଧିକାଂଶ ହିନ୍ଦୁ ଟୀକାକାର ମଧ୍ୟ 'ମୁଁ'କୁ ବ୍ୟକ୍ତିଗତ ଭାବରେ ଶ୍ରୀକୃଷ୍ଣ ନ ବୁଝାଇ ବିଶ୍ୱବ୍ୟାପ୍ତ ପରମାତ୍ମା ବୋଲି ବୁଝାଇ ଯାଇଛନ୍ତି । ବ୍ୟକ୍ତିଗତ ଶେଷ ନିଷ୍ପତ୍ତି ପାଠକଙ୍କର ନିଜସ୍ୱ ବୁଦ୍ଧି ଓ ଶ୍ରଦ୍ଧା ଉପରେହିଁ ନିର୍ଭର କରେ ।

ତେବେ ପାଠକମାନଙ୍କ ଅବଗତି ନମନ୍ତେ ଏତିକି କୁହାଯାଇ ପାରେ ଯେ, ଭାରତରେ କୃଷ୍ଣାରାଧନା ଏକ ଐତହାସିକ ଉଦ୍ଭବ,—ଏହା ଆଦୌ ନୈସର୍ଗିକ ନୁହେଁ ଏବଂ ଶ୍ରୀ କୃଷ୍ଣଙ୍କର ବ୍ୟକ୍ତିତ୍ୱ ସ୍ତର ସ୍ତର ଦେଇ ପରିବର୍ତ୍ତିତ ହେବାର ଆମେ ଦେଖିବା, କେବଳ ଗୋଟିଏ ଗ୍ରନ୍ଥ ମହାଭାରତରେ । ବିସ୍ତୃତ ଆଲୋଚନାକୁ ନ ଯାଇ ଏଠାରେ କେବଳ ହିନ୍ଦୁଧର୍ମର ସାଂପ୍ରତକ ଶ୍ରେଷ୍ଠ ବ୍ୟାଖ୍ୟାପକ ଡକ୍‌ଟର ରାଧାକୃଷ୍ଣନଙ୍କ ମତହିଁ ଉଦ୍ଧାର କରି ଦେଉଛୁ । ସେ କହିଛନ୍ତି—

"କୃଷ୍ଣ କପରି କ୍ରମେ ଭଗବାନରେ ପରିଣତ ହୋଇଛନ୍ତି ତାର ଗଠନ-ପଦ୍ଧତି ଆମେ ମହାଭାରତରେହିଁ ସ୍ପଷ୍ଟ ଦେଖୁଁ । ମହାଭାରତର କେଉଁ କେଉଁ ସ୍ଥାନରେ ସେ ନିଜେ ମହାଦେବଙ୍କ ପୂଜା କରିବାର ଦେଖାଯାଏ । ଅନ୍ୟ ସ୍ଥାନମାନଙ୍କରେ ତାଙ୍କର କୌଣସି ଦେବତ୍ୱ ଥିବାଟା ଏକାବେଳେକେ ଉଡ଼ାଇ ଦିଆଯାଇଛି । ସଭା ପର୍ବରେ ଶିଶୁପାଳ ଶ୍ରୀକୃଷ୍ଣଙ୍କର ଦେବତ୍ୱକୁ ଉଡେଇ ଦେଲାବେଳକୁ ଭୀଷ୍ମ ତାର ପ୍ରତିବାଦ କରି, ସେପରି କହିବା ଲୋକକୁ ମନ୍ଦବୁଦ୍ଧି ବୋଲି ବର୍ଣ୍ଣନା କରିଛନ୍ତି । ଏଇଥିରୁ ଜଣାଯିବ ଯେ, ଶ୍ରୀକୃଷ୍ଣଙ୍କୁ ଏକ ଦେବତା କରି ଥୋଇବାରେ ପ୍ରବଳ ପ୍ରତିରୋଧ ହୋଇଥିଲା । ସେ କେତେବେଳେ କେବଳ ଦ୍ୱାରକାର ରଜା ବୋଲି ବର୍ଣ୍ଣିତ, କେତେବେଳେ ବା 'ଭଗବତ' ନାମକ ଏକ ଅଦ୍ୱୈତ ଈଶ୍ୱରଙ୍କ ଉପାସନାର ପ୍ରଚାରକ ଭାବରେ ଚିତ୍ରିତ । ଏହିପରି ମହାଭାରତରେ ଆମେ ଗୋଟାକ ପରେ ଗୋଟେ ଥୁଆ ହୋଇଥିବା ବହୁ ସ୍ତରର ଚିନ୍ତାଧାରା ପାଇବା, ଯେଉଁସବୁ ଦେଇ କୃଷ୍ଣ ନାମକ ଜଣେ ଐତିହାସିକ ବ୍ୟକ୍ତି କିପରି ଶେଷରେ ବିଷ୍ଣୁଙ୍କର ଅବତାର ରୂପେ ଠିଆ ହୋଇଛନ୍ତି ।"

(Indian philosophy pp. 494)

ଆଶାକରୁଁ ପାଠକେ ଡକ୍‌ଟର ରାଧାକ୍ରିଷ୍ଣନଙ୍କ ଏହି ପ୍ରକାର ଦୃଷ୍ଟି କୋଣକୁ ବିବେଚନାର ସହିତ ଗ୍ରହଣ କରିବେ । ଏ ସମ୍ପର୍କରେ ଆଗ୍ରହୀ ପାଠକ -ପାଠିକା ଲେଖକର "ଗୀତା-ମହାତ୍ମ୍ୟ" ଗ୍ରନ୍ଥ ପଢ଼ି ପାରନ୍ତି, ଯେଉଁଥିରେ 'କୃଷ୍ଣ-ତତ୍ତ୍ୱ' ବିସ୍ତୃତଭାବରେ ଆଲୋଚିତ ହୋଇଛି ।

ବର୍ତ୍ତମାନ ଆମେ ଅଧ୍ୟାୟ ଆଲୋଚନା ଆରମ୍ଭ କରିବା ।

ଅର୍ଜ୍ଜୁନ ଉବାଚ

( ୧ )

ସନ୍ନ୍ୟାସସ୍ୟ ମହାବାହୋ ତତ୍ତ୍ୱମିଚ୍ଛାମି ବେଦିତୁଂ
ତ୍ୟାଗସ୍ୟ ଚ ହୃଷୀକେଶ ପୃଥକ୍ କେଶିନସୂଦନ । ୧

ଅର୍ଜ୍ଜୁନ ଉବାଚ ( ଅର୍ଜ୍ଜୁନ କହିଲେ) । [ହେ) ମହାବାହୋ ହୃଷିକେଶ, କେଶିନିସୁଦନ ( ଶ୍ରୀକୃଷ୍ଣ) ସନ୍ନ୍ୟାସସ୍ୟ ତ୍ୟାଗସ୍ୟ ଚ ତତ୍ତ୍ୱଂ (ସନ୍ନ୍ୟାସ ଓ ତ୍ୟାଗର ତତ୍ତ୍ୱକୁ) ପୃଥକ ବେଦିତୁ୍ୟ ଇଚ୍ଛାମି (ସ୍ୱତନ୍ତ୍ର ଭାବରେ ଜାଣିବାକୁ ଇଚ୍ଛାକରେ) ।

## ଅନୁବାଦ—

ଅର୍ଜ୍ଜୁନ କହିଲେ, "ହେ ଶ୍ରୀକୃଷ୍ଣ, ସନ୍ନ୍ୟାସ କ'ଣ ଓ ତ୍ୟାଗ କ'ଣ ଏହାର ତତ୍ତ୍ୱ ମୁଁ ପୃଥକ ପୃଥକ ଭାବରେ ଜାଣିବାକୁ ଚାହେ ।

## ବିଶେଷ ଭାଷ୍ୟ—

ପାଠକେ ସ୍ମରଣ ରଖିବେ ଯେ, ଗୀତାର ଧର୍ମ ହେଲା "ତ୍ୟାଗ"ର, 'ସନ୍ନ୍ୟାସ'ର ନୁହେଁ, ଯଦି ଓ ସଂସ୍କୃତ ଭାଷାରେ ଦୁଇଟିଯାକ ଶବ୍ଦର ଧାତୁଗତ ଅର୍ଥ ଏକ ଓ ଅଭିନ୍ନ । ସଂସ୍କୃତରେ 'ନ୍ୟାସୀ' ଶବ୍ଦହିଁ ବୁଝେଇବ ଉଭୟ ତ୍ୟାଗୀ ଓ ସନ୍ନ୍ୟାସୀ । ସନ୍ନ୍ୟାସୀମାନେ ଯେ ସମ୍ୟକ ବା ଉତ୍ତମ ଭାବରେ ଅର୍ଥାତ ସମ୍ପୂର୍ଣ୍ଣ ରୂପେ ସଂସାରକୁ ତ୍ୟାଗ କରି ସାରିଛନ୍ତି, ସଂସାରକୁ ତ୍ୟାଗ କରିବାର ଅର୍ଥ କର୍ମ ତ୍ୟାଗ କରିବା, ଅର୍ଥାତ ଭିକ୍ଷାଲବ୍ଧ ଅନ୍ନରେହିଁ ବଂଚି କେବଳ ଧର୍ମସାଧନା କରିବା । ସନ୍ନ୍ୟାସ କହିଲେ ଆମେ ଏହି ତାତ୍‌ପର୍ଯ୍ୟହିଁ ବୁଝିଥାଉ ଏବଂ ଗୀତା ଲେଖା ହେଲାବେଳେ ବ୍ରାହ୍ମଣ୍ୟ ସମାଜରେ ପ୍ରତ୍ୟେକ ନାଗରିକ ପାଇଁ ଏହା ଏକ ପ୍ରକାର ଆଦର୍ଶ ଥିଲା,—ବୈଦିକ ଚତୁରାଶ୍ରମର (ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ଯତିବ୍ରତ, ସନ୍ନ୍ୟାସ) ଶେଷ ଆଶ୍ରମ ରୂପେ । ବ୍ରାହ୍ମଣ୍ୟ ସମାଜରେ ଥିଲାଏ ଦୈନିକ

ଅଗ୍ନି ହୋତ୍ରାଦି ପଞ୍ଚଯଜ୍ଞ ପ୍ରତ୍ୟେକ ଗୃହସ୍ଥର ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ଥିଲା । ଯତବ୍ରତା ଶ୍ରମରେ ମଧ୍ୟ ସେ କର୍ତ୍ତବ୍ୟ ନାଗରିକ ଅବହେଳା କରିପାରୁ ନଥିଲେ । କିନ୍ତୁ ସନ୍ନ୍ୟାସାଶ୍ରମରେ ଆଉ କୌଣସି ପ୍ରକାର ଜୀବିକାର୍ଜନର ଉପାୟ ରୂପକ କର୍ମ ବା ଏପରିକି ଯଜ୍ଞାଦି ଶାସ୍ତ୍ରୀୟ କର୍ମ ମଧ୍ୟ କରିବାକୁ ପଡୁ ନଥିଲା । ଯାହା ବ୍ରାହ୍ମଣ୍ୟ ଧର୍ମରେ କେବଳ ଶେଷାଶ୍ରମ ପାଇଁ ଉଦ୍ଦିଷ୍ଟ ଥିଲା, ଗୌତମ ବୁଦ୍ଧ ତାକୁ ସବୁ ଆଶ୍ରମ ପାଇଁ ଉନ୍ମୁକ୍ତ କରିଦେଲେ । ଫଳରେ ଭାରତବର୍ଷ ସବୁ ବୟସର ଲକ୍ଷ ଲକ୍ଷ ନିଷ୍କର୍ମା ଭିକ୍ଷୁରେ ପୂର୍ଣ୍ଣ ହୋଇଗଲା । ବୃଦ୍ଧ ବୟସର ଯଜ୍ଞ ତ୍ୟାଗକାରୀ ବ୍ରାହ୍ମଣ୍ୟ-ଧର୍ମର ସନ୍ନ୍ୟାସୀ ତ ଅନେକେ ଆଗରୁ ଥିଲେ ।

ଭଗବଦ୍ ଗୀତା ଭାରତବର୍ଷରେ ଏହି ସୁପରିଚିତ କର୍ମହୀନତା ଓ ଭିକ୍ଷାବୃତ୍ତିର ଏକ ଦୃଢ଼ ଓ ଶକ୍ତିଶାଳୀ ପ୍ରତିବାଦ । ଷଷ୍ଠ ଅଧ୍ୟାୟର ପ୍ରଥମ ଶ୍ଳୋକରେ ଗୀତା ସମ୍ଭବତଃ ଧର୍ମ ନାମରେ ବା ଅଧ୍ୟାତ୍ମିକ ସାଧନା ନାମରେ 'ନିଷ୍କର୍ମା' ହୋଇ ବୁଲୁଥିବା ଉଭୟ ବୌଦ୍ଧ (ଅକ୍ରିୟ) ଓ ବ୍ରାହ୍ମଣ୍ୟ (ନିରଗ୍ନି), ଏହି ଉଭୟ ଶ୍ରେଣୀକୁ ନିନ୍ଦିତ କରି, 'ତ୍ୟାଗ'କୁ ପ୍ରଥମ କରି 'ବାହ୍ୟ'ରୁ ଆଣି 'ଅନ୍ତର'ରେ ଅର୍ଥାତ୍ ମନସ୍ତାତ୍ତ୍ୱିକ ସ୍ତରରେହିଁ ଥୋଇଛନ୍ତି । ଗୀତା ବରାବର ପ୍ରଚାର କରି ଆସିଛନ୍ତି ଯେ, ତ୍ୟାଗ କେବଳ ଫଳାଭିଳାଷରହିଁ ତ୍ୟାଗ, କର୍ମର ତ୍ୟାଗ ନୁହେଁ, କାରଣ କର୍ମ ହେଲା ପ୍ରକୃତିର ଅଲଙ୍ଘ୍ୟ ଓ ଅପରିହାର୍ଯ୍ୟ ନିୟମ । କର୍ମର ତ୍ୟାଗ ଏକ ଆତ୍ମପ୍ରତାରଣା ମାତ୍ର । ଆମର ଚାଲିବା, ବସିବା, କଥା କହିବା, ଏବଂ ଏପରକି ନିଃଶ୍ୱାସ-ପ୍ରଶ୍ୱାସ ନେବା ମଧ୍ୟ କର୍ମ । ତେଣୁ ଗୀତା ପରିପୂର୍ଣ୍ଣ ଯୌକ୍ତିକତାରେ କହିଛନ୍ତି "କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି"—କର୍ମ ଈଶ୍ୱର ସୃଷ୍ଟ । ତେଣୁ ଈଶ୍ୱରଙ୍କୁ ପାଇବା ନାଁରେ କର୍ମକୁ ତ୍ୟାଗ କରିବା କେଉଁ ଯୁକ୍ତିରେ ? ସେ ପ୍ରକାର ତ୍ୟାଗ ବା ଲୋକ କରିପାରିବ କିପରି ? ଲୋକୋଽୟଂ କର୍ମବନ୍ଧନଃ-ଏହି ନିଖିଳ ସୃଷ୍ଟି ଓ ଜନସମାଜ କର୍ମସହିତ ଓତପ୍ରୋତ ଭାବରେ ଜଡିତ ଏବଂ କର୍ମ ଉପରେହିଁ ପ୍ରତିଷ୍ଠିତ । କର୍ମଣୈବ ହି ସଂସିଦ୍ଧିମାସ୍ଥିତା ଜନକାଦୟଃ-ଜନକ ପ୍ରଭୃତ ଉଚ୍ଚତମ ଆଧ୍ୟାତ୍ମିକ ସିଦ୍ଧି ଲାଭ କରିଥିବା ବ୍ୟକ୍ତିମାନେ ମଧ୍ୟ 'କର୍ମ' ଦେଇହିଁ ଅର୍ଥାତ୍ ନିଜ ନିଜ ସାମାଜିକ ଅବସ୍ଥାର କର୍ତ୍ତବ୍ୟାଦି ନିପୁଣ ଭାବରେ କରିବା ଭିତର ଦେଇହିଁ (ସେ ସବୁକୁ ଅବହେଳା କରି ବା ଛାଡି ପଳାଇ ନୁହେଁ) —ସିଦ୍ଧି ଲାଭ କରିଛନ୍ତି । ତେଣୁ କର୍ମକୁ ଘୃଣା କରିବାର କୌଣସି ହେଲେ ଯୁକ୍ତି ତ ନାହିଁ, ବରଂ "କର୍ମତ୍ୟାଗ" ଅଯୌକ୍ତିକ ଓ ମାରାତ୍ମକ । ବଞ୍ଚିବା ପାଇଁ କାମ କରିବା ଆବଶ୍ୟକ ପଡୁନ, ଅର୍ଥାତ ଯେ ଅବସ୍ଥା ସମ୍ପନ୍ନ ବା ଯାହାଙ୍କର କୌଣସି ସାମାଜିକ ଦାୟିତ୍ୱ ନାହିଁ ଗୀତା ସେମାନଙ୍କୁ ମଧ୍ୟ "ଲୋକ ସଂଗ୍ରହ"

ଅର୍ଥାତ୍ ଜନ-କଲ୍ୟାଣ ଉଦ୍ଦେଶ୍ୟରେ ଅଜସ୍ର ଭାବରେ କର୍ମ-ନିରତ ରହିବାକୁ ଉପଦେଶ ଦେଇଛନ୍ତି ।

ବ୍ରାହ୍ମଣ୍ୟ-ଧର୍ମ-ପରିପୁଷ୍ଟ ଅର୍ଜୁନଙ୍କ ପକ୍ଷରେ ସନ୍ନ୍ୟାସ ଓ ତ୍ୟାଗ ଭିତରେ ଥିବା ସୂକ୍ଷ୍ମ ପ୍ରଭେଦ ବୁଝି ନ ପାରିବା ସ୍ୱାଭାବିକ । ବିଶେଷ କରି ଗୀତା, ପୂର୍ବରୁ ସତରଟିଯାକ ଅଧ୍ୟାୟରେ ତ୍ୟାଗୀ, ଯୋଗୀ, ସନ୍ନ୍ୟାସୀ, ଜ୍ଞାନୀ, ଭକ୍ତ, ଓ ଅସକ୍ତ, ଇତ୍ୟାଦି ଶବ୍ଦ ଯେପରି ସଦ୍‌ଚ୍ଛାକ୍ରମେ ବହୁଳ ଭାବରେ ବ୍ୟବହାର କରିଛନ୍ତି, ସେଥିରେ ସେ ସବୁର ପ୍ରତ୍ୟେକଟିର ବିଶେଷ ବିଶେଷ ତାତ୍ପର୍ଯ୍ୟ ନେଇ ସାଧାରଣ ପାଠକ ମନରେ ଅସ୍ୱଚ୍ଛତା ରହିବା ସ୍ୱାଭାବିକ । ଗୀତା ଏହି ଶେଷ ଅଧ୍ୟାୟରେ ସେହିସବୁ ଅସ୍ୱଚ୍ଛତାକୁ ଦୂରୀଭୂତ କରିବାକୁ ଚେଷ୍ଟା କରିବା ଗୀତାର ବରେଣ୍ୟ ଲେଖକଙ୍କର ପ୍ରଜ୍ଞା ଓ ଦୂର ଦୃଷ୍ଟି ସୂଚନା କରେ ।

ଶ୍ରୀ ଭଗବାନୁବାଚ

( ୨ )

କାମ୍ୟାନାଂ କର୍ମଣାଂ ନ୍ୟାସଂ ସନ୍ନ୍ୟାସଂ କବୟୋ ବିଦୁଃ
ସର୍ବ କର୍ମଫଳ ତ୍ୟାଗଂ ପ୍ରାହୁସ୍ତ୍ୟାଗଂ ବିଚକ୍ଷଣାଃ । ୨ ।

ଶ୍ରୀ ଭଗବାନ ଉବାଚ (ଭଗବାନ ଶ୍ରୀକୃଷ୍ଣ କହିଲେ) । କବୟଃ (ଜ୍ଞାନୀ ଲୋକେ) କାମ୍ୟାନାଂ କର୍ମଣାଂ (କାମ ଅର୍ଥାତ ଆଶା-ଅଭିଳାଷ-ଜର୍ଜ୍ଜରିତ କର୍ମ ମାନଙ୍କର) ନ୍ୟାସଂ (ତ୍ୟାଗହିଁ) ସନ୍ନ୍ୟାସଂ ବିଦୁଃ (ସନ୍ନ୍ୟାସ ବୋଲି ଜାଣନ୍ତି) । [ପୁଣି] ବିଚକ୍ଷଣାଃ (ତତ୍ତ୍ୱଦର୍ଶୀ ବିଚକ୍ଷଣ ଲୋକେ) ସର୍ବକର୍ମ ଫଳ ତ୍ୟାଗଂ (ସକଳ କାର୍ଯ୍ୟର ଫଳ ପ୍ରତ୍ୟାଶାର ତ୍ୟାଗକୁହିଁ) ତ୍ୟାଗଂ ପ୍ରାହୁଃ (ପ୍ରକୃତ ତ୍ୟାଗ ବୋଲି କହିଥାନ୍ତି) ।

ଅନୁବାଦ—

ଶ୍ରୀକୃଷ୍ଣ କହିଲେ । ହେ ଅର୍ଜୁନ, ଆଶା-ବାସନା-ପରିଚାଳିତ କର୍ମ ମାନଙ୍କର ପରିତ୍ୟାଗକୁ ଯଦିଓ କୁହାଯାଇଥାଏ 'ସନ୍ନ୍ୟାସ' ତତ୍ତ୍ୱଦର୍ଶୀମାନଙ୍କ ମତରେ, ସକଳକର୍ମ କରି ଚାଲିଥିବା ସତ୍ତ୍ୱେ ସେଗୁଡ଼ିକର ଫଳଗୁଡ଼ିକର ତ୍ୟାଗହିଁ ପ୍ରକୃତ ତ୍ୟାଗ ।

ପରବର୍ତ୍ତୀ ପାଞ୍ଚ ଛଅଟି ଶ୍ଳୋକରେ ଗୀତା ତାଙ୍କର ଏହି ପ୍ରସିଦ୍ଧ କର୍ମ-ଦର୍ଶନର ସାରକଥା କହି ଚାଲିବେ ।

( ୩ )

ତ୍ୟାଜ୍ୟଂ ଦୋଷବଦିତ୍ୟେକେ କର୍ମପ୍ରାହୁ ର୍ମନୀଷିଣଃ
ଯଜ୍ଞଦାନ ତପଃ କର୍ମ ନ ତ୍ୟାଜ୍ୟମିତି ଚାପରେ । ୩ ।

ଏକେ ମନୀଷିଣଃ ପଣ୍ଡିତମାନଙ୍କ ମଧ୍ୟରୁ କେତେକ) କର୍ମ ଦୋଷବତ୍ ଇତି ତ୍ୟାଜ୍ୟଂ ପ୍ରାହୁଃ (କର୍ମମାତ୍ରେ ଦୋଷଯୁକ୍ତ, ତେଣୁ ସର୍ବଥା ପରିତ୍ୟାଜ୍ୟ ବୋଲି କହିଥାନ୍ତି । ଅପରେଚ (କିନ୍ତୁ ଅନ୍ୟ ପଣ୍ଡିତମାନେ) ଯଜ୍ଞଃ, ଦାନ, ତପସ୍ୟା ଇତ୍ୟାଦି କର୍ମସବୁ ଦୋଷହୀନ ଏବଂ ସେହି ହେତୁ କରଣୀୟ ବୋଲି କହିଥାନ୍ତି ।

**ଅନୁବାଦ—**

ହେ ଅର୍ଜ୍ଜୁନ, କେତେକ ପଣ୍ଡିତଙ୍କର ମତ ମଧ୍ୟ ଏପରି ଯେ କର୍ମମାତ୍ରେ ଦୋଷଯୁକ୍ତ, ତେଣୁ ଯଜ୍ଞ, ଦାନ, ତପସ୍ୟାଦି ଧର୍ମୀୟ କର୍ମ ଛଡା ଆଉ ସର୍ବବିଧ କର୍ମ ଏକାବେଳେକେ ପରିତ୍ୟାଜ୍ୟ ।

**ବିଶେଷ ଭାଷ୍ୟ—**

ପାଠକେ ମନେ ରଖିବେ ଯେ, ଏହା ଗୀତାଙ୍କର ନିଜସ୍ୱ ମତ ଆଦୌ ନୁହେଁ । ଅପରେ ବା ଅନ୍ୟର ବା କେତେକ ପଣ୍ଡିତଙ୍କର ମତହିଁ ଗୀତା ଏଠାରେ ଆଲୋଚନା ପାଇଁ ଉପସ୍ଥାପିତ କରିଛନ୍ତି । ଗୀତା ନିଜର ମତ ଶେଷରେ ଦେବେ । କିନ୍ତୁ ଅନେକେ ଏହି ଶ୍ଳୋକଟିକୁ ଗୀତାଙ୍କର 'ନିଜର ମତ' ବୋଲି ବାରମ୍ବାର ଉଦ୍ଧାର କରିଥାନ୍ତି । ଏହା କେବଳ ଅବାନ୍ତର ତାର୍କିକତା । ପରବର୍ତ୍ତୀ ଶ୍ଳୋକମାନଙ୍କରେ ଗୀତାଙ୍କର ନିଜର ମତ ପାଠକେ ପାଇବେ ।

( ୪ )

ନିଶ୍ଚୟଂ ଶୃଣୁ ମେ ତତ୍ର ତ୍ୟାଗେ ଭରତ ସତ୍ତମ
ତ୍ୟାଗୋହି ପୁରୁଷ ବ୍ୟାଘ୍ର ତ୍ରିବିଧଃ ସଂପ୍ରକୀର୍ତ୍ତିତଃ । ୪ ।

[ହେ] ଭରତ ସତ୍ତମ (ଅର୍ଜ୍ଜୁନ) ତତ୍ର ତ୍ୟାଗେ (ସେହି କର୍ମତ୍ୟାଗ ବିଷୟରେ) ମେ ନିଶ୍ଚୟଂ ଶୃଣୁ (ମୋର ନିଜର ନିଶ୍ଚିତ ମତ ଶୁଣ) । [ହେ] ପୁରୁଷ ବ୍ୟାଘ୍ର (ନରଶ୍ରେଷ୍ଠ ଅର୍ଜ୍ଜୁନ) ତ୍ୟାଗଃ ହି ତ୍ରିବିଧ ସଂପ୍ରକୀର୍ତ୍ତିତଃ (ତ୍ୟାଗ ତିନିପ୍ରକାର ବୋଲି ଧରଯାଇଥାଏ) ।

**ଅନୁବାଦ—**

ତେଣୁ ହେ ଅର୍ଜ୍ଜୁନ, କର୍ମତ୍ୟାଗ ସମ୍ପର୍କରେ ମୋର ନିଶ୍ଚିତ କେତେକ ମତ ତୁମେ ବର୍ତ୍ତମାନ ଶୁଣିନିଅ । ଏହି ତ୍ୟାଗ ସାଧାରଣତଃ ତିନି ପ୍ରକାରର ବୋଲି ଜାଣିବ ।

( ୫ )

ଯଜ୍ଞଦାନ ତପଃ କର୍ମ ନ ତ୍ୟାଜ୍ୟଂ କାର୍ଯ୍ୟମେବ ତତ୍
ଯଜ୍ଞୋଦାନଂ ତପଶ୍ଚୈବ ପାବନାନି ମନୀଷିଣାଂ । ୫ ।

ଯଜ୍ଞଦାନ ତପଃକର୍ମ ( ଯଜ୍ଞ, ଦାନ ଓ ତପସ୍ୟାଦି କର୍ମ ) ନ ତ୍ୟାଜ୍ୟଂ (ପରିତ୍ୟଜ୍ୟ ବୋଲି, ଅର୍ଥାତ୍ ସେଗୁଡ଼ାକ ଖରାପ କାମ ବୋଲି ନ-କରିବାର କଥା ନାହିଁ; ତତ୍ କାର୍ଯ୍ୟଂ ଏବଂ ( ସେସବୁ କରଣୀୟ ) [କିନ୍ତୁ କିପରି ଲୋକ କରିବେ ଓ କାହିଁକି କରିବେ ?] ଯଜ୍ଞୋଦାନଂ ତପଶ୍ଚୈବ ମନୀଷିଣାଂ ପାବନାନି ( ଯଜ୍ଞ, ଦାନ ଓ ତପସ୍ୟାଦି କର୍ମ, ଈଶ୍ୱରଶୀଳ ଲୋକମାନଂକ ପ୍ରତି ଅର୍ଥାତ୍ ଯେଉଁମାନେ ପ୍ରକୃତରେ ନିଜ ଭିତରେ ଅଧ୍ୟାତ୍ମ—ସାଧକ, ସେମାନଙ୍କ ପ୍ରତ ପବିତ୍ରତାର ବାହକ ହୋଇଥାନ୍ତି, ଅର୍ଥାତ୍ ଚିତ୍ତଶୁଦ୍ଧିର କାରଣ ହୋଇଥାନ୍ତି )

**ଅନୁବାଦ—**

ହେ ଅର୍ଜ୍ଜୁନ, ପ୍ରକୃତ ଈଶ୍ୱରବନ୍ତ ଲୋକମାନଙ୍କ ( ମନୀଷିଣାଂ ) ପ୍ରତ ଯଜ୍ଞ, ଦାନ ତପ ଇତ୍ୟାଦି ବାହ୍ୟାଡ଼ମ୍ବର ମୂଳକ କର୍ମସବୁ ମଧ୍ୟ ନୈତିକ ପବିତ୍ର-ତାର ବାହକ ହୋଇଥାନ୍ତି; ତେଣୁ ସେଗୁଡ଼ିକ ନିର୍ବିଶେଷରେ ପରିତ୍ୟାଜ୍ୟ ବୋଲି ଘୋଷିତ ହେବା ଉଚିତ ନୁହେଁ । ସେ ସବୁ ଯଥା-ବିହିତ ସ୍ଥାନ-କାଳ-ପାତ୍ରରେ କରଣୀୟୟ ବୋଲି ଜାଣିବ ।

( ୬ )

ଏତାନ୍ୟପିତୁ କର୍ମାଣି ସଙ୍ଗ ତ୍ୟକ୍ତ୍ୱା ଫଳାନିଚ
କର୍ତ୍ତବ୍ୟାନୀତି ମେ ପାର୍ଥ ନିଶ୍ଚିତଂ ମତମୁତ୍ତମଂ । ୬ ।

[ ହେ ] ପାର୍ଥ ( ଅର୍ଜ୍ଜୁନ ) ଏତାନି କର୍ମାଣି ଅପି ( କେବଳ ଅନ୍ୟାନ୍ୟ ସାଂସାରିକ କାମ ନୁହେଁ, ଏହି ତଥାକଥିତ ଧର୍ମୀୟ ଆଡ଼ମ୍ବର ସବୁକୁ ମଧ୍ୟ ) ସଙ୍ଗ ( ଆସକ୍ତି ) ଫଳାନି ଚ ( ଏବଂ ସେ ସବୁଥିରୁ ଫଳାଶାକୁ ) ତ୍ୟକ୍ତ୍ୱା

( ସର୍ବଥା ପରିତ୍ୟାଗ କରି ) କର୍ତ୍ତବ୍ୟାନି ( କରିବା ଉଚିତ ) ଇତି ମେ ନିଶ୍ଚିତଂ ଉତ୍ତମଂ ମତଂ ( ଏହାହିଁ ମୋର ସ୍ଥିର ଓ ଉତ୍ତମ ଉପଦେଶ ) ।

**ଅନୁବାଦ—**

କିନ୍ତୁ ହେ ଅର୍ଜୁନ, ଏହା ମୋର ନଜର ନିଶ୍ଚିନ୍ତ ମତ ବୋଲି ଜାଣିବ ଯେ ଏହି ଧର୍ମୀୟ ଆଚରଣ ସବୁ ଅନୁଷ୍ଠିତ ହେଲାବେଳେ ମଧ୍ୟ କର୍ତ୍ତା କୌଣସି ଫଳାଶା ରଖି ଯେପରି ସେସବୁ ନ କରନ୍ତି । କେବଳ ନିଜର ଆଧ୍ୟାତ୍ମିକ ପ୍ରୟୋଜନ ଦୃଷ୍ଟିରୁହିଁ ସେ ସବୁକୁ କରଣୀୟ ବୋଲି ସେ ଯେପରି ଆନ୍ତରିକ ଅବୋଧ ଦୃଢ ରଖିହିଁ ସେ ସବୁକୁ କର୍ତ୍ତବ୍ୟ ଭାବରେ କରିବ ।

( ୭ )

ନିୟତସ୍ୟ ତୁ ସନ୍ନ୍ୟାସଃ କର୍ମାଣୋ ନୋପପଦ୍ୟତେ
ମୋହାତ୍ତସ୍ୟ ପରିତ୍ୟାଗସ୍ତାମସଃ ପରିକୀର୍ତ୍ତିତଃ । ୭ ।

ନିୟତସ୍ୟ କର୍ମଣଃ ତୁ ସନ୍ନ୍ୟାସଃ ନ ଉପପଦ୍ୟତେ । [ ବିନା ବିଚାରରେ କେବଳ ତ୍ୟାଗ ବା ଅଧ୍ୟାତ୍ମ ସାଧନା ନାମରେ ] (ପ୍ରକୃତି ନିର୍ଦ୍ଦିଷ୍ଟ ଚିରନ୍ତନ କର୍ମମାନଂକର [ ନିୟତସ୍ୟ ] ତ୍ୟାଗ ଆଦୌ ଯୁକ୍ତିଯୁକ୍ତ ନୁହେଁ ) ।
ମୋହାତ୍ ତସ୍ୟ ପରିତ୍ୟାଗଃ ( ମୋହ ବା ଅଜ୍ଞାନତା ବଶତଃ, ବିଚାରହୀନ ଭାବରେ ସେ ସବୁ କର୍ମର ବର୍ଜନ ) ତାମସଃ ପରିକୀର୍ତ୍ତିତଃ ( ତାମସିକ ତ୍ୟାଗ ବୋଲି ପରିଚିତ ହୋଇଥାଏ ) ।

**ଅନୁବାଦ—**

ହେ ଅର୍ଜୁନ, ଆଧ୍ୟାତ୍ମିକ ସାଧନା ନାମରେ, ପ୍ରତ୍ୟେକ ମନୁଷ୍ୟ ପାଇଁ ପ୍ରକୃତି-ନିର୍ଦ୍ଦିଷ୍ଟ ସାଧାରଣ କର୍ମ ସବୁର ବିନା ବିଚାରରେ ପରିତ୍ୟାଗ ଏକାନ୍ତରେ ତାମସିକ ପ୍ରଚେଷ୍ଟା ବୋଲି ଜାଣିବ ।

**ବିଶେଷ ଭାଷ୍ୟ—**

ପରବର୍ତ୍ତୀ ଏକାଦଶ ଶ୍ଳୋକରେ ଗୀତା 'କର୍ମ' ସଂବଂଧରେ ଓ 'ତ୍ୟାଗ' ସମ୍ବନ୍ଧରେ ତାଙ୍କର ଶେଷ ନିଷ୍ପତ୍ତି ଦେଇଦେବେ । ଏହି ଶ୍ଳୋକଟି ମଧ୍ୟ ଗୀତାଂକର ଏହି ମୁଖ୍ୟ ବିଚାର୍ଯ୍ୟ ଉପରେ ଏକ ସ୍ଥିର ନିଷ୍ପତ୍ତି । କିନ୍ତୁ ରକ୍ଷଣଶୀଳ ଟୀକାକାରମାନେ ଏହି ଶ୍ଳୋକରେ ଥିବା 'ନିୟତ କର୍ମ'ର ନାନା ବ୍ୟାଖ୍ୟା

ଥୋଇ, ଶ୍ଳୋକର ସରଳାର୍ଥଟିକୁ ଜଟିଳ କରି ପକାଇଥାନ୍ତି । ସେମାନଂକ କହିବାନୁସାରେ 'ନିୟତକର୍ମ' କୁ 'ଶାସ୍ତ୍ର-ବିହିତ କର୍ମ' କହିବା ନିରତିଶୟ କଷ୍ଟ-କଳ୍ପନା ବୋଲି ଧରିବାକୁ ହେବ । ଯଜ୍ଞାଦି ଶାସ୍ତ୍ରୀୟ କର୍ମାଦି ଉପରେ ଗୀତା, ପଞ୍ଚମ ଓ ଷଷ୍ଠ ଶ୍ଳୋକରେ ନଜର ମତ ଦେଇସାରିଛନ୍ତି । ଏ ଶ୍ଳୋକରେ ତାର ପୁନରାବୃତ୍ତି କରନ୍ତେ କାହିଁକି ? 'ନିୟତ' ଶବ୍ଦର ଦୁଇଟି ମୁଖ୍ୟ ଆଭିଧାନିକ ଅର୍ଥ । ଏକ—ସଂଯତ, ନିୟନ୍ତ୍ରିତ । ଦୁଇ—ନିତ୍ୟ, ଶାଶ୍ୱତ, ବିଧିନିର୍ଦ୍ଦିଷ୍ଟ । କର୍ମ ଶବ୍ଦର ବିଶେଷଣ ରୂପେ ତେଣୁ ଏହା ବୁଝାଇବ 'ସଂଯତ କର୍ମ' ବା 'ନିତ୍ୟ'ଅର୍ଥାତ୍ ସ୍ୱାଭବିକ କର୍ମ । ତେବେ ବିଚାର୍ଯ୍ୟ, ମନୁଷ୍ୟ ପାଇଁ 'ନିତ୍ୟ' କର୍ତ୍ତବ୍ୟ ସବୁ କ'ଣ ? 'ଶାସ୍ତ୍ର'-ନିର୍ଦ୍ଦିଷ୍ଟ କର୍ମ, 'ନିତ୍ୟ' କର୍ମ ହୋଇପାରେ ବା ନ ହୋଇ ମଧ୍ୟ ପାରେ । କାରଣ ଏ ପୃଥିବୀରେ ଧର୍ମ ଭେଦରେ, ବିଶ୍ୱାସ ଭେଦରେ, ଜଳବାୟୁ ଭେଦରେ ଓ ସମାଜ ଭେଦରେ ଶାସ୍ତ୍ର ଭିନ୍ନ ଭିନ୍ନ । କିନ୍ତୁ ଦେଶ-କାଳ-ଧର୍ମ-ନିର୍ବିଶେଷରେ ମନୁଷ୍ୟ ମାତ୍ରରହିଁ କେତେ ଗୁଡ଼ାଏ ସ୍ୱାଭବିକ କର୍ତ୍ତବ୍ୟ ରହିଛି । ଯେଉଁ ସବୁର ବିଶ୍ୱ-ଜନୀନତା ଯୋଗୁଁ ସେଗୁଡ଼ିକୁ ପ୍ରକୃତି-ପ୍ରଣୋଦିତ ବୋଲି କହିବାକୁ ହେବ । ଏ ଗୁଡ଼ିକ ହେଲ ସ୍ୱାମୀ-ସ୍ତ୍ରୀ-ସମ୍ବନ୍ଧ, ପିତା-ପୁତ୍ର-କନ୍ୟା-ସଂବଂଧ, ପ୍ରତିବେଶୀ-ପ୍ରତିବେଶୀ ସମ୍ବନ୍ଧ, ବ୍ୟକ୍ତି-ସମାଜ ସମ୍ବନ୍ଧ, ମନୁଷ୍ୟ-ମନୁଷ୍ୟ ସମ୍ବନ୍ଧ, ଇତ୍ୟାଦି ଇତ୍ୟାଦି ଶାସ୍ତ୍ରହୀନ ଓ ନିରୀଶ୍ୱର ଲୋକର ମଧ୍ୟ, ସମାଜରେ ଭଲରେ ଚଳିବାକୁ ହେଲେ, ଏସବୁ କର୍ତ୍ତବ୍ୟ ପାଳିବାକୁ ହେବ । ପୁଣି ନିଜର ବଞ୍ଚିବା ପାଇଁ ବ ସେ ଲୋକକୁ ଜୀବନଯାକ କୌଣସି ନା କୌଣସି କର୍ମ କରିବାକୁ ହେବ । ତେଣୁ ଜନ୍ମ ହେବା ମାତ୍ରେ ଲୋକକୁ ନାନା "କର୍ତ୍ତବ୍ୟ" କର୍ମ ଆପେ ଆସି ଘେରିଯାନ୍ତି ଏବଂ ମୃତ୍ୟୁ ପର୍ଯ୍ୟନ୍ତ ତାକୁ ସେ ସବୁ କରିବାକୁ ହୋଇଥାଏ ଏକାଦଶ ଶ୍ଳୋକରେ ଗୀତା ଏହି-ଭବ-ପ୍ରବର୍ତ୍ତକ ତାଙ୍କର ସେହି ପୂର୍ବ ବାକ୍ୟ ପୁନରାବୃତ୍ତି କରିବେ— ନହି ଦେହଭୃତାଂ ଶକ୍ୟଂ ତ୍ୟକ୍ତୁଂ କର୍ମାଣ୍ୟଶେଷତଃ, ( କୌଣସି ଦେହଧାରୀ ଜୀବ ପକ୍ଷରେ ସଂପୂର୍ଣ୍ଣ କର୍ମତ୍ୟାଗ ଅସମ୍ଭବ ) । ତେଣୁ ଯଜ୍ଞ, ତପସ୍ୟାଦି କର୍ମକର ବା ନକର ପ୍ରତ୍ୟେକ ଲୋକକୁ କେତେଗୁଡ଼ାଏ ପ୍ରକୃତି-ପ୍ରଣୋଦିତ, ପ୍ରକୃତି-ନିର୍ଦ୍ଦିଷ୍ଟ ( ତେଣୁ ସ୍ୱାଭବିକ ଭବରେ ନିୟତ ବା ନିତ୍ୟ ) କର୍ମ କରିବାକୁଇ ହେବ । ପରିପୂର୍ଣ୍ଣ ଯୌକ୍ତିକତା ସହ, ଗୀତା ଦୃଢ଼ ଭବରେ ଘୋଷଣା କରିଛନ୍ତି ଯେ, ମନୁଷ୍ୟର ଏହି ସବୁ ସ୍ୱାଭବିକ "ନିୟତ" କର୍ମସବୁକୁ ଆଧ୍ୟାତ୍ମ-ସାଧନା ନାମରେ ପରିତ୍ୟାଗ କରିବା ଘୋରତମ ଅଜ୍ଞତା ( ତାମସଃ ପରିକୀର୍ତ୍ତିତଃ ) ଅନ୍ୟପକ୍ଷରେ "ନିୟତ କର୍ମ"କୁ କେବଳ 'ଶାସ୍ତ୍ର'-ନିର୍ଦ୍ଦିଷ୍ଟ' କର୍ମ ବୋଲିହିଁ ଅପ-ବ୍ୟାଖ୍ୟା କରି, ଅର୍ଥହୀନ ଓ ମାରାତ୍ମକ ଆଚାର ସବୁକୁ ବଞ୍ଚାଇ ରଖିବାକୁ ଚେଷ୍ଟା କରିବା ଗୀତାଂକର ଉଦାର-ମହତ୍ ଆଦର୍ଶର ଚରମ ଅବମାନନା ବୋଲି ଧରିବାକୁ ହେବ । "ନିୟତ" ଯଦି କେବଳ ଶାସ୍ତ୍ର-ନିର୍ଦ୍ଦିଷ୍ଟ

କର୍ମ ହୋଇଥାନ୍ତା ତେବେ ପଞ୍ଚମ ନବମ ଶ୍ଳୋକରେ ଆମକୁ ପୁଣି କେଉଁଟା କରିବୁ କେଉଁଟା ନ କରିବୁ, ସେ ବାଛିବାର ଦାୟିତ୍ୱ ଦିଆଯାଇ ନଥାନ୍ତା । "କାର୍ଯ୍ୟ ମିତ୍ୟେବ ଯତ୍ କର୍ମ ନିୟତଂ କ୍ରିୟତେଽର୍ଜୁନ"— ନିୟତ କର୍ମମାନଙ୍କ ମଧ୍ୟରୁ ଯାହା 'କାର୍ଯ୍ୟ' ( କରଣୀୟ ) ବୋଲି ଠିକ୍ କରିଥ, ହେ ଅର୍ଜୁନ, ତାହାହିଁ କରିବ । ଶାସ୍ତ୍ର-ନିର୍ଦ୍ଦିଷ୍ଟ ( ନିୟତ ) କର୍ମରେ ମନୁଷ୍ୟର ଏ ସ୍ୱାଧୀନତା ଆସିବ ବା କୁଆଡୁ ? ତେଣୁ 'ନିୟତ କର୍ମ'ର ଅର୍ଥ—ନାଗରିକର ସ୍ୱାଭବିକ, ସାମାଜିକ ଓ ମାନବିକ ସ୍ୱକର୍ମ ଏବଂ ଗୀତା ଦୃଢ଼ଭାବରେ କହୁଛନ୍ତି ଯେ, ଧର୍ମ-ସାଧନା ନାମରେ ଏଗୁଡ଼କୁ ଛାଡ଼ ଦେଇ ସଂପୂର୍ଣ୍ଣ କର୍ମହୀନ ଭିକ୍ଷାଶୀ ସନ୍ନ୍ୟାସୀ ସାଜିବା ଘୋର ଅଜ୍ଞତା ( ତାମସିକ ତ୍ୟାଗ ) ।

( ୮ )

ଦୁଃଖ ମିତ୍ୟେବ ଯତ୍ କର୍ମ କାୟକ୍ଳେଶଭୟାତ ତ୍ୟଜେତ୍
ସକୃତ୍ୱା ରାଜସଂତ୍ୟାଗଂ ନୈବ ତ୍ୟାଗ ଫଳଂ ଲଭେତ୍ । ୮ ।

[ଯେଉଁଲୋକ] ଯତ୍ କର୍ମ ଦୁଃଖଂ ଇତି ଏବ (ଯେଉଁ କାମକୁ ଦୁଃଖ ବା ଝଞ୍ଜାଳଜନକ ବୋଲି ଭାବି) [ପୁଣି] କାୟକ୍ଳେଶ ଭୟାତ୍ (ତଜ୍ଜାତ ଦୈହିକ କଷ୍ଟସବୁର ଭୟରେ) ତ୍ୟଜେତ (ତ୍ୟାଗକରି ପକାନ୍ତି) ସଃ ରାଜସଂ ତ୍ୟାଗଂ କୃତ୍ୱା (ସେ ସେ ପ୍ରକାର ରାଜସିକ ତ୍ୟାଗକରି) ତ୍ୟାଗଫଳଂ ନ ଲଭେତ (ତ୍ୟାଗ ଫଳ ପାଇ ନ ପାରେ) ।

## ଅନୁବାଦ—

ପୁଣି ହେ ଅର୍ଜୁନ, ସାମାଜିକ ଓ ମାନବିକ ଦୃଷ୍ଟିରୁ ସର୍ବଥା କରଣୀୟ ଯେଉଁ କର୍ମ ତା'କୁ ନିଜର ବ୍ୟକ୍ତିଗତ ଅସୁବିଧା ବା ଶାରୀରିକ କଷ୍ଟର ଭୟରୁ ପରିତ୍ୟାଗ କରିବା, କେବଳ ରାଜସିକ ମାତ୍ର ସେଥିରେ ତ୍ୟାଗର ଫଳ ବା ମହିମା ଆସି ନପାରେ ।

## ବିଶେଷ ଭାଷ୍ୟ—

ଧର୍ମ ସାଧନାରେ ତ୍ୟାଗ (Secrifice)ର ମହାତ୍ମ୍ୟ ବା ଉପକାରିତା ସର୍ବତ୍ର ସବୁ ଧର୍ମରେ ପ୍ରକୀର୍ତ୍ତିତ । କିନ୍ତୁ ପ୍ରକୃତ କାର୍ଯ୍ୟ ଦେଖାଇବା ପାଇଁ ତାହା ମାନସିକ ଓ ଆତ୍ମିକ ସ୍ତରରୁହିଁ ଆସିବା ଉଚିତ । ଗୀତା ବରବର ଅଧ୍ୟାତ୍ମିକତା ନାମରେ କୌଣସି ପ୍ରକାରର ପ୍ରତାରଣା ବା 'ମିଥ୍ୟାଚାର'କୁ ମୂଳରୁ ଦୃଢ଼

ଉପରେ ନିନ୍ଦା କରି ଆସିଛନ୍ତି । କିନ୍ତୁ ଆମେ ଦେଖୁ ଯେ, ଏ ପୃଥିବୀରେ ଧର୍ମ ଜଗତରେହିଁ ସର୍ବତ୍ର ପ୍ରତାରଣା ସର୍ବାଧିକ । ଏପରିକି ଅମର ନଜର କଠୋପ-ନିଷଦରେ ଆମେ ଦେଖୁ ଯେ ନଚିକେତାର ପିତା 'ଦାନ' କରୁଛନ୍ତି ବୋଲି ଦେଖେଇବାକୁ ଯାଇ, ବୁଢ଼ୀ ଅକର୍ମଣ୍ୟ ଗାଈଗୋରୁ ସବୁ ଦାନ କରିବାରୁ ଆଧ୍ୟାତ୍ମିକ ପ୍ରତଭବାନ ନଚିକେତା ବାପର ଏ ପ୍ରତାରଣା ବିରୁଦ୍ଧରେ ପ୍ରତିବାଦ କରିଥିଲେ । ସେଇମିତି, କେବଳ କଷ୍ଟକର ବୋଲି କୌଣସି କାମକୁ ନକରି ତା' ଉପରେ 'ତ୍ୟାଗ'ର ବାହାନା ଲେପି ଦେଇ ତାକୁ ଗୌରବାବହ କରିବାକୁ ଯିବା ମଧ୍ୟ ସାଧାରଣ ଘଟଣା । ଗୀତା, ଏଠାରେ ବା କୌଣସିଠାରେ, ଏ ପ୍ରକାର ମିଥ୍ୟାଚାରକୁ ପ୍ରଶ୍ରୟ ଦେଇ ନାହାନ୍ତି ।

( ୯ )

କାର୍ଯମିତ୍ୟେବ ଯତ୍ କର୍ମ ନିୟତଂ କ୍ରିୟତେଽର୍ଜୁନ
ସଂଗଂ ତ୍ୟକ୍ତ୍ୱା ଫଳଂଚୈବ ସ ତ୍ୟାଗଃ ସାତ୍ତ୍ୱିକୋମତଃ । ୯ ।

[ହେ] ଅର୍ଜୁନ, ସଂଗଂ ଫଳଂ ଚ ଏବ ତ୍ୟକ୍ତ୍ୱା (ଆସକ୍ତି ଓ ଫଳାଶା ପରିତ୍ୟାଗ କରି) କାର୍ଯଂ ଇତ ଏବ (ଏହା ମୋର କର୍ତ୍ତବ୍ୟ ବୋଲି ଭାବି) ଯତ ନିୟତଂ କର୍ମ କ୍ରିୟତେ (ମନୁଷ୍ୟର ପ୍ରକୃତି-ସିଦ୍ଧ ସାମାଜିକ ଓ ମାନବିକ ଯେଉଁସବୁ କର୍ମ କରାଯାଏ) ସଃ ତ୍ୟାଗଃ (ସ୍ୱାଭାବିକ ହେଲେହେଁ ସେ କର୍ମରୁ ଯେଉଁ ଆସକ୍ତି ଓ ଫଳାଶାକୁ ତ୍ୟାଗ କରାଗଲା, ସେହି ତ୍ୟାଗକୁହିଁ) ସାତ୍ତ୍ୱିକ ମତଃ (ସାତ୍ତ୍ୱିକ କୁହାଯାଏ) ।

### ଅନୁବାଦ—

ଯେଉଁ କର୍ମ ସାମାଜିକ ଓ ମାନବିକ ଦୃଷ୍ଟିରୁ ଚିରକାଳ ଏକାନ୍ତ କରଣୀୟ ବୋଲି ଧରାଯାଇଥାଏ, ସେ ସବୁକୁ କୌଣସି ଫଳ-ପ୍ରତ୍ୟାଶା ନରଖି କେବଳ ନିଜର କର୍ତ୍ତବ୍ୟ କର୍ମ ବୋଲି ଭାବିହିଁ କରାଯାଏ, ହେ ଅର୍ଜୁନ, ସେହି ମହତ କର୍ମଶୀଳତାହିଁ ପ୍ରକୃତ ସାତ୍ତ୍ୱିକ ତ୍ୟାଗ-ନୁହେଁ ନୈଷ୍କର୍ମ୍ୟ ବା ନୁହେଁ କିଛି-କାମ-ନକରି ସନ୍ୟାସୀ ବୋଲାଇ ପରାନ୍ନ-ପୁଷ୍ଟ ହେବା ।

### ବିଶେଷ ଭାଷ୍ୟ—

ଆମେ ଯାହାକରୁ ସାଧାରଣତଃ ସେଥିରେ ଫଳାଶା ରଖୁ ଏବଂ ତାହାକୁ ପ୍ରବୃତ୍ତି ପ୍ରଣୋଦିତ ବା ଆସକ୍ତିଯୁକ୍ତ ହୋଇ କରୁ । ଅର୍ଥାତ କେଉଁ କାମ କରିବା

ଉଚିତ, କେଉଁ କାମ କରିବା ଅନୁଚିତ, ସେ ବିଷୟରେ ଆମେ କୌଣସି କାମ କରୁନା । ଆମକୁ ସୁଖ ଲାଗେ ବୋଲି ଆମେ ଅନୁଚିତ କାମ ମଧ୍ୟ କରୁ, ସେଥିରେ ନିଜର ବା ଅନ୍ୟମାନଙ୍କର ଯାହା କ୍ଷତି ହେଉ, ସେଥିକି ମଧ୍ୟ ଖାତିର ନକରି । ଏହି ଆତ୍ମ-ପ୍ରବୃତ୍ତି-ପରିତୋଷଣ ପାଇଁହିଁ ଜନକ ଜନନୀର ଅଶ୍ରୁଧାରକୁ ଖାତିର ନକରି ପୁଅ ଝିଅ ନିଜ ଖିଆଲରେ କାମକରି ଚାଲନ୍ତି । ପ୍ରତିବେଶୀର ସୁବିଧା ଅସୁବିଧା ପ୍ରତି ଅପେକ୍ଷା ନକରି ଆମେ ଆମ ସୁବିଧା ଖୋଜି ଚାଲୁ । ବ୍ୟବସାୟୀ ଖାଦ୍ୟ-ପଦାର୍ଥରେ ଅଖାଦ୍ୟ ମିଶାଇ ବିକେ ଏବଂ ଏ ଦେଶରେ ଏବେ ନିଜ ସ୍ୱାର୍ଥ ଦୃଷ୍ଟିରୁ ଶିକ୍ଷକ-ଅଧ୍ୟାପକ ମଧ୍ୟ ଛାତ୍ରଙ୍କୁ କପିରେ ସାହାଯ୍ୟ କରି ବସିଲେଣି । ଏହିପରି ଅନେକ କ୍ଷେତ୍ରରେ ଲୋକେ ଆସକ୍ତି ବା ଫଳାଶା ଦ୍ୱାରା ପ୍ରଣୋଦିତ ହୋଇହିଁ ଅକାତରେ ଘୋର ଅନୁଚିତ କାମ ସବୁ କରି ଚାଲିବାର ଦେଖାଯାଏ ।

ଗୀତାଙ୍କ ମତରେ ଇଏତ ଗର୍ହିତ କର୍ମ । ବରଂ, ଗୀତା ଆହୁରି ଆଗକୁ ଯାଇ ବରବର କହି ଆସୁଛନ୍ତି ଯେ, ଯାହା ଉଚିତ କାର୍ଯ୍ୟ, ତାହା ମଧ ଆସକ୍ତି-ଶୂନ୍ୟ ଫଳାଶା ଶୂନ୍ୟ ନ ହେଲେ ଆଦର୍ଶ-ସ୍ଥାନୀୟ ହେଲା ବୋଲି କୁହାଯିବ ନାହିଁ । ଭାରତବର୍ଷରେ ପିତାମାତା ପୁଅ-ଝିଅଙ୍କଠାରୁ ପ୍ରତିଦାନ ଆଶା କରିଥାନ୍ତି । ଘରେ ବା ବାହାରେ କିଛି ଭଲକାମ କଲେ, ଆମେ ପ୍ରଶଂସା ଓ ପୁରସ୍କାର ଆଶା କରିଥାଉ । ସେତକ ନ ପାଇଲେ କ୍ରୁଦ୍ଧ ଓ ବିଦ୍ରୋହୀ ହୋଇ ଉଠୁ । ଗୀତା ଏ ପ୍ରକାର ବ୍ୟବହାରକୁ ଦୃଢ଼ ଭାବରେ ଅଯୌକ୍ତିକ ଓ ଅଯଥାର୍ଥ ବୋଲି କହି, ବରବର ପ୍ରଚାର କରି ଆସିଛନ୍ତି ଯେ, ଉଚିତ କାମ ସବୁ ମଧ୍ୟ ଆସକ୍ତିଶୂନ୍ୟ ଓ ଫଳାଶାଶୂନ୍ୟ ଭାବରେ ଅର୍ଥାତ୍ ଯେହେତୁ କର୍ତ୍ତବ୍ୟ-ତେଣୁହିଁ-କରଣୀୟ ବୋଲି ଭାବି ଯେତେବେଳେ କରାଯାଏ, ସେତିକିବେଳେହିଁ ଆମର ସାଧାରଣ କର୍ମ 'କର୍ମଯୋଗ'ରେ ପରିଣତ ହୋଇଯାଏ ଏବଂ ଆମର ଦୈନନ୍ଦିନ ଜୀବନ ପରିଣତ ହୁଏ ତପସ୍ୟାରେ । ଏ ପ୍ରକାର ଯେ ଫଳ-ତ୍ୟାଗ, ଗୀତାଙ୍କ ମତରେ ସେହି ତ୍ୟାଗହିଁ ପ୍ରକୃତ ଓ ସର୍ବୋତ୍ତମ ତ୍ୟାଗ ।

ଆସକ୍ତି-ତ୍ୟାଗ ଓ ଫଳ-ତ୍ୟାଗ ସମ୍ବନ୍ଧରେ ଗୀତା ପୁଣି ବୁଝାଇ କହୁଛନ୍ତି—

( ୧୦ )

ନ ଦ୍ୱେଷ୍ଟ୍ୟକୁଶଳଂ କର୍ମ କୁଶଳେ ନାନୁଷଜ୍ଜତେ
ତ୍ୟାଗୀ ସତ୍ତ୍ୱସମାବିଷ୍ଟୋ ମେଧାବୀଛିନ୍ନ ସଂଶୟଃ । ୧୦ ।

ସତ୍ତ୍ୱସମାବିଷ୍ଟଃ (ସତ୍ତ୍ୱଗୁଣ ପୂର୍ଣ୍ଣ) ଛିନ୍ନ ସଂଶୟଃ (ସଂଶୟ ରହିତ) ମେଧାବୀ ତ୍ୟାଗୀ (ଜ୍ଞାନବାନ୍ ବିଷୟବନ୍ତ ତ୍ୟାଗୀ ସାଧକ) ଅକୁଶଳଂ କର୍ମ ନ ଦ୍ୱେଷ୍ଟି (ଅସୁଖକର, ଅମନୋନୀତ, ଅନଭିଳଷିତ କର୍ମକୁ ଘୃଣା କରିବେ ନାହିଁ) [କିମ୍ବା] କୁଶଳେ ନ ଅନୁଷଜ୍ଜତେ (ସୁଖକର, ମନୋନୀତ, ଅଭିଳଷିତ କର୍ମରେ ଆସକ୍ତ ହୋଇଯିବେ ନି) ।

## ଅନୁବାଦ—

ହେ ଅର୍ଜ୍ଜୁନ, ଯିଏ ନିଃସନ୍ଦେହ ଭାବରେ କର୍ମର-ପ୍ରକୃତ-ତତ୍ତ୍ୱଜ୍ଞ, ପ୍ରକୃତ ତ୍ୟାଗୀ ଓ ଜ୍ଞାନୀ, କେବଳ ସୁଖଦାୟକ, ମନୋମତ ଓ ଅଭିଳଷିତ କର୍ମସବୁ ପ୍ରତି ଆସକ୍ତ ରହି, ଯାହା ତାଙ୍କର ମାନସିକ ସୁଖଦାୟକ ନୁହେଁ ଅଥଚ ତାଙ୍କର କର୍ତ୍ତବ୍ୟ କର୍ମ, ସେଥିପ୍ରତି ବୀତଶ୍ରଦ୍ଧ ହୋଇ ତାହାକୁ ଆଡେଇ ଯିବାର ଆମେ ଦେଖିବାନ । ସେ ପ୍ରୀତିକର ବା ଅପ୍ରୀତକର ଯାହାହେଉ, ସେଥିପ୍ରତି ଆଦୌ ଦୃଷ୍ଟି ନରଖି, ମନୁଷ୍ୟ ଓ ସାମାଜିକ ଜୀବ ଭାବରେ ଯାହା ତାଙ୍କର କରଣୀୟ ବୋଲି ସେ ସ୍ଥିର କରନ୍ତି, ତାହା ସେ ନିରାସକ୍ତ ଭାବରେ କୌଣସି ହେଲେ ଫଳ ପ୍ରତ୍ୟାଶା ନରଖି କରିଯାଆନ୍ତି ।

## ବିଶେଷ ଭାଷ୍ୟ

ମନୁଷ୍ୟର ଏହି ପାର୍ଥିବ ଜୀବନ ହେଲା ଏକ କ୍ରମାଗତ ସଂଗ୍ରାମ । ଜୀବିକା-ସଂଗ୍ରହ, ବିଦ୍ୟା ସଂଗ୍ରହ ସ୍ୱାସ୍ଥ୍ୟ ସଂଗ୍ରହ ବାସ-ବସନ-ସଂଗ୍ରହ ଓ ପରିବାର-ପାଳନ ଇତ୍ୟାଦି ପ୍ରତ୍ୟେକଟି ପାର୍ଥିବ ବିଷୟରେ କୃତକାର୍ଯ୍ୟତା ଲାଭ ପାଇଁ ଆମକୁ ବରାବର ଲଢେଇ କରିବାକୁ ପଡ଼େ । ଆମର ଦୈନନ୍ଦିନ ବଞ୍ଚିବାଟାହିଁ ନାନା ପ୍ରତିକୂଳ ପ୍ରାକୃତିକ ଶକ୍ତି ବିରୁଦ୍ଧରେ ସଂଗ୍ରାମ ଏବଂ ଏ ସମସ୍ତ ତଳେ ଆମ ଭିତରେ ଭିତରେ ପୁଣି ସଂଗ୍ରାମ ଚାଲିଛି, ପ୍ରବୃତ୍ତି ଓ ନିବୃତ୍ତି ଭିତରେ, ମନ ଓ ବୁଦ୍ଧି ଭିତରେ । ଜୀବଜନ୍ତୁ ପ୍ରବୃତ୍ତି-ଚାଳିତ । କିନ୍ତୁ ମନୁଷ୍ୟ ଏକ ବିଚାର-ବୁଦ୍ଧି-ଯୁକ୍ତ ପ୍ରାଣୀ । ବିଧାତା ମନୁଷ୍ୟକୁ ବହୁପଥରୁ ଏକ ଏକ ପଥ ବାଛିବାର ଅଧିକାର ଓ ଶକ୍ତି ଦେଇ ସୃଷ୍ଟି କରିଛନ୍ତି । ଆମେ ସେହି ଶକ୍ତି ଓ ଅଧିକାରକୁ ଯେପରି ଭାବରେ ଓ ଯେତେଦୂର ପରି-ପାଳନ କରୁ,ଆମେ କେବଳ ସେହି ପରିମାଣରେ 'ମନୁଷ୍ୟ' ହେଉ । କୋଠାଘର, ଉତ୍ତମ ପୋଷାକ, ଅର୍ଥ-ପ୍ରାଚୁର୍ଯ୍ୟ, ପଦବ-ପ୍ରତିପତ୍ତି —ଏସବୁ ଯେନ 'ମନୁଷ୍ୟ'ବୋଲାଇବାର,ଗୀତାରେ କୌଣସିଠାରେ ସାମାନ୍ୟତମ ସୂଚନା ନାହିଁ । ଗୀତାର 'ମନୁଷ୍ୟତା' ଆସିବ କେବଳ ଆମର ପଶୁ-ସୁଲଭ ପ୍ରବୃତ୍ତି

ମାନଙ୍କ ସଂଯମରୁ । ଏହାହିଁ ଗୀତା, ସମଗ୍ର ଗଛରେ,ସମସ୍ୱରରେ ପ୍ରଚାର କରି ଆସିଛନ୍ତି । ପ୍ରବୃତ୍ତି ଓ ନବୃତ୍ତିର ଦ୍ୱନ୍ଦ୍ୱ ଆମେ ଆମ ଦୈନନ୍ଦନ ଜୀବନରେହିଁ ପ୍ରତିପଦେ ଭେଟିଥାଉ । କିନ୍ତୁ ଆମ ଭିତରୁ କେତେଜଣ, ମନୁଷ୍ୟୋଚିତ "ନିବୃତ୍ତି-ମାର୍ଗକୁ ଗ୍ରହଣ କରିଥାନ୍ତି ? ପିତା-ମାତାଙ୍କ ସେବା ବା ସମ୍ମାନ, କର୍ତ୍ତବ୍ୟ । କିନ୍ତୁ ଅସୁଖକର । ହୁଏତ ଲୋକଚକ୍ଷୁରେ ଅସମ୍ମାନଜନକ । ତେଣୁ-ତରୁଣତରୁଣୀ ତାହା ପ୍ରତି ଭ୍ରୂକ୍ଷେପ ନକରି ଅଧିକ ସୁଖକର ଅଥଚ ପରିଣାମରେ ଅର୍ଥହୀନ ସିନେମା ଦର୍ଶନ ବା ସାଂଗ ସୁଖରେ ଘଣ୍ଟା ଘଣ୍ଟା ସମୟ ବିନାଶ ପାଇଁ ଦୌଡନ୍ତି । ଗୀତା, ମନୁଷ୍ୟର ଏହି ପରମ ଓ ଚରମ ଦୁର୍ବଳତାକୁ ଜାଣି, ବାରଂବାର ଏହି ସାଧାରଣ ଅଥଚ ପ୍ରବଳ-ଅର୍ଥ-ପୂର୍ଣ୍ଣ ବ୍ୟବହାର ପ୍ରତି ଆମର ଦୃଷ୍ଟି ଆକର୍ଷଣ କର ଆସିଛନ୍ତି । ଗୀତାଂକ ବାଣୀରେ 'କର୍ତ୍ତବ୍ୟ' କର୍ମର ଅନୁଷ୍ଠାନ ହିଁ ଏକମାତ୍ର "ଧର୍ମ" । ଯାହା କରଣୀୟ ତାହାହିଁ ବରଣୀୟ । ଯାହା କେବଳ ସୁଖକର ତାହା । ନୁହେଁ ଗୀତା, ସୁଖକୁ ବା ଆନନ୍ଦକୁ ଜୀବନରୁ ବାଦ ଦେଇ ନାହାନ୍ତି ବରଂ ସେ ଆମକୁ ଆତ୍ୟନ୍ତିକ ଓ ଚିରସ୍ଥାୟୀ ସୁଖ ଓ ଆନନ୍ଦର ସଂବାଦ ଦେଇଛନ୍ତି । କିନ୍ତୁ ସେ ସୁଖ ଓ ଆନନ୍ଦ ପାଇବାକୁ ହେଲେ, ଲୋକ ନିଜକୁ ପରିପୂର୍ଣ୍ଣ ଭାବରେ ତାଲିମ୍ କରେଇନେବା ଉଚିତ; 'କର୍ତ୍ତବ୍ୟ' କର୍ମ କରିବାରେ, ହେଉ ପଛେ ତାହା ଯେତେ ଅସୁଖକର । ଏ ଅଭ୍ୟାସ ହେଲା ପରେ, ଏହାର ବିପରୀତ ଅର୍ଥାତ୍ କର୍ତ୍ତବ୍ୟ-କର୍ମ-ପରିହାର କରି କେବଳ କ୍ଷଣସ୍ଥାୟୀ-ସୁଖପାଇଁ-ପ୍ରଚେଷ୍ଟା-ଓ-ଆସକ୍ତି, ଆପେ ଆପେ ଛାଡ଼ିଯିବ । ଯେଉଁ ସଜ୍ଜନ ଦୈନନ୍ଦନ ଜୀବନରେ ସୁଖ-ସୁବିଧା-ଲାଭ-ବିଚାର-ନିର୍ବିଶେଷରେ, ଏହିପରି କେବଳ "କର୍ତ୍ତବ୍ୟକର୍ମ" କରିଚାଲନ୍ତି, ଗୀତା ତାଙ୍କୁହିଁ ଯଥାର୍ଥରେ କହିଛନ୍ତି —'ମେଧାବୀ' 'ପ୍ରକୃତ ଜ୍ଞାନୀ ଏବଂ 'ଛିନ୍ନ ସଂଶୟ' ଅର୍ଥାତ୍ ନିଜର ଜୀବନ ଦର୍ଶନ ସଂପର୍କରେ ସେ ଲୋକ ନିଃସନ୍ଦେହ, ନ ଥାଉ ପଛେ ତାର ପାଣ୍ଡିତ୍ୟ ବା ବାଗ୍ମୀତା ବା ଧନ ସଂପତ୍ତି ।

ପରବର୍ତ୍ତୀ ଶ୍ଳୋକରେ ଏହି ଭାବକଳ୍ପ ଆହୁରି ସ୍ପଷ୍ଟୀକୃତ ହେଉଛି ।

( ୧୧ )

ନହି ଦେହଭୃତା ଶକ୍ୟଂ ତ୍ୟକ୍ତୁଂ କର୍ମାଣ୍ୟ ଶେଷତଃ
ଯସ୍ତୁ କର୍ମଫଳ ତ୍ୟାଗୀ ସତ୍ୟାଗୀତ୍ୟଭି ଧୀୟତେ । ୧୧ ।

ଦେହଭୃତା ( ଯେ କୌଣସି ଦେହଧାରୀଂକ ଦ୍ୱାରା ) ଅଶେଷତଃ କର୍ମାଣି ତ୍ୟକ୍ତୁଂ ( ଏକାବେଳେକେ କର୍ମ ପରିତ୍ୟାଗ ) ନହି ଶକ୍ୟଂ ( ସମ୍ଭବ ନୁହେଁ )'ଯଃ ତୁ କର୍ମଫଳ ତ୍ୟାଗୀ [ କିନ୍ତୁ ] ( ଯେ କର୍ମର ଫଳକୁ ତ୍ୟାଗ କରି

ଷ୍ଠିଖନ୍ତି ) ସଃ ତ୍ୟାଗୀ ଇତ ଅଭିଧୀୟତେ ( ତାଂକୁହିଁ କେବଳ ତ୍ୟାଗୀ କୁହାଯାଇ ଥାଏ ) ।

## ଅନୁବାଦ—

ହେ ଅର୍ଜୁନ, ଜାଣିରଖ ଯେ ଦେହଧାରୀ ମନୁଷ୍ୟ ପକ୍ଷରେ ନିଃଶେଷ ଭାବରେ ତଥାକଥିତ ନୈଷ୍କର୍ମ୍ୟ ବା କର୍ମତ୍ୟାଗ ଅସମ୍ଭବ । ତେଣୁ ନିବିଡ଼ କର୍ମରତା ମଧ୍ୟରେ କର୍ମଫଳ ପ୍ରତି ଅନାସକ୍ତିହିଁ ପ୍ରକୃତ ତ୍ୟାଗ ବା ସନ୍ନ୍ୟାସ ବୋଲି ଜାଣିବ ।

## ବିଶେଷ ଭାଷ୍ୟ—

ଏହିକଥା ଗୀତା ଆଗରୁ ବହୁବାର କହିସାରିଛନ୍ତି । ଗୀତାର ସମସାମୟିକ ଭାରତରେ ଧର୍ମ-ସାଧନା ଭାବରେ 'କର୍ମ-ତ୍ୟାଗ'କୁ ଏକ ପରମ ପନ୍ଥା ବୋଲି ଗ୍ରହଣ କରଯାଇଥିଲା । ଏହା ସାଂଖ୍ୟମତ । ପରେ ଏହା ବୌଦ୍ଧ ଧର୍ମଦେଇ ଏକ ବିରାଟ ସାମାଜିକ ସମସ୍ୟାରେ ପରିଣତ ହେଲା । ପରେ ପରେ ଶୈବ ଓ ବୈଷ୍ଣବମାନେ ମଧ୍ୟ ଏହାକୁ ଅନା ବିଚାରରେ ଗ୍ରହଣ କରି ନେଇଛନ୍ତି । ଫଳରେ 'କାମ-ନକରିବା ହିଁ, ଭାରତର କେବଳ ତଥାକଥିତ ଧର୍ମ-ସାଧକଙ୍କର ନୁହେଁ, ସାଧାରଣ ଭାରତୀୟର ମଧ୍ୟ ଜୀବନାଦର୍ଶ ହୋଇ ଉଠିଛି । ଏ ଦେଶରେ ଶ୍ରମାର୍ଜନ ଅପମାନ-ଜନକ, କିନ୍ତୁ ଭିକ୍ଷାର୍ଜନ ନୁହେଁ । ଅଥଚ, ଆମର ଜାତୀୟ ସମ୍ମାନ ଓ ସମୃଦ୍ଧି ଦିଗରୁ ଏହା ଏକ ଘୋର ମାରାତ୍ମକ ଜୀବନ-ଦର୍ଶନ । ସମଗ୍ର ପ୍ରାଚୀନ ଭାରତୀୟ ସାହିତ୍ୟ ଓ ସଂସ୍କୃତିରେ, ଶ୍ରୀମଦ୍‌ଭଗବଦ୍ ଗୀତା ହେଉଛି ଏକମାତ୍ର ଗ୍ରନ୍ଥ, ଯେକି ଦୃଢ଼ ଭାବରେ ଏହି "କର୍ମହୀନ" ଜୀବନର ପ୍ରତିବାଦ କରିଛନ୍ତି । ପୂର୍ବେ ( ଓ ଏବେ ମଧ୍ୟ ) ଯେଉଁମାନେ ଦେଶ-ସମାଜ-ପରିବାର -ସଂପୃକ୍ତ-ଦାୟିତ୍ୱ ସବୁକୁ ଛାଡ଼ି ଅନ୍ୟର ଭିକ୍ଷାଉପରେ ଚଳନ୍ତି, ସେମାନେହିଁ ଆମ ସମାଜରେ'ତ୍ୟାଗୀ' ବୋଲି ସମ୍ମାନିତ ହେଉଥିଲେ ବା ହୋଇଥାନ୍ତି । ଗୀତା ହେଉଛନ୍ତି ଏକମାତ୍ର ଗ୍ରନ୍ଥ ଯେ କି ଏହାକୁ ଏକାବେଳକେ ଅସମ୍ଭବ ପ୍ରମାଣିତ କରି ବାରମ୍ବାର ଘୋଷଣା କରିଛନ୍ତି ଯେ, ଯିଏ କର୍ତ୍ତୃତ୍ୱାଭିମାନ ଓ ଫଳାକାଂକ୍ଷା ପରିତ୍ୟାଗ କରିପାରନ୍ତି, ବାହାରକୁ ନିବିଡ଼ ସଂସାରୀ ଓ କର୍ମାସକ୍ତ ଦେଖାଗଲେ ମଧ୍ୟ,ସେହି ହିଁ ପ୍ରକୃତ ତ୍ୟାଗୀ । ଆମ ପ୍ରତ୍ୟେକଙ୍କର ଜୀବ- ନରେ ପ୍ରବୃତ୍ତି ନିବୃତ୍ତିର ଦୈନନ୍ଦିନ ସଂଗ୍ରାମର କଥା ମଧ୍ୟ ଉପର କୁହାଯାଇଛି । ଅସୁଖକର, ଆପାତ-ଅସମ୍ମାନଜନକ ବା ଅସୁବିଧାଜନକ କର୍ତ୍ତବ୍ୟ କାମକୁ ଛାଡ଼ି ପଳେଇବା 'ତ୍ୟାଗ' ହୋଇ ନପାରେ । ବରଂ କର୍ତ୍ତବ୍ୟାନୁରୋଧରେ, ନିଜର

ସ୍ୱାଚ୍ଛନ୍ଦ୍ୟ, ଲୋକ ସମ୍ମାନ ବା ଅର୍ଥ-ଲାଭ ଇତ୍ୟାଦିର ତ୍ୟାଗ, ଅର୍ଥାତ୍ ପ୍ରବୃତ୍ତି-ତ୍ୟାଗ ହିଁ ପ୍ରକୃତ ତ୍ୟାଗ ।

ଆଧୁନିକ ଭାରତୀୟ ସଭ୍ୟତାରେ, ବାପୁଜୀ, ନୈଷ୍କର୍ମ୍ୟ ରୂପକ ମାରାତ୍ମକ ପ୍ରାଚୀନ ଭାରତୀୟ ଜୀବନାଦର୍ଶର, ବାକ୍ୟ ଓ କର୍ମରେ ଦୃଢ଼ ପ୍ରତିବାଦ ଜଣାଇ ଯାଇଛନ୍ତି । ବାପୁଜୀ ଯେ 'ତ୍ୟାଗୀ' ଏଥିରେ ଦ୍ୱିମତ ଥାଇ ନପାରେ । କିନ୍ତୁ ସେ କ'ଣ 'କର୍ମ' ତ୍ୟାଗ କରିଥିଲେ ? ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସେ ଯେ ଅହରହ କର୍ମବ୍ୟସ୍ତ ଥିଲେ, ଏହା କାହାକୁ ଅଜଣା ନାହିଁ । କିନ୍ତୁ ଦୈନନ୍ଦିନ ଜୀବନର ସହସ୍ର କର୍ମ ଭିତରେ କୌଣସିଟି କର୍ମ ପ୍ରତି ସେହି ମହାମାନବ ସ୍ୱାର୍ଥ ପ୍ରଣୋଦିତ କୌଣସି ଆକର୍ଷଣରେ ଟିକେ ମାତ୍ର ଆସକ୍ତ ନ ଥିଲେ, କି ତାଙ୍କ ସମ୍ପାଦିତ କୌଣସି କର୍ମରୁ ସେ ନିଜପାଇଁ ସାମାନ୍ୟତମ ଫଳାଶା ମଧ୍ୟ ରଖି ନଥିଲେ । ଅଥଚ ବୁଦ୍ଧ ଓ ଶ୍ରୀକୃଷ୍ଣଙ୍କ ନାନା ଧର ଆଗରୁ ଗୁଡାଏ ଠକ ତ୍ୟାଗୀ ତ ଏ ଦେଶରେ ଦେଖା ଦେଇଥିଲେ । ବରଂ, ଆମେ ଆମରି କାଳ ଭିତରେ ମଧ୍ୟ ଦେଖିଲେ ଯେ, ଗାନ୍ଧିଜୀଙ୍କ ପରି ବିରାଟ କର୍ମଯୋଗୀର ପଛେ ପଛେ, ଏ ଦେଶରେ ଗୁଡାଏ ଲୋକ 'ତ୍ୟାଗ'ର ଛାପା ମାରି, ସ୍ୱାଧୀନତା ପରେ ମାତ୍ର କୋଡ଼ିଏଟା ବର୍ଷରେ ଏ ଜାତି ଓ ଦେଶର ଆର୍ଥିକ, ନୈତିକ ଓ ବୌଦ୍ଧିକ ମେରୁଦଣ୍ଡକୁ କିପରି ଫୋପଡ଼ା କରିଦେଇ ଗଲେ ।

ଗୀତା, 'ତ୍ୟାଗ'କୁ ତେଣୁ ବାହାରର ବ୍ୟବହାରରୁ ନେଇଯାଇ, ରଖିଲେ ମନ ଭିତରେ, ଆମର ଦୃଷ୍ଟିକୋଣରେ, ଆମର ଜୀବନାଦର୍ଶରେ । ତାହାହିଁ ରହିବା ଉଚିତ ଆମର ଦୈନନ୍ଦିନ ଜୀବନର ଆଦର୍ଶ ।

( ୧୨ )

ଅନିଷ୍ଟମିଷ୍ଟଂ ମିଶ୍ରଂ ଚ ତ୍ରିବିଧଂ କର୍ମଣଃ ଫଳଂ
ଭବତ୍ୟ ତ୍ୟାଗିନାଂ ପ୍ରେତ୍ୟ ନ ତୁ ସନ୍ନ୍ୟାସୀନାଂ କ୍ୱଚିତ୍ । ୧୨ ।

ଅତ୍ୟାଗିନାଂ (ଯେଉଁମାନେ ଫଳାଶା ତ୍ୟାଗ କରି ନପାରି କାମ କରିଥାନ୍ତି) [ସେମାନଙ୍କର] ପ୍ରେତ୍ୟ (ପ୍ରେତ ଲୋକରେ, ମୃତ୍ୟୁପରେ ମଧ୍ୟ) ଅନିଷ୍ଟଂ, ଇଷ୍ଟଂ, ମିଶ୍ରଂ (ଅକଲ୍ୟାଣକର, କଲ୍ୟାଣକର ବା ଉଭୟର ମିଶାମିଶି) [ଏହିପରି] ତ୍ରିବିଧଂ କର୍ମଣଃ ଫଳଂ ଭବତି (ତିନି ପ୍ରକାର କର୍ମଫଳ ଘଟିଥାଏ) । ତୁ ସନ୍ନ୍ୟାସିନାଂ (କିନ୍ତୁ ପ୍ରକୃତ ତ୍ୟାଗୀମାନଙ୍କର) ନ କ୍ୱଚିତ (କେବେହେଁ ସେପରି ଘଟି ନଥାଏ ।

## ଅନୁବାଦ—

ହେ ଅର୍ଜ୍ଜୁନ, ଯାହା କହିଲି, ସେଇ ମାପକାଠିରେହିଁ ଏଂ ପ୍ରକୃତ ତ୍ୟାଗୀ ବା ଅତ୍ୟାଗୀ ବୋଲି ଜାଣିବ । ଫଳାସକ୍ତ ଅତ୍ୟାଗୀମାନେ ଇହଜନ୍ମ ଏବଂ ମୃତ୍ୟୁ ଆରପଟେ ମଧ୍ୟ ସେମାନଙ୍କର ବାସନାନୁଯାୟୀ ଇଷ୍ଟ, ଅନଷ୍ଟ ବା ଇଷ୍ଟାନିଷ୍ଟର ମିଶ୍ରଣ ଭୋଗ କରିଥାନ୍ତି । କିନ୍ତୁ ସର୍ବବିଧ କର୍ମ କରି ଚାଲଥିଲେ ମଧ୍ୟ ପ୍ରକୃତତ୍ୟାଗୀ ତାଙ୍କ-କୃତ କୌଣସି କର୍ମର ବନ୍ଧନ ବା ପ୍ରତିକ୍ରିୟା ଭୋଗ କରନ୍ତି ନାହିଁ ।

## ବିଶେଷ ଭାଷ୍ୟ—

ଭାରତୀୟ ଜୀବନ ଦର୍ଶନରେ ଖଣ୍ଡତା ନାହିଁ । ଏଠି 'ପୂର୍ଣ୍ଣ'କୁ ନ ଅନାଇ କେବଳ କୌଣସି 'ଅଂଶ' ଉପରେ ଆଖି ରଖାଯାଇନି ବା ତାକୁ ବଡ଼ କରି ଥୁଆ ଯାଇନି । ଭାରତୀୟ ଜୀବନାଦର୍ଶ ସର୍ବଦା ସୃଷ୍ଟିର ସମଗ୍ରତାକୁ ଅନାଇ ମନୁଷ୍ୟ ଜୀବନକୁ ସୁସମଂଜମ ଓ ସମନ୍ୱୟ ବିଶିଷ୍ଟ କରିବାକୁ ଚେଷ୍ଟା କରିଛି । ଗୀତା ସେହି ଆଦର୍ଶକୁହିଁ ବିଶେଷ ଭାବରେ ପରିପୁଷ୍ଟିତ କରି ଯାଇଛନ୍ତି । ଗୀତା ସମଗ୍ର ସୃଷ୍ଟିକୁ ଯଜ୍ଞଚକ୍ର ଉପରେ ପ୍ରତିଷ୍ଠିତ ଥିବାର ଯେପରି ଉପସ୍ଥାପିତ କରିଛନ୍ତି, ସମଗ୍ର ଭାରତୀୟ ସାହିତ୍ୟ ବା ବୋଧହୁଏ ସମଗ୍ର ବିଶ୍ୱ ସାହିତ୍ୟରେ ଆଧୁନିକ କାଳ ପର୍ଯ୍ୟନ୍ତ ସେପରି ଭାବ-କଳ୍ପ ଅନ୍ୟତ୍ର କାହିଁ ଦେଖା ନଥିଲା, ଯଦିଓ ତାହା ଆଜି ଆଧୁନିକ ବିଜ୍ଞାନ ଦ୍ୱାରା ମଧ୍ୟ ସୁପ୍ରମାଣିତ । (ତୃତୀୟ ଅଧ୍ୟାୟର ସଂପୃକ୍ତ ବିଶେଷ ଭାଷ୍ୟ ଦେଖନ୍ତୁ) । ସୃଷ୍ଟି ଯେପରି ଯଜ୍ଞଚକ୍ର ଉପରେ ପ୍ରବହମାନ, ମନୁଷ୍ୟ ଜୀବନ ସେହିପରି କର୍ମଚକ୍ର ଉପରେହିଁ ଗତଶୀଳ । ଗୀତା ଓ ଭାରତୀୟ ଜୀବନଦର୍ଶନ, ଆମେ ଏହି ଯେ ଜୀବନଟା ଏଠି କଟାଉ, ତାକୁହିଁ ଆଦ୍ୟ ଶେଷ ବୋଲି ଧରନ୍ତି ନାହିଁ । ଅନ୍ୟ ଧର୍ମସବୁ ସେପରି ବିଶ୍ୱାସ କରନ୍ତି ଯଦିଓ ତାହା ପ୍ରାକୃତିକ ନୟମ-ବିରୁଦ୍ଧ । ପ୍ରକୃତର ଅନ୍ତର୍ନିହିତ ପ୍ରଚେଷ୍ଟା ହେଲା; ବିବର୍ତ୍ତନ ବା 'ଇଭୋଲିଉସନ' ଯାହା ଫଳରେହିଁ ଏକକୋଷୀ ଆମିବା ପରିଣତ ହୋଇଛି ଏକ ପକ୍ଷରେ ଅଗଣକୋଷୀ ତିମିରେ ଏବଂ ଅନ୍ୟ ପକ୍ଷରେ ଋଷି, କବି ଓ ବୈଜ୍ଞାନିକରେ । କିନ୍ତୁ ଯାହା ପ୍ରକୃତିରେ ଅର୍ଥାତ୍ ଜଡ଼ ଓ ଜୀବରେ ମଧ୍ୟ ଅସଂଜ୍ଞ ଭାବରେ କାମ କରିଥାଏ, ମନୁଷ୍ୟଠି ତାହା ସଂଜ୍ଞ ଭାବରେ କାମ କରେ । ମନୁଷ୍ୟ ଏକମାତ୍ର ଜୀବ ଯେ କି ତାର ଇଭୋଲିଉସନ ବା ବିବର୍ତ୍ତନକୁ ନିଜେ, ଜାଣି ଜାଣି ପରିଚାଳିତ ଓ ଅଗ୍ରଗାମୀ କରେଇପାରେ । କେବଳ ସେହି ସୁବିଧାଟିକୁ କାର୍ଯ୍ୟରେ ଲଗେଇବା ଦ୍ୱାରହିଁ ଆମେ ଜଣେ ଜଣେ ବୁଦ୍ଧ, ଖ୍ରୀଷ୍ଟ, ରାମକୃଷ୍ଣ ବା ଗାନ୍ଧୀଙ୍କୁ ପାଉଛୁ ।

ଇଭୋଲ୍ୟୁସନ ବା ବିବର୍ତ୍ତନ-ବାଦକୁ ପ୍ରକୃତିର ଅନ୍ତର୍ନିହିତ ଯୋଜନା ବୋଲି ମାନିନେଲେ, ଆମକୁ କର୍ମଫଳ ଓ ଜନ୍ମାନ୍ତର-ବାଦ ସ୍ୱୀକାର କରିବାକୁ ହେବ । ଅର୍ଥାତ ଜଣେ ବୁଦ୍ଧ ବା ଗାନ୍ଧି ବା ସେକ୍‌ସପିୟାର ପୃଥିବୀରେ ଆକସ୍ମିକ ଘଟଣା ହୋଇ ନ ପାରନ୍ତି । ଆମକୁ ଧରିନେବାକୁ ହେବ ଯେ, ସେମାନେ ବହୁ ଜୀବନର ପ୍ରଗାଢ଼ ସାଧନାର ଶେଷ ପରିଣତି ମାତ୍ର ।

ଏବଂ ମନେ ରଖିବାକୁ ହେବ ଯେ, ପୂରାପୂରି ଏହି କାରଣରୁହିଁ, ଗୀତା ମୂଳରୁ ଶେଷଯାଏ ଆମର ଦୈନନ୍ଦନ କର୍ମ ଉପରେ କେବଳ ନୁହେଁ, କର୍ମର ପଛରେ ଥିବା ଭାବ-କଳ୍ପ ଉପରେ ଏତେ ଜୋର ଦେଇ ଆସୁଛନ୍ତି । ଆଧୁନିକ ବିଜ୍ଞାନର ଆବିଷ୍କାର ଏହି ଯେ ସୃଷ୍ଟିରେ ପ୍ରତଟି କ୍ରିୟାର ପ୍ରତିକ୍ରିୟା ଅଛି । ତେବେ ଆମେ ଦିନ ଦିନ ଧରି ଯେଉଁସବୁ ଭଲମନ୍ଦ କର୍ମ କରି ଚାଲିଛୁ ସେ ସବୁର ପ୍ରତିକ୍ରିୟା ସବୁକୁ ଆମେ ନ ଭୋଗିବା କିପରି ? ଭଲ କାମର ଭଲ ଓ ମନ୍ଦକାମର ମନ୍ଦ ପ୍ରତିକ୍ରିୟା ଆମକୁ ଭୋଗିବାକୁଇ ହେବ—ଏ ଜୀବନରେ ଓ ଏ ଜୀବନର ଆରପଟେ ମଧ୍ୟ । ଏହିସବୁ ପ୍ରତିକ୍ରିୟା ଗୁଡ଼କହିଁ ଜୀବନର ଜଞ୍ଜାଳ ଏବଂ ତାହା ଜାଣି, ଯେ ସବୁରୁ ମୁକ୍ତି ପାଇବାର ଏକମାତ୍ର ଉପାୟ ହେଉଛି—ଆମେ କରୁଥିବା କର୍ମମାନଙ୍କରୁ ଫଳାଶା ଓ କର୍ତ୍ତୃତ୍ୱାଭିମାନ ପରିତ୍ୟାଗ । ଯେଉଁମାନେ ଏପରି ଆଧ୍ୟାତ୍ମିକ ଭାବରେ ଜୀବନର ସବୁ କାମକରି ଚାଲିଥାନ୍ତି, ସେମାନଙ୍କୁ କୌଣସି ପ୍ରତିକ୍ରିୟା ସ୍ପର୍ଶ କରେ ନାହିଁ । ସେମାନେ ଜୀବନ୍ମୁକ୍ତ ।

କିନ୍ତୁ ଆମେ ସାଧାରଣ ନର-ନାରୀ ବିନା ବିଚାର ଦ୍ୱାରା ପ୍ରଭାବିତ ହୋଇହିଁ କର୍ମକରି ଚାଲିଥାଉ । ଆମର ଛୋଟ-ବଡ ସକଳ ଦୈନନ୍ଦନ କର୍ମର ଯେ କ ପ୍ରତକ୍ରିୟା ସବୁ ଆମକୁ ଦିନେ ଭୋଗିବାକୁ ହେବ, ତାହା ଆମେ ଚିନ୍ତା କରୁନା । ଗୀତା ଆମର ଏହି ଚିନ୍ତାହୀନତା ବା ଅବିମୃଷ୍ୟକାରିତା ଉପରେ ପ୍ରଚଣ୍ଡ ଧାରାବାହିକ ଆଘାତ ଦେଇ ଦେଇ, ଆମକୁ ବରାବର କର୍ମ-ସଚେତନ କରିବାକୁ ଚେଷ୍ଟାକରି ଆସିଛନ୍ତି ଏବଂ ବାରମ୍ବାର ବ୍ୟାଖ୍ୟାକରି ବସିଛନ୍ତି, କି ଭାବରେ କେଉଁ କେଉଁ କର୍ମ କରିବାକୁ ହେବ ଏବଂ କେଉଁ କେଉଁ କର୍ମ ନ କରିବା କଥା । ବସ୍ତୁତଃ, ସମଗ୍ର ଗୀତାହିଁ ହେଲା କର୍ମ-ଦର୍ଶନ । ଗୀତା ଏହି ଶେଷ ଅଧ୍ୟାୟରେ; ପରବର୍ତ୍ତୀ ପାଞ୍ଚ-ଛଟି ଶ୍ଲୋକରେ ମଧ୍ୟ ଏ ସମ୍ପର୍କରେ ଶେଷ ଉପଦେଶ ଦେଇ ଯାଉଛନ୍ତି ।

( ୧୩ )

ପଂଚୈତାନି ମହାବାହୋ କାରଣାନି ନିବୋଧ ମେ
ସାଂଖ୍ୟେ କୃତାନ୍ତେ ପ୍ରୋକ୍ତାନି ସିଦ୍ଧୟେ ସର୍ବକର୍ମଣାଂ । ୧୩ ।

[ହେ] ମହାବାହୋ ଅର୍ଜୁନ) କୃତାନ୍ତେ ସାଂଖ୍ୟେ (କୃତ ବା କର୍ମର ଅନ୍ତ ବା ଶେଷ କରିବାପାଇଁ ଯେଉଁ ସାଂଖ୍ୟ-ଦର୍ଶନ କହିଥାଏ ସେଥିରେ) ସର୍ବକର୍ମଣାଂ ସିଦ୍ଧୟେ (ସକଳ କର୍ମର ସୁସମ୍ପାଦନ ଦିଗରେ) ଏତାନି ପଞ୍ଚ କାରଣାନି ପ୍ରୋକ୍ତାନି (ଏହି ପାଞ୍ଚଟି କାରଣ ନିର୍ଦ୍ଦେଶିତ ହୋଇଛି) । [ତାହା] ମେ ନିବୋଧ (ମୋଠାରୁ ଜାଣିରଖ) ।

## ଅନୁବାଦ—

ହେ ଅର୍ଜୁନ, କର୍ମର ଫଳାଶା ବିଷୟ ବେଳେ ପ୍ରକୃତରେ କିଏ କର୍ମ କରେ, ତାହା ଉତ୍ତମ ରୂପେ ଜାଣି ରଖିଥିଲେ ଆମର ବିଷୟ ପ୍ରମାଦଶୂନ୍ୟ ହେବ, କର୍ମ-ବନ୍ଧନର ଶେଷପାଇଁ ଯେଉଁ ସାଂଖ୍ୟ-ଦର୍ଶନ ବିଶେଷ ଭାବରେ ପ୍ରସିଦ୍ଧ । ସେହି ଦର୍ଶନ ଅନୁଯାୟୀ ଏ ଜଗତରେ ସାଂସାରିକ ବା ଆଧ୍ୟାତ୍ମିକ, ସର୍ବବିଧ କର୍ମରୁ ପ୍ରକୃଷ୍ଟ ସିଦ୍ଧି ଲାଭ ପାଇଁ ପାଞ୍ଚଟି ଉପାଦାନ ଏକାନ୍ତ ଆବଶ୍ୟକ ବୋଲି କୁହାଯାଇଛି ।

( ୧୪ )

ଅଧିଷ୍ଠାନଂ ତଥାକର୍ତ୍ତା କରଣଂ ଚ ପୃଥଗ୍‌ବିଧଂ
ବିବିଧାଶ୍ଚ ପୃଥକ୍ ଚେଷ୍ଟା ଦୈବଂ ଚୈବାତ୍ର ପଞ୍ଚମଂ । ୧୪ ।

[ଏହି କାରଣ ଗୁଡିକ ହେଲେ] ଅଧିଷ୍ଠାନଂ (ଦେହ) ତଥା କର୍ତ୍ତା (ସେହିପରି ଦେହଧାରୀ କର୍ତ୍ତା ବା କର୍ମ କରୁଥିବା ଲୋକ) ପୃଥଗ୍ ବିଧଂ କରଣଂ (ଭିନ୍ନ ଭିନ୍ନ ଜ୍ଞାନ ଓ କର୍ମେନ୍ଦ୍ରିୟ ସବୁ) ପୃଥକ୍ ଚେଷ୍ଟା ( ସେମାନଙ୍କର ଶ୍ରମ ଓ ଯତ୍ନ) । [ଏବଂ] ଅତ୍ର (ଏହି କାରଣମାନଙ୍କ ଭିତରେ) ପଞ୍ଚମଂ ଚ ଦୈବଂ (ପଞ୍ଚମ କାରଣ ହେଲା ଦୈବ) ।

## ଅନୁବାଦ—

ହେ ଅର୍ଜୁନ, ସେ ପାଞ୍ଚଟି ହେଲେ—ଦେହ, ଦେହଧାରୀ କର୍ତ୍ତା, ମନୁଷ୍ୟର ଭିନ୍ନ ଭିନ୍ନ ଜ୍ଞାନ-ଓ-କର୍ମେନ୍ଦ୍ରିୟ ସମୂହ, ସେମାନଙ୍କର ସମ୍ମିଳିତ ବିବିଧ ଚେଷ୍ଟା, ଏହିପରି ଗତି ଏବଂ ପଞ୍ଚମ ହେଲା ଦୈବ ।

## ବିଶେଷ ଭାଷ୍ୟ —

ପୃଥିବୀର ସର୍ବତ୍ର, ସବୁକାଳେ, ସବୁ ସମାଜ ଓ ସଭ୍ୟତାରେ,ଅଳ୍ପ-ବହୁତେ

ଏକ 'ଅଦୃଷ୍ଟ'—(ଦେଖା ପଡୁ ନ ଥିବା)-ଶକ୍ତି ସ୍ୱୀକୃତ । ଯାକୁ ଭଗ୍ୟ, ଫେଟ୍, ଲକ୍, ଲକ୍, ଡେଷ୍ଟିନ ଇତ୍ୟାଦି ନାନା ନାମ ଦିଆଯାଇଛି । ବ୍ୟକ୍ତିଗତ ଓ ଜାତୀୟ ଜୀବନରେ ଏହିପରି ଏକ ଅଦୃଶ୍ୟ ଶକ୍ତି ଯେ ବରାବର କାମ କରିଥାଏ ଏଥିରେ ସନ୍ଦେହ ନାହିଁ । ସ୍ପେନ୍‌ର ରଜା, ଏଲିଜାବେଥ (ପ୍ରଥମ)ଙ୍କ ଇଂଲଣ୍ଡକୁ ଅଧିକାର କରିବ ବୋଲି ବିରାଟ ସ୍ପେନିଶ୍ ଆର୍ମଡା । ପଠାଇଲେ । ଯୁଦ୍ଧତ ଯାହା ହେଲା ହେଲା । କିନ୍ତୁ ବିରାଟ ସ୍ପେନିଶ୍ ଆର୍ମାଡା ଏକାରତିକେ ଧ୍ୱସ୍ତବିଧ୍ୱସ୍ତ ହେବାର ଏକ କାରଣ ହେଲା ହଠାତ ଦେଖା ଦେଇଥିବା ଏକ ପ୍ରବଳ ବାତ୍ୟା । ସେହିପରି ମଧ୍ୟ କୁହାଯାଏ ଯେ, ଓ୍ୱାଟ୍‌ରଲୁଠାରେ ନେପୋଲିଆନଙ୍କ ଶେଷ ପରାଜୟର କାରଣ ହେଲା, ତା ପୂର୍ବରାତ୍ରର ବର୍ଷା, ଯାହା ଓ୍ୱାଟରଲୁ ରଣକ୍ଷେତ୍ରକୁ ଏପରି କର୍ଦ୍ଦମାକ୍ତ କରିଦେଲା ଯେ, ନେପୋଲିଅନଙ୍କ ତୋପସବୁ ସହଜରେ ନିଆ ଅଣା କରଯାଇ ପାରିଲା ନାହିଁ ।

ଆମେ ଏହିପରି ପ୍ରତ୍ୟେକ ଜଣାଶୁଣା ଲୋକର ଜୀବନୀ ଆଲୋଚନା କଲେ ଦେଖିପାରିବା ଯେଉଁଠି ନାନା ସ୍ଥାନରେ ଏକ ଅଦୃଷ୍ଟ ( ଦୈବ ) ଶକ୍ତିର କ୍ରିୟାଶୀଳତା ।

କିନ୍ତୁ ଏପରି କହି ଗୀତା ଆମକୁ ଭଗ୍ୟବାଦୀ ବା ଅଦୃଷ୍ଟବାଦୀ କରଉ ନାହାନ୍ତି' ଏହା କହିବାଦ୍ୱାର ଗୀତା କେବଳ ଆମକୁ କର୍ତ୍ତୃତ୍ୱାଭିମାନ-ତ୍ୟାଗର ଉପଦେଶ ଦେଉଛନ୍ତି—ଯେଉଁ ଉପଦେଶ କି ଗୀତା ବରାବର ଦେଇ ଆସିଛନ୍ତି । ଅର୍ଥାତ୍ ଆମ ଜୀବନରେ ଯାହା ଯାହା ଘଟିଥାଏ,ସେ ସବୁକୁ କ'ଣ ଆମେ ଆମରି ଦ୍ୱାରହିଁ ପୂରାପୂରି ଘଟିଛିବୋଲି କହିପାରିବା ? କୌଣସି ଏକ ଅଦୃଷ୍ଟ ହାତର କାମ ଆମେ ଅନେକ ସ୍ଥାନରେ ଦେଖି ପାରିବାନି କି ? ତେବେ ଅହମିକା କାହିଁକି ?

ଏ ଜଗତରେ ଫଳାଫଳର ଦାତା ଓ ନିୟାମକ ସତ୍ୟରେ ସେହି ଏକ ଅଦୃଷ୍ଟ ଶକ୍ତି । ଆମେ ବୀଜ ବପନ କରୁ, କିନ୍ତୁ ଫସଲ ତାହାର କର୍ତ୍ତୃତ୍ୱରେ । ଦ୍ୱିତୀୟ କଥା, ଆମର ଏହି ଜନ୍ମ ପୂର୍ବ ଜନ୍ମମାନଙ୍କର କର୍ମ-କଳାପର ପ୍ରତିକ୍ରିୟା ସବୁର ସମାହାର ମାତ୍ର ।ଏହି ଦୁଇ ଶକ୍ତିର ମିଶ୍ରଣ ହିଁ ତଥାକଥିତ 'ଦୈବ'। ଏହାହିଁ ଅଦୃଷ୍ଟ, ଏହାହିଁ ସୌଭଗ୍ୟ ଓ ଏହାହିଁ ଦୁର୍ବିପାକ, ତେଣୁ ହିତୋପଦେଶର ବାକ୍ୟ "ପୂର୍ବଜନ୍ମ କୃତଂ କର୍ମ ତଦ୍ ଦୈବଂ ଇତି କଥ୍ୟତେ" —ସର୍ବଥା ସ୍ମରଣୀୟ ।

ଆମ ଜୀବନରେ ଦୈବ ବା ଏକ ଅଦୃଷ୍ଟହସ୍ତର ଏ ପ୍ରକାର ପ୍ରଭବମୟ ପରିସ୍ଥିତି ସ୍ମରଣ କରି, ତେଣୁ, ସଂପୂର୍ଣ୍ଣ ଭବରେ କର୍ତ୍ତୃତ୍ୱାଭିମାନ ତ୍ୟାଗ କରି

ଆମକୁ କାମକରି ଚାଲିବାକୁ ହେବ । ଅହଂକାରକୁ ଆମେ ଚିତ୍ତରେ ଆଦୌ ସ୍ଥାନ ଦେବା ନାହିଁ । ସର୍ବଦା ଦୈବ ଶକ୍ତି ପ୍ରତି ସଚେତନଥିବା । ଫଳାଶା ରଖିବା ନାହିଁ ।

ଗୀତା ଉପରେ ୧୧ଶ ଶ୍ଳୋକରେ କହିଛନ୍ତି 'ସିଦ୍ଧୟେ ସର୍ବ କର୍ମଣାଂ' ( ସବୁ ପ୍ରକାର କାମର ସିଦ୍ଧି ପାଇଁ ) ଏହି ମନୋଭାବ, ଏହି ଦୃଷ୍ଟିକୋଣ ଓ ଏହି କର୍ମାଦର୍ଶହିଁ ସର୍ବଥା ଯଥାର୍ଥ । ଏ ପ୍ରକାର ଦୃଷ୍ଟିକୋଣରେ କର୍ମରେ ସିଦ୍ଧି ଅଛି, ଅଥଚ ବ୍ୟର୍ଥତା ନାହିଁ । ଗାନ୍ଧିଜୀହିଁ ଏହାର ଜ୍ୱଳନ୍ତ ଉଦାହରଣ । ବହୁ ବ୍ୟର୍ଥତା ଭିତରେ ଦଣ୍ଡାୟମାନ ଥାଇ ମଧ୍ୟ ସେ ମହାତ୍ମା, ମହାମାନବ ଓ ଲୋକୋତ୍ତର, କାରଣ ସେ ସର୍ବୋତ୍ତମ କର୍ମଯୋଗୀ । ପୁଣି ଆମକୁ ଅନ୍ତରରେ ସର୍ବଦା ଉତ୍ତମ ଭାବ ବା ସାଧୁତାକୁହିଁ ବଞ୍ଚେଇ ରଖିବାକୁ ହେବ । ଦୈବ ( Divine ) ଶକ୍ତିରେ ବିଶ୍ୱାସ, ଅହଂକାରକୁ ନାଶ କରିବା ସାଥେ ସାଥେ ସେହି ଉତ୍ତମ ଭାବକୁ ତାହା ଜାଗ୍ରତ କରାଇରଖେ ।

( ୧୫ )

ଶରୀର ବାଙ୍ମନୋଭିର୍ଯତ୍ କର୍ମପ୍ରାରଭତେ ନରଃ
ନ୍ୟାଯ୍ୟଂ ବା ବିପରୀତଂ ବା ପଂଚୈତେ ତସ୍ୟ ହେତବଃ । ୧୫ ।

ନରଃ ( ମନୁଷ୍ୟ ) ଶରୀର ବାଙ୍ମନୋଭିଃ (ଶରୀର, ବାକ୍ୟ ଓ ମନ ଦେଇ) ଯତ୍ ନ୍ୟାଯ୍ୟଂ (ଯାହା ନ୍ୟାୟାନୁମୋଦିତ) ବିପରୀତଂ ବା କର୍ମ ପ୍ରାରଭତେ (ବା ତାର ବିପରୀତ କର୍ମ କରିବସେ ) ଏତେ ପଞ୍ଚ ତସ୍ୟ ହେତବଃ (ଏହି ପାଞ୍ଚଟି ସେ ସମସ୍ତର କାରଣ )

ଅନୁବାଦ—

ହେ ଅର୍ଜୁନ, ଯେକୌଣସି ମନୁଷ୍ୟ ତାର ଦେହ, ମନ ଓ ବାକ୍ୟ ସାହାଯ୍ୟରେ ଯାହା ଯାହା ନ୍ୟାୟ ବା ଅନ୍ୟାୟ କର୍ମ କରଥାଏ, ସେ ସବୁରହିଁ ପଛରେ ଥାଏ, ଏଇ ପାଞ୍ଚଟି କାରଣ ।

ବିଶେଷ ଭାଷ୍ୟ—

ଆମେ ହାତ ଗୋଡ ଇତ୍ୟାଦି ଦ୍ୱାରା ଯେଉଁ ଶାରୀରିକ କର୍ମ କରୁ, ସାଧାରଣତଃ ଆମେ ତାକୁହିଁ 'କର୍ମ' କହିଥାଉଁ । କିନ୍ତୁ ଗୀତା ବାକ୍ୟ ଓ ଚିନ୍ତାକୁ ମଧ୍ୟ 'କର୍ମ' ଭାବରେ, କେବଳ ଏଠି ନୁହେଁ, ସର୍ବତ୍ର ଗଣନା କରି ଆସିଛନ୍ତି ଏବଂ ତାହାହିଁ ଯଥାର୍ଥ ।

ବସ୍ତୁତଃ ଚିନ୍ତା ହିଁ (ମନ) ସକଳ କର୍ମର ଜନନୀ । ଯାହା ଚିନ୍ତା କରଯାଏ ତାହାହିଁ ବାକ୍ୟରେ ଓ ପରେ କର୍ମରେ ପ୍ରକାଶ ପାଏ ମାତ୍ର । ଆମର ଘୃଣା, ଦ୍ୱେଷ, ଆସକ୍ତି ପ୍ରଭୃତି ଏହିପରି ଭବରେ ପରେ ପରେ ଚିନ୍ତା, ବାକ୍ୟ ଓ କର୍ମ ହୋଇ ସୂକ୍ଷ୍ମସ୍ତରରୁ ସ୍ଥୂଳ ସ୍ତରରେ ପ୍ରକାଶ ଲାଭ କରିଥାନ୍ତି । ଏବଂ ସବୁ ସ୍ତରହିଁ 'କର୍ମ'। ଅର୍ଥାତ୍ ପ୍ରତ୍ୟେକଟି ସ୍ତରର କର୍ମର ପ୍ରତିକ୍ରିୟା ଆମକୁ ଭୋଗ୍ କରିବାକୁ ହେବ ।

ବାଇବଲ୍‌ରେ ଯୀଶୁଖ୍ରୀଷ୍ଟ ଏହିପ୍ରକାର ମାନସିକ ଶୌଚ ସଂପର୍କରେ ଯଥାର୍ଥରେ କହିଯାଇଛନ୍ତି — "ପ୍ରାଚୀନ ଶାସ୍ତ୍ରମାନଙ୍କରେ କୁହାଯାଇଥିଲା— ପରଦାର କରିବ ନାହିଁ । କିନ୍ତୁ ମୁଁ କହୁଛି ଯେ କୌଣସି ସ୍ତ୍ରୀ ଲୋକକୁ ତୁମେ କାମାଭିଳାଷ ସହିତ ଦୃଷ୍ଟିପାତ କଲେ ମଧ୍ୟ, ତୁମେ ତୁମ ଅନ୍ତରରେ ପରଦାର ରୂପକ ପାପ କରିପକାଇଲ ବୋଲି କହିବାକୁ ହେବ ।"

ଗୀତା ତୃତୀୟ ଅଧ୍ୟାୟର ଷଷ୍ଠ ଶ୍ଳୋକରେ ଏହାକୁହିଁ 'ମିଥ୍ୟାଚର' କହି ଏହାର ତୀବ୍ର ନିନ୍ଦା କରିଛନ୍ତି ।

( ୧୬ )

ତତ୍ରୈବଂ ସତି କର୍ତ୍ତାରମାତ୍ମାନଂ କେବଳଂ ତୁ ଯଃ
ପଶ୍ୟତ୍ୟ କୃତବୁଦ୍ଧିତ୍ୱାନ୍ ନ ସ ପଶ୍ୟତି ଦୁର୍ମତିଃ । ୧୬ ।

ତତ୍ର ଏବଂ ସତ (ଜୀବନର ସକଳ କର୍ମର ସମ୍ପାଦନରେ ଏ ପ୍ରକାର ବିଧି ନିର୍ଦ୍ଦିଷ୍ଟ ଯୋଜନା ଥିଲା ବେଳେ) ଯଃ ତୁ (ଯେଉଁ ଲୋକ) କେବଳଂ ଆତ୍ମାନଂ କର୍ତ୍ତାରଂ ପଶ୍ୟତି କେବଳ ନିଜେହିଁ ସବୁ କରୁଛି ବୋଲି ବିଶ୍ୱାସ କରେ) ଅକୃତ ବୁଦ୍ଧି— ତ୍ୱାତ୍ (ବୁଦ୍ଧିର ଅପରିପକ୍ୱତା ବା ଶିକ୍ଷା ନ ପାଇ-ଥିବା ହେତୁ) ସଃ ଦୁର୍ମତିଃ (ସେହି ମନ୍ଦ-ବୁଦ୍ଧି ଲୋକ) ନ ପଶ୍ୟତି [ଜୀବନର ପ୍ରକୃତ ତତ୍ତ୍ୱ] (ଦେଖିପାରେ ନାହିଁ ) ।

ଅନୁବାଦ—

ଯେକୌଣସି କର୍ମ ସଂପାଦନ ପାଇଁ ପ୍ରକୃତିରେ ଏ ପ୍ରକାର ଶାଶ୍ୱତ ଯୋଜନା ରହିଥିଲା ବେଳେ, ଯେଉଁ ଲୋକ ନିଜର ଜ୍ଞାନର ଅଳ୍ପତା ବା ଅପରି-ପକ୍ୱତା ହେତୁ କେବଳ ନିଜକୁହିଁ କର୍ତ୍ତାବୋଲି ମନେ କରିଥାଏ, ସେ ସେହିପ୍ରକାର ଏକ ଅନ୍ଧ, ଯାର ଚିନ୍ତା ଠିକ୍ ବାଟରେ ଯାଉନାହିଁ ବୋଲି ଜାଣିବ ।

( ୧୭ )

ଯସ୍ୟ ନାହଂକୃତୋ ଭାବୋ ବୁଦ୍ଧିର୍ଯସ୍ୟ ନ ଲିପ୍ୟତେ
ହତ୍ୱାପି ସ ଇମାଁଲ୍ଲୋକାନ୍ ନ ହନ୍ତି ନ ନିବଧ୍ୟତେ । ୧୭ ।

[ଅଥଚ] ଯସ୍ୟ (ଯେଉଁ ଲୋକର) ଅହଂକୃତଃ ଭାବଃ ନ (ମୁଁ କରୁଛି, ଏହି ଭାବ ନାହିଁ) ସଃ (ସେ) ଇମାନ୍ ଲୋକାନ୍ ହତ୍ୱା ଅପି (ଏହି ବିଭିନ୍ନ ଗ୍ରହ-ନକ୍ଷତ୍ର— ସମନ୍ୱିତ ଓ ଜୀବପୂର୍ଣ୍ଣ ସଂସାରମାନଙ୍କୁ ଧ୍ୱଂସ କରି ପକାଇଲେ ମଧ୍ୟ) ନ ହନ୍ତି (ହତ୍ୟାକାରୀ ବିବେଚିତ ହେବେ ନାହିଁ) [କି] ନ ନିବଧ୍ୟତେ [ସେ କର୍ମପାଇଁ କୌଣସି ପ୍ରକାର] ବନ୍ଧନ ପ୍ରାପ୍ତ ହେବ ନାହିଁ) ।

## ଅନୁବାଦ—

ହେ ଅର୍ଜୁନ, ସେ ପ୍ରକାର ଅନ୍ଧ ଓ ଅଜ୍ଞ ଲୋକଙ୍କ ବିପରୀତରେ ତୁମେ ଏପରି ଏକ ଲୋକର କଳ୍ପନା କର, ଯାହାର ଚେତନାରେ ସାମାନ୍ୟତମ ମୁଁ-ଭାବ ବା ମୁଁ-କରୁଛି-ଭାବ ମଧ୍ୟ ନାହିଁ । ମନେ ରଖିବ ଯେ, ସେ ଲୋକ ଏହି ଜୀବପୂର୍ଣ୍ଣ ସମଗ୍ର ପୃଥିବୀଟାକୁ ଧ୍ୱଂସ କରିଦେଲେ ମଧ୍ୟ ତାର ପ୍ରତିକ୍ରିୟା । ବା ବନ୍ଧନ ତାକୁ ଆଦୌ ସ୍ପର୍ଶ କରିବ ନାହିଁ ।

## ବିଶେଷ ଭାଷ୍ୟ—

ପାଠକେ ଜାଣିରଖିବେ ଯେ, ଏ ସଂସାରରେ ଅଶାନ୍ତିର ମୁଖ୍ୟତମ କାରଣ ହେଲା ଆମ ପ୍ରତ୍ୟେକର ଅହଂକାର ବା ମୁଁ-ଭାବ । ପାଠକେ ତାଙ୍କର ନିଜ ନିଜର ଛୋଟ ଛୋଟ ପରିବାରର ବ୍ୟାପାର ଆଲୋଚନା କରି ଦେଖିଲେହିଁ ଜାଣିପାରିବେ ଯେ, ସେଠି ଅଶାନ୍ତିର ମୂଳ କାରଣ ହେଲା, ପରିବାର ଭିତରେ କାହାର ନା କାହାରି ତୀବ୍ର ମୁଁ-ମୋର-ଭାବ । ନିରହଙ୍କାର ଲୋକହିଁ ନିଖିଳ ଶ୍ରଦ୍ଧାଭାଜନ ହୋଇଥାନ୍ତି । ବାପୁଜୀ ତାର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ସେଇଥିପାଇଁ ଗୀତା ମୂଳରୁ ଶେଷ ଯାଏ ଆମ ଭିତରେ ଥିବା ଏହି ଅହଂଜ୍ଞାନର ବିନାଶ ପାଇଁ ବା ଭକ୍ତିଯୋଗ ଦେଇ ତାର ରୂପାନ୍ତରୀକରଣ ପାଇଁ ବରାବର ଉପଦେଶ ଦେଇ ଆସିଛନ୍ତି । ପାଠକେ ଦେଖିବେ ଯେ, ଗୀତାର ଏହି ଶେଷ ଅଧ୍ୟାୟର ଶେଷତମ ଶ୍ଳୋକର ଉପଦେଶ ମଧ୍ୟ ସେୟା । ଯାହାର ଅହଂକାର ବା କର୍ତ୍ତୃତ୍ୱାଭିମାନ ନାହିଁ, ସେ "କର୍ତ୍ତବ୍ୟ ଜ୍ଞାନରେ" କୋଟି କୋଟି ଲୋକଙ୍କୁ ମାରିଦେଲେ ମଧ୍ୟ ସେଥିପାଇଁ ସେ କୌଣସି ପ୍ରତିକ୍ରିୟା ତ ଭୋଗିବେ ନାହିଁ, ଅଧିକନ୍ତୁ, ଶ୍ରଦ୍ଧାଭାଜନ ଓ ସୁଖଶାନ୍ତି ମୟ ଜୀବନ ଯାପନ କରିବେ ।

କର୍ମର ଜନନୀ ଓ ନିୟାମକ ହେଲା ଚିନ୍ତା ବା ଜ୍ଞାନ । ପରବର୍ତ୍ତୀ ଶ୍ଳୋକରେ ସେଥିପାଇଁ ଜ୍ଞାନ ଓ ଜ୍ଞେୟ ସଂପର୍କରେ ଗୀତା କହି ବସିଛନ୍ତି ।

( ୧୮ )

ଜ୍ଞାନଂ ଜ୍ଞେୟଂ ପରିଜ୍ଞାତା ତ୍ରିବିଧା କର୍ମଚୋଦନା
କରଣଂ କର୍ମ କର୍ତ୍ତେତି ତ୍ରିବିଧଃ କର୍ମସଂଗ୍ରହଃ ।୧୮।

ଜ୍ଞାନଂ, ଜ୍ଞେୟଂ, ପରିଜ୍ଞାତା ତ୍ରିବିଧା କର୍ମ-ଚୋଦନା (ଆମେ ଯେତେ ସବୁ କର୍ମ କରି ଚାଲୁ ସେସବୁ ତିନୋଟି ପ୍ରେରଣାରୁହିଁ ଆସିଥାନ୍ତି । ସେଗୁଡକ ହେଲେ ଜ୍ଞାନ, ଜ୍ଞେୟ ଓ ପରିଜ୍ଞାତା); କରଣଂ କର୍ମ, କର୍ତ୍ତା ଇତି ତ୍ରିବିଧଃ କର୍ମ ସଂଗ୍ରହଃ (କର୍ତ୍ତା, କରଣ ଓ କର୍ମ ଏ ତନୋଟି ସେହି ଜ୍ଞାନ—ଜ୍ଞେୟ—ଜ୍ଞାତା-ଭିତ୍ତିକ ପ୍ରେରଣାରୁ ଉଦ୍ଭୂତ କର୍ମମାନଙ୍କର ଆଶ୍ରୟ ମାତ୍ର) ।

### ଅନୁବାଦ—

ହେ ଅର୍ଜୁନ, ଆମେ ଯେତେ ଯେତେ କର୍ମ କରି ଚାଲିଥାଉ; ସେ ସମସ୍ତ ପଛରେ ବରାବର ତିନୋଟି ପ୍ରେରଣା ଥିବାର ମଧ୍ୟ ଲକ୍ଷ୍ୟ କରିବ । ସେ ତନୋଟି ହେଲେ ଜ୍ଞାନ, ଜ୍ଞେୟ ଓ ପରିଜ୍ଞାତା । କର୍ତ୍ତା କହ, କରଣ କହ ବା କର୍ମ କହ, ସେ ସବୁ ଏମାନଙ୍କର ଆଶ୍ରୟ ମାତ୍ର । ସେ ସମସ୍ତେ ଜ୍ଞାନ-ଜ୍ଞେୟ-ପରିଜ୍ଞାତା ରୂପକ ସାମଗ୍ରିକ ପ୍ରେରଣାର ହିଁ ପରିଣତି ବୋଲି ଜାଣିବ ।

### ବିଶେଷ ଭାଷ୍ୟ—

ଗୀତା ବରାବର କର୍ମ ଉପରେ ଏତେ ବକ୍ତୃତା ଦେଇ ଆସିଥିଲେ ମଧ୍ୟ ବୁଝିବାକୁ ହେବ ଯେ କୌଣସି ହେଲେ 'କର୍ମ'ର ନିଜର ସ୍ୱତନ୍ତ୍ର ସତ୍ତା ନାହିଁ । ତାହା ଇନ୍ଦ୍ରିୟାଦି 'କରଣ' ଦ୍ୱାରା ସଂପାଦିତ ଏବଂ ତାର ଉତପତ୍ତି କୌଣସି ଏକ କର୍ତ୍ତାର 'ଜ୍ଞାନ'ରୁ । କର୍ତ୍ତାର ଉପରେ ଯେ, ସେ ହେଲେ 'ପରିଜ୍ଞାତା' । କର୍ମ' ଗୁଣ ନିର୍ଭର କରେ କର୍ତ୍ତାର 'ଜ୍ଞେୟ'ର ଦୋଷ-ଗୁଣ ଜ୍ଞାନ ଉପରେ । ଅର୍ଥାତ୍ ଆମେ ସମସ୍ତେ ହେଲୁ ଜ୍ଞାତା ଓ କର୍ତ୍ତା । କିନ୍ତୁ ଆମର ଆମର ଜ୍ଞାନର ଏବଂ କର୍ମର ଗୁଣର ସ୍ତର ନିର୍ଭର କରେ ଆମର'ଜ୍ଞେୟ'ର ପ୍ରକାର ଉପରେ । ଦୃଷ୍ଟାନ୍ତ ସ୍ୱରୂପ କଟକ ନଗରକୁ ପାଞ୍ଚଜଣ ଲୋକ ଆସିଲେ । ଜଣେ ସିଧା ଗଲେ କଟକ-ନଗରବାସୀ ଜଣେ ପ୍ରସିଦ୍ଧ ଜ୍ଞାନୀଙ୍କ ନିକଟକୁ, ଆଉ ଜଣେ ଗଲେ ଜଣେ ଓକିଲଙ୍କ ପାଖକୁ, ଆଉ ଜଣେ ଗଲେ ଜଣେ ରାଜନୈତିକ

ନେତାଙ୍କ ପାଖକୁ । ବାକି ଦୁଇଜଣରୁ ଜଣେ ଗଲେ ବଣିଆ ଦୋକାନକୁ ଓ ଅନ୍ୟ ଜଣକ ଗଲେ ସିଧା କୌଣସି ପାପ ମନ୍ଦିରକୁ । ଏମାନେ ପ୍ରତ୍ୟେକେ ଏକ ଏକ 'କର୍ମ'କରି ଘରକୁ ଫେରିବେ । କିନ୍ତୁ ସେମାନଙ୍କର କର୍ମର ମୂଲ୍ୟାୟନ ହେବ ସେମାନେ ନିଜ ନିଜର 'ଜ୍ଞାନ' ଦେଇ କ'ଣ ଖୋଜି ଆସିଥିଲେ (ଜ୍ଞେୟ) । 'କରଣ' ଓ'କର୍ମ' କେବଳ ବାହ୍ୟ । ସେସବୁ ଆମର ଜ୍ଞାନ ଓ ଜ୍ଞେୟକୁ ଅସ୍ପଷ୍ଟ କରିହିଁ ଦେଖାଦିଅନ୍ତି ।

ତେଣୁ ଗୀତାଙ୍କ ମତରେ, ଯଥାର୍ଥ ଭାବରେ ଆମର ସକଳ କର୍ମ, ଅର୍ଥାତ୍ ଆମର ଜୀବନ ଓ ତାର କୃତକାର୍ଯ୍ୟତା ପ୍ରକୃତରେ ନିର୍ଭର କରେ ଆମର ଜ୍ଞାନର ସ୍ତର, ପ୍ରକାର ଓ ଜ୍ଞେୟର ପ୍ରକୃତି ଉପରେ ।

ପରବର୍ତ୍ତୀ ଶ୍ଳୋକରେ ଗୀତା ତେଣୁ ଜ୍ଞାନର ପ୍ରକାର ବୁଝାଇ ବସିବେ ।

( ୧୯ )

ଜ୍ଞାନଂ କର୍ମ ଚ କର୍ତ୍ତା ଚ ତ୍ରିଧୈବ ଗୁଣଭେଦତଃ
ପ୍ରୋଚ୍ୟତେ ଗୁଣ ସଂଖ୍ୟାନେ ଯଥାବଚ୍ଛୃଣୁ ତାନ୍ୟପି ।୧୯।

ଗୁଣସଂଖ୍ୟାନେ (ଗୁଣର ବିସ୍ତର ଅନୁସାରେ) ଜ୍ଞାନଂ କର୍ମ ଚ କର୍ତ୍ତା ଚ (ଜ୍ଞାନ, କର୍ମ ଓକର୍ତ୍ତା) ଗୁଣଭେଦତଃ (ଗୁଣର ଭିନ୍ନତା ହେତୁ) ତ୍ରିଧା ଏବ ପ୍ରୋଚ୍ୟତେ (ତିନ ପ୍ରକାର କଥିତ ହୋଇଥାନ୍ତି ) । ତାନ୍ ଅପି ଯଥାବତ୍ ଶୃଣୁ (ସେସବୁ ମଧ୍ୟ ଯଥାଯଥ ଭାବରେ ଶୁଣିଯାଅ ) ।

ଅନୁବାଦ—

ହେ ଅର୍ଜ୍ଜୁନ, ପୁଣି ଗୁଣମୂଳକ ସାଂଖ୍ୟ ଦର୍ଶନାନୁଯାୟୀ ଜ୍ଞାନ, କର୍ମ ଓ କର୍ତ୍ତା ଗୁଣ ଭେଦରେ କିପରି ତିନିପ୍ରକାର ତାହା ମଧ୍ୟ ଶୁଣ ।

( ୨୦ )

ସର୍ବଭୂତେଷୁ ଯେନୈକଂ ଭାବମବ୍ୟୟମୀକ୍ଷତେ
ଅବିଭକ୍ତଂ ବିଭକ୍ତେଷୁ ତଜ୍ଜ୍ଞାନଂ ବିଦ୍ଧି ସାତ୍ତ୍ୱିକଂ ।୨୦।

ଯେନ (ଯେଉଁ ଜ୍ଞାନଦ୍ୱାର ) [ମନୁଷ୍ୟ] ବିଭକ୍ତେଷୁ ସର୍ବଭୂତେଷୁ (ପ୍ରତ୍ୟେକ ଠାରୁ ପ୍ରତ୍ୟେକେ ଭିନ୍ନ ଦେଖାଯାଉଥିବା ଅଗଣିତ ଜୀବ-ମାନବ ଭିତରେ) ଏକଂ ଅବିଭକ୍ତଂ ଅବ୍ୟୟଂ ଭାବଂ ଈକ୍ଷତେ (ଗୋଟିଏ ଅବିଭକ୍ତ ଓ

ଶାଶ୍ୱତ ଭବ ଦିବାର ଦେଖିପାରିଥାଏ) ତତ୍ ଜ୍ଞାନଂ ସାତ୍ତ୍ୱିକଂ ଵିଦ୍ଧି (ସେହି ଜ୍ଞାନକୁ ସାତ୍ତ୍ୱିକ ବୋଲି ଜାଣିବ) ।

ଅନୁବାଦ—

ହେ ଅର୍ଜ୍ଜୁନ, ପ୍ରତ୍ୟେକ ଠାରୁ ପ୍ରତ୍ୟେକ ଆପାତତଃ ଭିନ୍ନ ପ୍ରତୀୟମାନ ହେଉଥିବା ଅଗଣିତ ଜୀବ-ମାନଙ୍କ ଭିତରେ ଏକ ଅବିଭକ୍ତ, ଅକ୍ଷୟ ଓ ଶାଶ୍ୱତ ସତ୍ତାର ଅବବୋଧ ଯିଏ ଆଣିଦିଏ, ସେହି ଜ୍ଞାନକୁ ସାତ୍ତ୍ୱିକ ଜ୍ଞାନ ବୋଲି ଜାଣିବ ।

( ୨୧ )

ପୃଥକ୍ତ୍ୱେନ ତୁ ଯଜ୍ଜ୍ଞାନଂ ନାନା ଭବାନ୍ ପୃଥଗ୍ ବିଧାନ୍
ବେତ୍ତି ସର୍ବେଷୁ ଭୂତେଷୁ ତଜ୍ଜ୍ଞାନଂ ବିଦ୍ଧି ରାଜସଂ ।୨୧।

ତୁ (କିନ୍ତୁ ଯତ୍ ଜ୍ଞାନଂ (ଯେଉଁ ଜ୍ଞାନ) ପୃଥକ୍ତ୍ୱେନ [ବାହ୍ୟ] (ବିଭିନ୍ନତା ଯୋଗୁଁ) ସର୍ବେଷୁ ଭୂତେଷୁ ପୃଥଗ୍ ବିଧାନ୍ ନାନାଭବାନ୍ (ଜୀବ ଜଗତକୁ ପରସ୍ପରଠାରୁ ପୃଥକ୍ ପୃଥକ୍ ବୋଲି) ବେତ୍ତି (ମନେହେବାକୁ ଦିଏ) ତତ୍ ଜ୍ଞାନଂ ରାଜସଂ ବିଦ୍ଧି (ସେହି ଜ୍ଞାନକୁ ରାଜସ ବୋଲି ଜାଣିବ) ।

ଅନୁବାଦ—

ଯେଉଁ ଜ୍ଞାନ ଜଗତକୁ ଶ୍ରେଣୀ ଓ ବ୍ୟକ୍ତି ଭେଦରେ ସେମାନଙ୍କର ପାରସ୍ପରିକ ଭିନ୍ନତା ଉପରେହିଁ ନଜର ଦେଇ, ପ୍ରତ୍ୟେକଟି କିପରି ଅନ୍ୟଠାରୁ ପୃଥକ୍, ତାହା ଦେଖାଇ ଦିଏ, ସେ ଜ୍ଞାନ ରାଜସିକ ଶ୍ରେଣୀର ବୋଲି ଜାଣିବ ।

( ୨୨ )

ଯତ୍ ତୁ କୃତ୍ସ୍ନବଦେକସ୍ମିନ୍ କାର୍ଯ୍ୟେ ସକ୍ତ-ମହୈତୁକଂ
ଅତତ୍ତ୍ୱାର୍ଥବଦଳ୍ପଂଚ ତତ୍ ତାମସମୁଦାହୃତମ୍ ।୨୨।

ଯତ୍ତୁ (କିନ୍ତୁ ଯେଉଁ ଜ୍ଞାନ) ଏକସ୍ମିନ କାର୍ଯ୍ୟେ (ଯେ କୌଣସି ଗୋଟିଏ କାର୍ଯ୍ୟରେ) ଅହୈତୁକଂ (ଯୁକ୍ତିଯୁକ୍ତତା ନଥିଲେ ମଧ୍ୟ) ଅତତ୍ତ୍ୱାର୍ଥବତ୍ (କୌଣସି ଯାଥାର୍ଥ୍ୟ ନ ଥିଲେ ମଧ୍ୟ) କୃତ୍ସ୍ନବତ ସକ୍ତଂ (ତାହାହିଁ ଜୀବନର ସମଗ୍ର କର୍ତ୍ତବ୍ୟ ବୋଲି ମନେକରି ସେଥିପ୍ରତି ପ୍ରଗାଢ଼ ଭବରେ ଆସକ୍ତ କରଏ) ଅଳ୍ପଂ ଚ ତତ୍ (ସେହି ସଂକୀର୍ଣ୍ଣ ଓ ସାମାନ୍ୟ ଜ୍ଞାନ) ତାମସଂ ଉଦାହୃତଂ (ତାମସ ବୋଲି କୁହାଯାଇଥାଏ) ।

ଅନୁବାଦ—

ପୁଣି ଯେଉଁ ସଂକୀର୍ଣ୍ଣ ଜ୍ଞାନ ମନୁଷ୍ୟକୁ ଏକ ସାମାନ୍ୟ ଓ ଅପୌକ୍ତିକ କର୍ମରେ, ତାହା ଯେପରି ଜୀବନର ସମଗ୍ର ଲକ୍ଷ୍ୟକୁ ପୂରଣ କରୁଛି, ଏହିଭଳି ଜାଣି, ତାକୁ ଜୀବନର ସମଗ୍ରତାରୁ ଟାଣି ଆଣି କେବଳ ସେଇ ସଂକୀର୍ଣ୍ଣ ପରିସୀମା ମଧ୍ୟରେ ଆସକ୍ତକରି ରଖେ, ସେ ପ୍ରକାର ଜ୍ଞାନ ନିଶ୍ଚିତରେ ତାମସିକ ବୋଲି ଜାଣିବ ।

ବିଶେଷ ଭାଷ୍ୟ—

ପୂର୍ବରୁ ଯେପରି ବହୁ ସ୍ଥାନରେ କୁହାଯାଇଛି, ଗୀତା ବରାବର ଜୀବନର 'ସମଗ୍ରତା' ଉପରେହିଁ ଦୃଷ୍ଟି ରଖି ଆମ ପ୍ରତ୍ୟେକଂକୁ ସମାନୁପାତିକ ଭାବରେ ଜୀବନ ଯାପନ କରିବାକୁ ଉପଦେଶ ଦେଇ ଆସିଛନ୍ତି । ତେଣୁ ସମଗ୍ରତାକୁ ହରାଇ କୌଣସି ଏକ ସାମାନ୍ୟ ଅଂଶ ସମଗ୍ର ମନେକରି ସେଥିରେ ମାତି ରହିବା, ଗୀତାଂକ ମତରେ ତାମସିକ ଜ୍ଞାନ । ଧନ, ଭୋଜନ, ଯୌନାନନ୍ଦ ଇତ୍ୟାଦି ପ୍ରତ୍ୟେକର, ଜୀବନରେ ଆନୁପାତିକ ସ୍ଥାନ ଓ ଆବଶ୍ୟକତା ଅଛି । ଅନୁପାତ ପ୍ରତି ଦୃଷ୍ଟି ନ ଦେଇ, ଆମେ ସେମାନଙ୍କ ଭିତରୁ କେବଳ ଗୋଟାକରେ ଅତିଶୟ ଭାବରେ ମାତିଗଲେ; ଜୀବନର ସୁଖ ଓ ଲକ୍ଷ୍ୟ ଉଭୟ ହରାଉ ।

ପୁଣି ଧନ, ବିଦ୍ୟା, ପରିବାର, ଯୌନାନନ୍ଦ, ସାମାଜିକ ପ୍ରତିପତ୍ତି, ଦେଶଭକ୍ତି, ଧର୍ମ ସାଧନା ଇତ୍ୟାଦିକୁ ପରସ୍ପରଠାରୁ ପୃଥକ୍ ପୃଥକ୍ ବୋଲି ଭାବିବା ମଧ୍ୟ ସମ୍ୟକ୍ ଜ୍ଞାନ ନୁହେଁ । ତାହା ତାମସିକ ନ ହେଲେହେଁ ରାଜସିକ ଜ୍ଞାନ ଅର୍ଥାତ୍ ଅନୁତ୍ତମ ଜ୍ଞାନମାତ୍ର । ଆମେ ଘରେ ସ୍ତ୍ରୀକି ମିଥ୍ୟାକଥା କହି,ବାହାରେ ସତ୍ୟସନ୍ଧ ହୋଇ ପାରିବାନି । ବ୍ୟବସାୟରେ ସକଳ ପାପ- ଅପରାଧ କରି, ତେଣେ ପୁରୋହିତ ଦ୍ୱାରା ଚଣ୍ଡୀ ପୂଜାର ଆୟୋଜନ କରାଇ ଧାର୍ମିକ ହୋଇ ପାରିବାନି । ଜୀବନର ସକଳ ବିଭାଗଗୁଡ଼ିକ ଘନିଷ୍ଠଭାବରେ ପରସ୍ପର-ସମ୍ବନ୍ଧ ଯୁକ୍ତ । ଘର, ସମାଜ, ଦେଶ, ପୃଥିବୀ ଓ ଇଶ୍ୱର — କେହି କାହାଠୁ ଅଲଗା ନୁହନ୍ତି । ହିନ୍ଦୁ, ମୁସଲମାନ୍, ବଂଗାଳି, ଖ୍ରୀଷ୍ଟାନ, ଧଳା, କଳା—ଏସବୁ ଭିନ୍ନତା ମଧ୍ୟ କେବଳ ବାହ୍ୟ ଓ ଭ୍ରାନ୍ତଜନକ । ପୁଣି ବାହାରର ଭିନ୍ନତା- ଦୃଷ୍ଟି ଆସ୍ତେ ଆସ୍ତେ ନିକଟରୁ ନିକଟତର ହୋଇ; ନିଜର ପରିବାର ଭିତରେ ମଧ୍ୟ ପିତା- ପୁତ୍ର ବା ସ୍ୱାମୀ- ସ୍ତ୍ରୀ ଭିତରେ ମଧ୍ୟ କାନ୍ଥ ଠିଆ କରିପାରେ ବା କରାଇଥାଏ । ଗୀତା ତେଣୁ ଏ ପ୍ରକାର ଭିନ୍ନତା ସୃଜକ -ଜ୍ଞାନକୁ ପସନ୍ଦ କରୁ ନାହାନ୍ତି । ଗୀତା ସେ ପ୍ରକାର ଜ୍ଞାନକୁ ତାଚ୍ଛଲ୍ୟରେ ରାଜସିକ କହୁଛନ୍ତି ଯାହାକି କେବଳ ଭିନ୍ନତା

ଉପରେହିଁ ଜୋର୍ ଦିଏ ଏବଂ ସେହି ସୂତ୍ରରେ ଆମର ଅହଂଭାବକୁ ଅର୍ଥାତ୍ ମୁଁ—ମୋର-ଜ୍ଞାନକୁ ବରାବର ଉଜ୍ଜୀବିତ କରି ରଖେ— କେବଳ ରାଷ୍ଟ୍ର ବା ସମାଜରେ ନୁହେଁ, ଏପରକି ପରିବାରରେ ମଧ୍ୟ, ପିତା- ପୁତ୍ର ଓ ସ୍ୱାମୀ-ସ୍ତ୍ରୀ ଭିତରେ ମଧ୍ୟ । ଗୀତା ଅନ୍ୟପକ୍ଷରେ ବରାବର କେବଳ ସେହି ଜ୍ଞାନକୁ ସର୍ବୋ-ତ୍ତମ ବୋଲି ପ୍ରଚାର କରି ଆସୁଛନ୍ତି ଯାହା ଆମକୁ 'ସମଗ୍ର' ସହିତ ପରିଚିତ ଓ ଏକୀଭୂତ କରାଏ, ଯାହା ସୃଷ୍ଟିର ଅଗଣିତ ଭିନ୍ନତା ତଳେ ତଳେ ଥିବା ରହସ୍ୟ-ମୟ ଐକ୍ୟ ଓ ଅଭିନ୍ନତାକୁ ଦେଖାଇ ଦିଏ (ଅବିଭକ୍ତଂ ବିଭକ୍ତେଷୁ) । ସେହି ଜ୍ଞାନହିଁ ସାତ୍ତ୍ୱିକ ଏବଂ ତାହାହିଁ ପ୍ରକୃଷ୍ଟ ଆତ୍ମିକ ଓ ବୌଦ୍ଧିକ ଅବବୋଧ; ଯାହା ହିନ୍ଦୁ, ମୁସଲମାନ୍, ଶିଖ, ଖ୍ରୀଷ୍ଟାନ୍ ବଂଗାଳି, ଓଡ଼ିଆ, କରଣ, ବ୍ରାହ୍ମଣ, ଶୂଦ୍ର ଇତ୍ୟାଦିର ମିଥ୍ୟା ଭିନ୍ନତା ଉପରେ ଦୃଷ୍ଟି ନ ଦେଇ, ଦୃଷ୍ଟିରଖେ ସେ ସମସ୍ତଂକ ଭିତରେ ଥିବା ମହାନ୍ ମାନସିକ ସାମ୍ୟ ଉପରେ । ଗୀତା ବରାବର ଏହି ଜ୍ଞାନ, ଏହି ସାମ୍ୟ- ବୋଧ ରୂପକ ଉଦାର ସଚେତନତାକୁହିଁ ପ୍ରଚାର କରି ଆସିଛନ୍ତି । ଗୀତାଂକ ଦୃଷ୍ଟିରେ "ସମବୁଦ୍ଧି ର୍ବିଶିଷ୍ୟତେ"— ସମବୁଦ୍ଧି ସଂପନ୍ନ ଜନମାନେହିଁ ଏକପକ୍ଷରେ ସମାଜରେ ବୈଶିଷ୍ଟ୍ୟର ଅଧିକାରୀ ଏବଂ ଅନ୍ୟପକ୍ଷରେ ଈଶ୍ୱରଂକର ପ୍ରକୃତ ଭକ୍ତ ।

ଜ୍ଞାନର ଏହି ପ୍ରକାର ଭେଦ କହିସାରିଲା ପରେ ଗୀତା ବର୍ତ୍ତମାନ କର୍ମର ପ୍ରକାର ଭେଦ କହିବେ ।

( ୨୩ )

ନିୟତଂ ସଂଗରହିତମରାଗ ଦ୍ୱେଷତଃ କୃତମ୍
ଅଫଳ ପ୍ରେପ୍ସୁନା କର୍ମ ଯତ୍ ତତ୍ ସାତ୍ତ୍ୱିକ ମୁଚ୍ୟତେ । ୨୩ ।

ଅଫଳ ପ୍ରେପ୍ସୁନା (ଫଳାଭିଳାଷଶୂନ୍ୟ ଲୋକଂକ ଦ୍ୱାରା) ଯତ୍ ନିୟତଂ କର୍ମ (ଯେଉଁ ଦେଶ-ସମାଜ-ଶାସ୍ତ୍ର-ନିର୍ଦ୍ଦିଷ୍ଟ ସ୍ୱାଭାବିକ କର୍ତ୍ତବ୍ୟ କର୍ମ) ସଂଗରହିତଂ (ଆସକ୍ତି-ଶୂନ୍ୟ ଭାବରେ) ଅରାଗଦ୍ୱେଷତଃ (ଏକପକ୍ଷରେ କାହାପ୍ରତି ଆଗ୍ରହ ବା ଅନ୍ୟପକ୍ଷରେ କାହା ପ୍ରତି ଘୃଣା ନଥାଇ) କୃତଂ (ଅନୁଷ୍ଠିତ ହୋଇଥାଏ) ତତ୍ ସାତ୍ତ୍ୱିକଂ ଉଚ୍ୟତେ (ତାହାକୁହିଁ ସାତ୍ତ୍ୱିକ କୁହାଯାଇଥାଏ) ।

ଅନୁବାଦ—

ହେ ଅର୍ଜ୍ଜୁନ, ବର୍ତ୍ତମାନ କର୍ମର ପ୍ରକାର-ଭେଦ ଶୁଣ । ଯାହା ଦେଶ-ସମାଜ-ପ୍ରକୃତ-ଦୃଷ୍ଟିରୁ ସ୍ୱାଭାବିକ ଭାବରେ ନିର୍ଦ୍ଦିଷ୍ଟ ଏବଂ ଯାହା ଫଳାଶାଶୂନ୍ୟ

ଓ ନିଷ୍ପାପକ ଏବଂ କାହାରି ପ୍ରତି ଦ୍ୱେଷହୀନ ଭାବରେ କରାଯାଇଥାଏ ସେ କର୍ମ ନିଶ୍ଚିତ ଭାବରେ ସାତ୍ତ୍ୱିକ କର୍ମ ବୋଲି ଜାଣିବ ।

( ୨୪ )

ଯତ୍ତୁ କାମେପ୍ସୁନା କର୍ମ ସାହଂକାରେଣ ବା ପୁନଃ
କ୍ରିୟତେ ବହୁଳାୟାସଂ ତଦ୍ରାଜସମୁଦାହୃତଂ । ୨୪ ।

ତୁ ( ପୁଣି ) କାମେପ୍ସୁନା (ଫଳାଭିଳାଷୀ ଲୋକଂକ ଦ୍ୱାରା) ସାହଂକାରେଣ ବା ପୁନଃ (ଅଥବା ଅହଂକାର ଦେଖେଇ ହେବା ଲକ୍ଷ୍ୟରେ) ବହୁଳାୟାସଂ [ଏବଂ ସେଥିପାଇଁ] (ବହୁ ପରିଶ୍ରମ କରି) ଯତ୍ କର୍ମ କ୍ରିୟତେ (ଯେଉଁ କର୍ମ କରାଯାଏ) ତତ୍ ରାଜସ ଉଦାହୃତଂ (ତାହାକୁ ରାଜସ ବୋଲି କୁହାଯାଏ)

ଅନୁବାଦ—

କିନ୍ତୁ ହେ ଅର୍ଜୁନ, ଫଳାଭିଳାଷୀ ଲୋକଂକ ଦ୍ୱାରା, ପୁଣି ଅନ୍ୟକୁ ନିଜର ପ୍ରାଧାନ୍ୟ ଦେଖାଇ ହେବା ଲକ୍ଷ୍ୟରେ ଅଯଥା ବହ୍ୱାଡମ୍ବର ବା ବହୁ ପ୍ରଯତ୍ନ ସହକାରେ ଯେଉଁ ସବୁ କର୍ମ କରାଯାଏ, ସେସବୁ ରାଜସିକ ବୋଲି ଜାଣିବ ।

( ୨୫ )

ଅନୁବନ୍ଧଂ କ୍ଷୟଂ ହିଂସା ମନପେକ୍ଷ୍ୟ ଚ ପୌରୁଷଂ
ମୋହା ଦାରଭ୍ୟତେ କର୍ମ ଯତ୍ ତତ୍ତାମସମୁଚ୍ୟତେ ।୨୫।

ଯତ୍ କର୍ମ (ଯେଉଁ କର୍ମ) ଅନୁବନ୍ଧଂ (ଫଳାଫଳ) କ୍ଷୟଂ (ଅର୍ଥ ଓ ଶ୍ରମର ଅକାରଣ ବ୍ୟୟ) ହିଂସାଂ (ପରପୀଡନ) ପୌରୁଷଂ ଚ (ଏବଂ ଆତ୍ମସାମର୍ଥ୍ୟ) [ଏ ସମସ୍ତକୁ] ଅନପେକ୍ଷ୍ୟ (ଆଦୌ ବିଚାରକୁ ନନେଇ) ମୋହାତ୍ ଆରଭ୍ୟତେ (ଅଜ୍ଞ ଭାବରେ ହାତକୁ ନିଆଯାଏ) ତତ୍ ତାମସଂ ଉଚ୍ୟତେ (ସେପରି କର୍ମକୁ ତାମସହିଁ କୁହାଯାଇଥାଏ ) ।

ଅନୁବାଦ—

ପୁଣି ଯେଉଁଠି ନିଜ ସାମର୍ଥ୍ୟ ବା ଅସାମର୍ଥ୍ୟ, ଶେଷ ଫଳାଫଳ ଏବଂ ଅର୍ଥ ଓ ଶ୍ରମର ଅଯଥା ବ୍ୟୟକୁ ସମୁଚିତ ପ୍ରକାରେ ବିଚାରକୁ ନ ଆଣି, ଯେଉଁ ସବୁ ପ୍ରଯତ୍ନ ଅଜ୍ଞ ଭାବରେ ଆରମ୍ଭ କରାଯାଇଥାଏ, ସେସବୁ କେବଳ ତାମସିକ ବୋଲି ଜାଣିବ ।

## ବିଶେଷ ଭାଷ୍ୟ—

ଦେଖିବାର କଥା ଯେ ଗୀତା, ଉପରେ କୌଣସିଠାରେ 'ପାପ' କର୍ମ କ'ଣ, 'ପୁଣ୍ୟ' କର୍ମ କ'ଣ ତାହା ଆଦୌ ସ୍ପଷ୍ଟ କରି ବସିନାହାନ୍ତି । କାରଣ ପାପ-ପୁଣ୍ୟ ମନୁଷ୍ୟକୃତ ଧାରଣା ମାତ୍ର । ତାହା ଧର୍ମରୁ ଧର୍ମ, ଦେଶରୁ ଦେଶ ଓ ସମାଜରୁ ସମାଜ ଭିତରେ ପୃଥକ୍ ପୃଥକ୍ ହୋଇ ଦେଖା ଦିଏ । ଗୀତା କିନ୍ତୁ ତିନୋଟି କଥା ଉପରେ ବରାବର ଜୋର ଦେଇ ଆସିଛନ୍ତି । ତିନୋଟି ହେଲେ— ଏକରେ, ଆମେ ଯାହା କରିବା ସେଥିରେ ସ୍ୱାର୍ଥପରତା (ଫଳାଭିଳାଷ) ନଥିବ । ଦ୍ୱିତୀୟରେ ଅହଂକାର (କର୍ତ୍ତୃତ୍ୱାଭିମାନ) ନଥିବ, ତୃତୀୟରେ, ଯାହା କର୍ତ୍ତବ୍ୟ ବୋଲି, ଦେଶ-ସମାଜ-ଧର୍ମ ଦ୍ୱାରା ନିର୍ଦ୍ଦିଷ୍ଟ ବା ଯାହା ଆମେ ନିଜ' ବୁଦ୍ଧିଯୋଗ' ଦ୍ୱାରା କରଣୀୟ ବୋଲି ସ୍ଥିରୀକୃତ କଲେ, ତାହାପ୍ରତି କୌଣସି ପ୍ରକାର ଭାବ-ପ୍ରବଣତା ନରଖି, ଅର୍ଥାତ୍ ସେଥିପ୍ରତି ସଂପୂର୍ଣ୍ଣ ନିରାସକ୍ତ ରହି, ଲାଭ-ପ୍ରଭାବ-ପ୍ରତିପତ୍ତି ପାଇଁ ଆଦୌ ଆଶା ନରଖି, ସେ କାମଟିକୁ ନିପୁଣ ଭାବରେ ସଂପାଦନ କରିବା ।

ଏହାହିଁ ହେଲା ଗୀତାରେ କର୍ମର ସାତ୍ତ୍ୱିକ ଆଦର୍ଶ । କାମନା, ସ୍ୱାର୍ଥ-ପରତା, ଅଭିଳାଷ ଓ ଅହଂକାର ଅଥବା ଦେଖେଇ ହେବା ଭାବ ପଶିଲେ ପ୍ରତ୍ୟେକ କର୍ମ ରାଜସିକ ହୋଇଉଠେ । ଅନ୍ୟପକ୍ଷରେ ତମୋଗୁଣ ଆମର ବୁଦ୍ଧି ଓ ଶରୀରର ଜଡତାହିଁ ସୂଚନା କରେ । ତମୋଗୁଣ ସଂପନ୍ନ ଲୋକ ତାର ଶରୀର ଓ ମସ୍ତିଷ୍କ, ଉଭୟରେ ଆଳସ୍ୟପରାୟଣ । ସେ କାମ କଷ୍ଟକୁ ପରାଙ୍ମୁଖ, ତତୋଧିକ ମଧ୍ୟ ଚିନ୍ତା କରିବାକୁ । ତେଣୁ ମୋଟ ଉପରେ ତମୋଗୁଣ ହେଲା ଆଳସ୍ୟ, ଜଡତା ଓ ନୈଷ୍କର୍ମ୍ୟର ଜନନୀ । ଆଧୁନିକ ଭାରତୀୟ ସମାଜ ଅଧିକାଂଶ ଭାବରେ ତମୋଗୁଣ- ଜର୍ଜ୍ଜର ବୋଲି କହିବାକୁ ହେବ ।

ଗୀତା ଏଠାରେ ଏପରି କର୍ମକୁ ତାମସିକ କହୁଛନ୍ତି, ଯାହା ଆପାତତଃ ରାଜସିକ ଅର୍ଥାତ୍ "ମୁଁ ବି କରିପାରେ"— ଏପରି ଦେଖେଇ ଦେବାର ଭାବ ସେଥିରେ ଥାଇପାରେ, କିନ୍ତୁ ବୁଦ୍ଧିର ଜଡତା ହେତୁ ତାହା ନିଜର ସାମର୍ଥ୍ୟ-ଅସାମର୍ଥ୍ୟ, ଆର୍ଥିକ ସମ୍ଭାବନା, ନିଜର ନିପୁଣତା ବା ଅଭିଜ୍ଞତାର ଅଭାବ, ଅନ୍ୟ କାହାର ଏଥିରେ କି ଅନିଷ୍ଟ ହୋଇପାରେ — ଏସବୁ କିଛି ସ୍ପଷ୍ଟ ନକରି ଆରମ୍ଭ କରିନେବା ହେତୁ, ସେହି ସମଗ୍ର କର୍ମଟି ଏକ ବ୍ୟର୍ଥ ବିଡମ୍ବନାରେହିଁ ପରିଣତ ହୁଏ । ଗୀତା ଏ ପ୍ରକାର ଅଜ୍ଞତା-ପ୍ରତିଷ୍ଠ କର୍ମକୁ ମଧ୍ୟ ପସନ୍ଦ କରନ୍ତି ନାହିଁ, ଯେପରି କରନ୍ତି ନାହିଁ ସ୍ୱାର୍ଥକେନ୍ଦ୍ରିକ, ଅହଂକାର—ପ୍ରତିଷ୍ଠା ଓ ବଡିମା -ପ୍ରଦର୍ଶକ କର୍ମକୁ । ଆମେ ସାଧାରଣ ଭାବରେ ଯେଉଁପରି 'ପାପ' ଓ 'ପୁଣ୍ୟ'

ବିଗ୍ଭର କରିଥାଉଁ ପାଠକେ ଦୟା କରି ସ୍ମରଣ ରଖିବେ ଯେ, ଗୀତା କୌଣସି-ଠାରେ ହେଲେ ତାହାର ଉଲ୍ଲେଖ କରିନାହାନ୍ତି । ଏ ଦେଶରେ ଦିନେ ଅସ୍ପୃଶ୍ୟତା, ବିଧବାର ବିବାହ ବା କୁକ୍କୁଟ ମାଂସ ଭୋଜନ ଘୋର ପାପ କର୍ମ ଥିଲା । ଆଜି ଏ ସବୁକୁ କେହି ଉଲ୍ଲେଖକୁହିଁ ନେଉ ନାହାନ୍ତି । ମନୁଷ୍ୟକୁ ଘୃଣା କରିବା(ଅସ୍ପୃ-ଶ୍ୟତା ) ଓ ବିଧବା-ମାନଙ୍କ ଜୀବନକୁ ପୀଡ଼ନଜର୍ଜର କରିବା (ହିଂସା) ପ୍ରଭୃତି ସେଥିରୁ ସ୍ୱାଭାବିକ ଭାବରେ ଉଦ୍ଭୂତ ଭ୍ରୂଣ ହତ୍ୟାଦି 'ଅନୁବନ୍ଧ' ପ୍ରତି ଅନପେକ୍ଷା ହେତୁ, ସେ ଦିନର ତଥାକଥିତ 'ପୁଣ୍ୟକର୍ମ'କୁ ଆମେ ଆଜି ଘୋର ମୋହାତ୍ମକ ତାମସିକ କର୍ମଛଡ଼ା ଆଉ କ'ଣ କହିବା ?

ସବୁ ଦେଶ, ସମାଜ ଓ ଧର୍ମରେ ଆଜି ବି ଧର୍ମ ନାମରେ, ପୁଣ୍ୟ ନାମରେ ବହୁ ଘୋର ତାମସିକ କର୍ମ ଘଟି ଗ୍ଭଲିଛି । ଦଶହରା, ଗଣେଶ ପୂଜା ଓ ସରସ୍ୱତୀ ପୂଜା ଇତ୍ୟାଦି ଆଜି ଏ ଦେଶରେ ଯେ ଆକାର ଓ ପ୍ରକାରରେ ଉପସ୍ଥାପିତ କରାହେଉଛି, ସେଥିର କେତେକାଂଶ ବା ସାତ୍ତ୍ୱିକ ? ସେ ସବୁ ଏକ ଘୋର ତାମସିକଭାବାପନ୍ନ ଅଧଃପତିତ ଜାତିର ଜୀବନ୍ତ ତାମସିକ ଧର୍ମନାମରେ ଆତ୍ମଘାତି ପ୍ରକାଶ ଛଡ଼ା ଆଉ କିଛି ନୋହି ପାରେ ।

ଗୀତାଙ୍କର କର୍ମର ଆଦର୍ଶ ତେଣୁ ଏକାନ୍ତରେ ମାନସିକ ଓ ଆତ୍ମିକ । ପ୍ରତ୍ୟେକଟି କର୍ମ ପାପ ବା ପୁଣ୍ୟ ଅଥବା ସାତ୍ତ୍ୱିକ ବା ରାଜସିକ ବା ତାମସିକ ବୋଲି ବିଗ୍ଭର କରାହେବ, କେବଳ କର୍ତ୍ତାର ବ୍ୟକ୍ତିଗତ ମନୋଭାବର ଦୃଷ୍ଟିକୋଣରୁ ।

ନ୍ୟାୟବାନ ଈଶ୍ୱର ଯେ ପ୍ରତ୍ୟେକ ନର ଓ ନାରୀର କର୍ମକୁ, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ, ବଙ୍ଗାଳୀ, ଚୀନା, କରଣ, ବ୍ରାହ୍ମଣ ଆଦି ମନୁଷ୍ୟ-କୃତ ଆଦର୍ଶ ଦିଗରୁ ବିଗ୍ଭର ନକରି, କରୁଥିବେ କେବଳ ବ୍ୟକ୍ତିଗତ ମାନସିକ-ପ୍ରେରଣା ଦୃଷ୍ଟିରୁ—ଏପରି ଭାବିବା ବୋଧହୁଏ ଆଦୌ ଅଯୌକ୍ତିକ ହେବ ନାହିଁ । କାରଣ କର୍ମ- ବିଗ୍ଭରର ତାହାହିଁ ଏକମାତ୍ର ଯୁକ୍ତିଯୁକ୍ତ ପଦ୍ଧତି ବୋଲି ମନେ ହୁଏ । ଆଉ ସବୁହିଁ ସଂକୀର୍ଣ୍ଣ ଓ ଗୋଷ୍ଠୀଗତ—ଦୃଷ୍ଟି-ପ୍ରସୂତ ।

ଜ୍ଞାନ, ଜ୍ଞେୟ ଓ କର୍ମ ଆଦିର ଏହିପରି ପ୍ରକାର ଭେଦ ଉଲ୍ଲେଖ ପରେ ଗୀତା ବର୍ତ୍ତମାନ 'କର୍ତ୍ତା'ର ଗୁଣ-ଭେଦ ବର୍ଣ୍ଣନା କରିବେ, ଯାହାକି କେବଳ ଉପର୍ଯ୍ୟୁକ୍ତ ବିଗ୍ଭର-ଧାରାର ପରିସମାପ୍ତି ବୋଲି ବୁଝିବାକୁ ହେବ ।

( ୨୬ )

ମୁକ୍ତ ସଙ୍ଗୋଽନହଂବାଦୀ ଧୃତ୍ୟୁତ୍ସାହ ସମନ୍ୱିତଃ
ସିଦ୍ଧ୍ୟସିଦ୍ଧ୍ୟୋର୍ନିର୍ବିକାରଃ କର୍ତ୍ତା ସାତ୍ତ୍ୱିକ ଉଚ୍ୟତେ ।୨୬।

ମୁକ୍ତ ସଂଗଃ (ଆସକ୍ତି ଶୂନ୍ୟ) ଅନହଂବାଦୀ (ନିରହଂକାର, ଯାହାଙ୍କ-ଠାରେ କେବେବେଳେ ହେଲେ 'ମୁଁ'—'ମୋର'—ଭବ ଦେଖାଯାଏ ନାହିଁ) ଧୃତ୍ୟୁ-ତ୍ସାହ ସମନ୍ୱିତଃ (ଧୈର୍ଯ୍ୟଶୀଳ ଓ ଉତ୍ସାହୀ) ସିଦ୍ଧ୍ୟ ସିଦ୍ଧ୍ୟୋ—ର୍ନିର୍ବିକାରଃ (କର୍ମର ସଫଳତା ବା ବିଫଳତା ସଂପର୍କରେ ନିର୍ବିକାର) [ଏହି ପ୍ରକାର] କର୍ତ୍ତା (କର୍ମୀ) ସାତ୍ତ୍ୱିକଃ ଉଚ୍ୟତେ (ସାତ୍ତ୍ୱିକ ବୋଲି କୁହାଯିବେ)

ଅନୁବାଦ—

ତେଣୁ ହେ ଅର୍ଜୁନ, ଆସକ୍ତିଶୂନ୍ୟ, ନିରହଙ୍କାର, ଉତ୍ସାହୀ ଓ ବ୍ୟର୍ଥତା-ଭିତରେ- ମଧ୍ୟ ଧୈର୍ଯ୍ୟଶୀଳ କର୍ମୀହିଁ ସାତ୍ତ୍ୱିକ ଶ୍ରେଣୀର ।

( ୨୭ )

**ରାଗୀ କର୍ମଫଳ ପ୍ରେପ୍ସୁର୍ଲୁବ୍ଧୋ ହିଂସାତ୍ମକୋଽଶୁଚିଃ**
**ହର୍ଷ ଶୋକାନ୍ୱିତଃ କର୍ତ୍ତା ରାଜସଃ ପରିକୀର୍ତ୍ତିତଃ ।୨୭।**

ରାଗୀ (ଯେ ବିଷୟାସକ୍ତ) କର୍ମଫଳ ପ୍ରେପ୍ସୁ (ଯାହା କାମ କରିବ ସେଥିରୁ ନିଜର ଫାଇଦାଟିର କଥାହିଁ ଯେ ଆଗ ଭାବୁଥିବ) ଲୁବ୍ଧଃ (ନିଜର ନ୍ୟାଯ୍ୟ ପ୍ରାପ୍ୟଠାରୁ ଯେ ସବୁବେଳେ ଅଧିକା ଗ୍ରହେ ବା ପରଧନାଭିଳାଷୀ) ହିଂସାତ୍ମକଃ (ନିଜ ସ୍ୱାର୍ଥପାଇଁ ପରପୀଡ଼ା ବା ଅନ୍ୟର ଅନିଷ୍ଟରେ ଯା'ର ଆନନ୍ଦ) ଅଶୁଚିଃ ( ଭିତର ଓ ବାହାର ଶୁଚିତା ବା ପବିତ୍ରତା ଯା'ର ନାହିଁ) ହର୍ଷ ଶୋକାନ୍ୱିତଃ (ଲାଭକ୍ଷତିରେ ହର୍ଷଶୋକ-ପ୍ରବଣ) [ଏପ୍ରକାର] କର୍ତ୍ତା(କର୍ମୀ) ରାଜସଃ ପରିକୀର୍ତ୍ତିତଃ (ରାଜସ ବୋଲି କଥିତ ହୁଅନ୍ତି) ।

ଅନୁବାଦ—

ଯେ ବିଷୟ ଲାଭାସକ୍ତ, କର୍ମଫଳାଭିଳାଷୀ, ନିଜର ପ୍ରାପ୍ୟଠାରୁ ସବୁବେଳେ ଅଧିକା ପାଇବା ପାଇଁ ବ୍ୟାକୁଳ, ନିଜ-ଲାଭ ପାଇଁ ଅନ୍ୟର ଅନିଷ୍ଟ କରିବାକୁ ମଧ୍ୟ ଯିଏ ଆଦୌ ପଶ୍ଚାତ୍‌ପଦ ନୁହେଁ, ଯାହାର ଭିତର ବା ବାହାର ମଧ୍ୟ ଆଦୌ ପବିତ୍ର ନୁହେଁ, ଯିଏ ଲାଭରେ ହର୍ଷାନ୍ୱିତ ଓ କ୍ଷତିରେ ଶୋକାକୁଳ—ଏ ପ୍ରକାର କର୍ତ୍ତା ରାଜସିକ ।

( ୨୮ )

ଅଯୁକ୍ତଃ ପ୍ରାକୃତଃ ସ୍ତବ୍‌ଧଃ ଶଠୋ ନୈଷ୍କୃତିକୋଽଳସଃ
ବିଷାଦୀ ଦୀର୍ଘସୂତ୍ରୀ ଚ କର୍ତ୍ତା ତାମସ ଉଚ୍ୟତେ ।୨୮।

ଅଯୁକ୍ତଃ (ଅନୁପାତ ଜ୍ଞାନ ହୀନ) ପ୍ରାକୃତଃ (ଇତର, ବଜାରୀ) ସ୍ତବ୍‌ଧଃ (ଅବିନୀତ) ଶଠଃ (ଠକ) ନୈଷ୍କୃତିକଃ (ନୀଚ କର୍ମକାରୀ) ଅଳସଃ (ଅଳସୁଆ) ବିଷାଦୀ (ଅବସାଦ-ଗ୍ରସ୍ତ ସ୍ୱଭବ) ଦୀର୍ଘସୂତ୍ରୀ ଚ (ଆଜିର କାମ ଯେ କାଲିକି ପକାଇ ରଖେ ବା ଅଳ୍ପ ସମୟରେ ହେବା କାମକୁ ଯେ ବହୁତ ସମୟ ନିଏ, [ଏ ପ୍ରକାର ] କର୍ତ୍ତା (କର୍ମୀ) ତାମସଃ ଉଚ୍ୟତେ (ତାମସ ବୋଲି କୁହାଯାନ୍ତି) ।

ଅନୁବାଦ—

ଅନୁପାତ ଜ୍ଞାନହୀନ, ଇତର ଶ୍ରେଣୀୟ, ଅବିନୀତ, ଠକ, ନୀଚ କର୍ମଶୀଳ, ଆଳସ୍ୟ-ପରାୟଣ, ଅବସାଦଗ୍ରସ୍ତ, ଅଳ୍ପ ସମୟର-କାମକୁ—ବହୁତ ସମୟ ନିଏ ବା ଆଜିର-କାମ-କାଲିକି-ପକାଇ ରଖିବାର କର୍ତ୍ତା ତାମସ ।

( ୨୯ )

ବୁଦ୍ଧେର୍ଭେଦଂ ଧୃତେଶ୍ଚୈବ ଗୁଣତସ୍ତ୍ରିବିଧଂ ଶୃଣୁ
ପ୍ରୋଚ୍ୟମାନ ମଶେଷେଣ ପୃଥକ୍‌ତ୍ୱେନ ଧନଂଜୟ ।୨୯।

[ହେ] ଧନଞ୍ଜୟ (ଅର୍ଜ୍ଜୁନ) ବୁଦ୍ଧେଃ ଧୃତେଃ ଚ (ବୁଦ୍ଧି ଏବଂ ଧୃତିର) ଗୁଣତଃ ଏବ (ଗୁଣାନୁଯାରେହିଁ) ତ୍ରିବିଧଂ ଭେଦଂ (ତିନିପ୍ରକାର (ଭେଦ) ପୃଥକ୍‌ତ୍ୱେନ (ପୃଥକ୍ ପୃଥକ୍ ରୂପେ) [ପୁଣି] ଅଶେଷେଣ (ସମଗ୍ର ଭାବରେ) ପ୍ରୋଚ୍ୟମାନଂ ଯାହା ଯେପରି କୁହା ଯାଉଛି) [ତାହା ମଧ୍ୟ] ଶୃଣୁ (ଶୁଣ) ।

ଅନୁବାଦ—

ହେ ଅର୍ଜ୍ଜୁନ, ବୁଦ୍ଧି ଓ ଧୃତି ମଧ୍ୟ ସେହିପରି ଗୁଣ ଭେଦରେ ତିନି ପ୍ରକାର, ସେମାନଙ୍କର ପୃଥକ୍ ପୃଥକ୍ ବର୍ଣ୍ଣନା ଶୁଣ ।

( ୩୦ )

ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ କାର୍ଯ୍ୟା କାର୍ଯ୍ୟା ଭୟାଭୟେ
ବନ୍ଧଂ ମୋକ୍ଷଂ ଚ ଯା ବେତ୍ତି ବୁଦ୍ଧିଃ ସା ପାର୍ଥ ସାତ୍ତ୍ୱିକୀ ।୩୦।

[ହେ] ପାର୍ଥ ( ଅର୍ଜ୍ଜୁନ ) ପ୍ରବୃତ୍ତିଂ ଚ ନବୃତ୍ତିଂ ଚ ( ପ୍ରବୃତ୍ତି ମୂଳକ କର୍ମ କ'ଣ ଓ ନିବୃତ୍ତି ମୂଳକ କର୍ମ କ'ଣ) [ବା] କାର୍ଯ୍ୟ କାର୍ଯ୍ୟେ ( କର୍ତ୍ତବ୍ୟ କର୍ମ ଓ ଅ-କର୍ତ୍ତବ୍ୟ କର୍ମ କ'ଣ ତାହା ବୁଝେଇ ଦେବାରେ) ଭୟାଭୟେ (କାହାକୁ ବା କେଉଁ ବିଷୟକୁ ଭୟ କରିବ, କାହାରବା ନିର୍ଭୟଚାର ସହିତ ସମ୍ମୁଖୀନ ହେବ) ବନ୍ଧ ମୋକ୍ଷଂଚ (କଅଣ ଆମକୁ ବନ୍ଧନରେ ବା ଦାସତ୍ୱରେ ପକାଇବ, କ'ଣ ବା ମୋକ୍ଷ ଅଥବା ସ୍ୱାଧୀନତା ଦେବ) [ଏସବୁ କଥା] ଯା ବେତ୍ତି (ଯାହା ଆମକୁ ଜଣାଇ ଦିଏ) ସା ବୁଦ୍ଧିଃ ସାତ୍ତ୍ୱିକୀ (ସେହିପ୍ରକାର ବୁଦ୍ଧିକୁହିଁ ସାତ୍ତ୍ୱିକ ବୁଦ୍ଧି ବୋଲି ଜାଣିବ)।

ଅନୁବାଦ—

ହେ ଅର୍ଜ୍ଜୁନ, ଯାହା କେଉଁ କେଉଁ କର୍ମରେ ଉତ୍ସାହର ସହିତ ଆମେ ପ୍ରବୃତ୍ତ ହେବା ଏବଂ କେଉଁ କେଉଁ କର୍ମରୁ ଏକାନ୍ତରେ ନବୃତ୍ତ ରହିବା, ଯାହା ମନୁଷ୍ୟର କର୍ତ୍ତବ୍ୟ ଓ ଅ-କର୍ତ୍ତବ୍ୟ କ'ଣ ବୁଝାଇ ଦିଏ, କେଉଁ ବିଷୟ ବା ଭବକୁ ଭୟ କରିବ, କାହରବା ନିର୍ଭୟ ସହିତ ସମ୍ମୁଖୀନ ହେବ, କିଏ ଆମକୁ ଦାସତ୍ୱ-ବନ୍ଧନରେ ପକେଇବ, କିଏ ଆମକୁ ମୁକ୍ତ ବା ସ୍ୱାଧୀନତା ଦେବ, — ଯେଉଁ ବୁଦ୍ଧି ଆମକୁ ଏଇ ସବୁ ମାର୍ଗ ବତାଇ ଦିଏ ତାହାହିଁ ସାତ୍ତ୍ୱିକ ବୁଦ୍ଧି ବୋଲି ଜାଣିବ।

( ୩୧ )

ଯୟା ଧର୍ମମଧର୍ମଂଚ କାର୍ଯ୍ୟଂଚାକାର୍ଯ୍ୟମେବଚ
ଅଯଥାବତ୍ ପ୍ରଜାନାତି ବୁଦ୍ଧିଃ ସା ପାର୍ଥ ରାଜସୀ ।୩୧

[ହେ] ପାର୍ଥ (ଅର୍ଜ୍ଜୁନ) ଯୟା (ଯେଉଁ ବୁଦ୍ଧି ଦ୍ୱାରା) ଧର୍ମଂ ଅଧର୍ମଂ ଚ କାର୍ଯ୍ୟଂ ଅକାର୍ଯ୍ୟଂ ଚ ଏବ (ଧର୍ମ ଓ ଅଧର୍ମ ଏବଂ କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ କର୍ମ) [ମନୁଷ୍ୟ ଦ୍ୱାରା] ଅଯଥାବତ୍ ପ୍ରଜାନାତି (ଅଯଥାର୍ଥ ଭବରେ ଜଣାଏ) ସା ବୁଦ୍ଧିଃ ରାଜସୀ (ସେ ବୁଦ୍ଧି ରାଜସୀ ବୋଲି ଜାଣିବ)।

ଅନୁବାଦ—

କିନ୍ତୁ ହେ ଅର୍ଜୁନ, ଯେଉଁ ବୁଦ୍ଧି ମନୁଷ୍ୟର ଧର୍ମ ଓ ଅଧର୍ମ ଏବଂ କର୍ତ୍ତବ୍ୟ ଓ ଅ-କର୍ତ୍ତବ୍ୟକୁ ଅଯଥାର୍ଥ ରୂପରେ ଉପସ୍ଥାପିତ କରଏ ତାହା ରାଜସିକ ବୋଲି ଜାଣିବ।

୩୨ )

ଅଧର୍ମଂ ଧର୍ମମିତି ଯା ମନ୍ୟତେ ତମସାବୃତା
ସର୍ବାର୍ଥାନ୍ ବିପରୀତାଂଶ୍ଚ ବୁଦ୍ଧିଃ ସା ପାର୍ଥ ତାମସୀ । ୩୨ ।

[ହେ] ପାର୍ଥ (ଅର୍ଜ୍ଜୁନ) ଯା (ଯେଉଁ ବୁଦ୍ଧି) ଅଧର୍ମଂ ଧର୍ମଂଇତି ମନ୍ୟତେ (ଅଧର୍ମ କଥାଗୁଡାକୁ ମଧ୍ୟ ଧର୍ମକାର୍ଯ୍ୟ ବୋଲି ମନେ କରେ) ସର୍ବାର୍ଥାନ୍ ବିପରୀତାନ୍ ଚ [ଏବଂ ସେହିପରି] (ବ୍ୟକ୍ତିଗତ—ପାରିବାରିକ—ସାମାଜିକ—ଜାତୀୟ ସକଳ ସମସ୍ୟାକୁ ଓଲଟା ବୁଝେ) ତମସାବୃତା (ମୂର୍ଖତା ରୂପକ ଅନ୍ଧକାର ଦ୍ୱାରା ଆବୃତ) ସା ବୁଦ୍ଧିଃ ତାମସୀ (ସେହି ବୁଦ୍ଧିକୁ ତାମସୀ ବୋଲି ଜାଣିବ) ।

## ଅନୁବାଦ—

ହେ ଅର୍ଜ୍ଜୁନ, ଯେଉଁ ଅଜ୍ଞତାବୃତ ବୁଦ୍ଧି ଯୋଗୁଁ ମନୁଷ୍ୟ ଅଧର୍ମକୁ ମଧ୍ୟ ଧର୍ମ ବୋଲି ମନେ କରେ ଏବଂ ଏହିପରି ବ୍ୟକ୍ତିଗତ—ପାରିବାରିକ-ସାମାଜିକ ଇତ୍ୟାଦି ସକଳ ଦାୟିତ୍ୱକୁ ଓଲଟା ବୁଝେ, ସେ ବୁଦ୍ଧି ନିଶ୍ଚିତ ଭାବରେ ତାମସିକ ।

## ବିଶେଷ ଭାଷ୍ୟ—

ଉପର୍ଯ୍ୟୁକ୍ତ ତିନୋଟି ଶ୍ଳୋକରୁ ପାଠକେ ବୁଝିପାରିବେ ଯେ, ରାଜସୀ ଓ ତାମସୀ ବୁଦ୍ଧି ପ୍ରାୟ ଏକା । ତାମସୀ ବୁଦ୍ଧି ଯେପରି ଅଧର୍ମକୁ ମଧ୍ୟ ଧର୍ମ ବୋଲି ମନେ କରାଇଥାଏ, ରାଜସୀ ବୁଦ୍ଧି ମଧ୍ୟ ସେହିପରି କାର୍ଯ୍ୟାକାର୍ଯ୍ୟ ଓ ଧର୍ମାଧର୍ମକୁ ଯଥାଯଥ ଭାବରେ ସ୍ପଷ୍ଟରୂପେ ଆମ ଆଗରେ ଥୋଇ ପାରେନାହିଁ । ଅର୍ଥାତ୍ ରାଜସୀ ବୁଦ୍ଧିରେ ଚାଳିତ ହେଲେ ମଧ୍ୟ ଆମେ ଅକାର୍ଯ୍ୟକୁ କାର୍ଯ୍ୟ ଓ ଅଧର୍ମକୁ ଧର୍ମ ବୋଲି ମନେକରି ମାତିଯିବାର ଆଶଂକା । ପ୍ରଭେଦ ଏତିକି ଯେ—ତାମସୀ ବୁଦ୍ଧି ହେଲା ଅଜ୍ଞତା- ପ୍ରସୂତ, ରାଜସୀ ବୁଦ୍ଧି ହେଲା ଅହଂକାର-ପ୍ରଭାବିତ କିନ୍ତୁ ପରିଣାମ ଉଭୟ କ୍ଷେତ୍ରରେ ସମାନ । ଗୀତା ତେଣୁ କେବଳ ସାତ୍ତ୍ୱିକୀ ବୁଦ୍ଧିରହିଁ ପ୍ରଶଂସା କରିଛନ୍ତି । ଆମେ ଯଦି ଆମର ପ୍ରକୃତି-ଦତ୍ତ ବୁଦ୍ଧି ବା ବିଚାର-ଶକ୍ତିକୁ ତାର କାମ କରିବାକୁ ତାକୁ ପରିପୂର୍ଣ୍ଣ ସ୍ୱାଧୀନତା ଦେବା ଏବଂ ଚିତ୍ତରେ ଅହଂଭାବ ବା ସ୍ୱାର୍ଥପରତାକୁ ଆଦୌ ସ୍ଥାନ ନ ଦେବା, ତେବେ ଆମ ଭିତରେ ସାତ୍ତ୍ୱିକୀ ବୁଦ୍ଧି ଆପେହିଁ ଆସ୍ତେ ଆସ୍ତେ ଜାଗ୍ରତ ହେବ । ଏହି ଅଧ୍ୟାୟର ଉପର ଶ୍ଳୋକ ଗୁଡକରେ ଓ ଭିନ୍ନ ଭିନ୍ନ ଅଧ୍ୟାୟରେ ମଧ୍ୟ, ଜ୍ଞାନ, ବୁଦ୍ଧି, ଜ୍ଞେୟ ଓ କର୍ମାଦିର ପ୍ରକାର ଓ ପ୍ରକୃତ ସବୁ ବର୍ଣ୍ଣନା କରି, ଗୀତା ଆମକୁ ସ୍ପଷ୍ଟ ସଂକେତ ଦେଇ ରଖିଛନ୍ତି ଯେ, ଆମେ କେଉଁଟାକୁ ଗ୍ରହଣ ଓ ପରିପୋଷଣ

କରିବା ଏବଂ ତାହାକୁ ପରିତ୍ୟାଗ କରିବା । ଗୀତାରେ, "ଯାହା ଅଛ ତାହାହିଁ ରହିବ"—ଅର୍ଥାତ୍ ନିଷ୍କର୍ମ ଭାଗ୍ୟବାଦୀତାର ସଂକେତ କୌଣସିଠାରେ ନାହିଁ । ଗୀତାଂକର ଉଦ୍ଦେଶ୍ୟ ଯଦି ନ ଥାନ୍ତା ଯେ ଆଜିର ତାମସୀ-ବୁଦ୍ଧି-ସଂପନ୍ନ-ଲୋକ କାଲି ସାତ୍ତ୍ୱିକୀ-ବୁଦ୍ଧି- ସଂପନ୍ନ ହୋଇପାରନ୍ତି; ତେବେ ଗୀତା ଏ ପ୍ରସଂଗ ଏପରି ବିସ୍ତୃତ ଭାବରେ ବର୍ଣ୍ଣନା କରି ନ ଥାନ୍ତେ ।

( ୩୩ )

ଧୃତ୍ୟା ଯୟା ଧାରୟତେ ମନଃ ପ୍ରାଣେନ୍ଦ୍ରିୟକ୍ରିୟ
ଯୋଗେନା ବ୍ୟଭିଚାରିଣ୍ୟା ଧୃତିଃ ସା ପାର୍ଥ ସାତ୍ତ୍ୱିକ

[ହେ] ପାର୍ଥ (ଅର୍ଜୁନ) ଅବ୍ୟଭିଚାରିଣ୍ୟା ଯୋଗେନ (ଐକାନ୍ତିକ, ଏକାଗ୍ର ଯୋଗ ଦେଇ) ଯୟା ଧୃତ୍ୟା (ଯେଉଁ ଧୈର୍ଯ୍ୟ ବା ଦୃଢ଼ଚିତ୍ତତା ଯୋଗେ) ମନଃ ପ୍ରାଣେନ୍ଦ୍ରିୟ-କ୍ରିୟାଃ (ମନ, ପ୍ରାଣ ଓ ଇନ୍ଦ୍ରିୟାଦି ମାନଂକର କ୍ରିୟା ସବୁକୁ) ଧାରୟତେ (ଠିକ୍ ମାର୍ଗରେ ଧରି ରଖାଯାଏ ବା ନିୟନ୍ତ୍ରିତ କରାଯାଇ ଥାଏ) ସା ଧୃତିଃ ସାତ୍ତ୍ୱିକୀ (ସେହି ଧୃତିକି ସାତ୍ତ୍ୱିକୀ କୁହାଯିବ) ।

ଅନୁବାଦ—

ହେ ଅର୍ଜୁନ, ଏକାଗ୍ର ଯୋଗ ଦେଇ ଯେଉଁ ଧୃତି ଆମର ଆତ୍ମା, ମନ ଓ ଇନ୍ଦ୍ରିୟ ଗ୍ରାମ ଏ ସମସ୍ତଂକୁ ଏକାଧାରରେ ନିୟନ୍ତ୍ରିତ କରି ରଖିପାରେ ତାହାହିଁ ସାତ୍ତ୍ୱିକୀ ଧୃତି ।

ବିଶେଷ ଭାଷ୍ୟ—

ଗୀତାରେ 'ଧୃତି' ଶବ୍ଦ ଆଗରୁ ବହୁ ସ୍ଥାନରେ ବ୍ୟବହୃତ ହୋଇ ସାରିଛି । ଦଶମ ଅଧ୍ୟାୟରେ ଆଦର୍ଶ ମନୁଷ୍ୟର ଯେଉଁ ସେହି ସ୍ପୃହଣୀୟ ଗୁଣ ଯାହା ସ୍ୱୟଂ ଈଶ୍ୱରଂକର ପ୍ରକାଶ ବୋଲି ମନେ କରିବାକୁ ହେବ, ସେମାନଂକ ମଧ୍ୟରେ ସ୍ଥାନ ପାଇଛି ଧୃତି—ସ୍ମୃତିର୍ମେଧାଧୃତିଃ କ୍ଷମା(୧୦।୩୪) ଧୃତି ହେଉଛି ମନୁଷ୍ୟର ସେହି ଗୁଣ ଯାହା ମନୁଷ୍ୟକୁ କୌଣସି ଏକ ଆଦର୍ଶରେ ଅଟଳ ଓ ଅବିଚଳିତ ରଖେ । ସେଥିପାଇଁ ଷଷ୍ଠ ଅଧ୍ୟାୟରେ ଗୀତା ଏହାକୁ ଅଧ୍ୟାତ୍ମସାଧନାର ଏକ ଉପାୟ ରୂପେ ନିର୍ଦ୍ଦେଶ କରି ସାରିଛନ୍ତି— ଶନୈଃ ଶନୈରୁପ— ରମେଦ୍ ବୁଦ୍ଧ୍ୟା ଧୃତି ଗୃହୀତୟା(ଧୃତସଂପନ୍ନ ବୁଦ୍ଧି ଦ୍ୱାରାହିଁ ସାଧକ ଆସ୍ତେ ଆସ୍ତେ ଅନାସକ୍ତି ଆଡକୁ ଅଗ୍ରସର ହେବେ) । କିନ୍ତୁ ଆଧ୍ୟାତ୍ମିକ ସାଧନା କହ ବା ପାର୍ଥିବ ସାଧନା କହ

ସେଥିରେ ଆମର ପ୍ରଧାନତମ ବାଧା ହେଲା ଆମର ନିଜ ମନ । ମନର ଦୁର୍ବଳତା ହେଲା ଅହରହ ଏଣେତେଣେ ଖଣ୍ଡଆଡେ ଧାଇଁବା । ଆଧ୍ୟାତ୍ମିକ ବା ପାର୍ଥିବ ଯେ କୌଣସି ସିଦ୍ଧି ପାଇଁ, ତେଣୁ ଆଦ୍ୟ ଆବଶ୍ୟକତା ହେଲା ମନକୁ ଏକମୁଖୀ କରାଇବା । ଏଥିରେ ବୁଦ୍ଧିହିଁ ବିଶେଷ ସାହାଯ୍ୟ କରେ । ବୁଦ୍ଧି, ମନର ସେହି ସୂକ୍ଷ୍ମ ଅଂଶ, ଯାହା କ'ଣ ଉଚିତ, କ'ଣ ଅନୁଚିତ ତାହା ବାରମ୍ବାର ସ୍ମରଣ କରି, ମନକୁ ଠିକ୍ ରାସ୍ତାରେ ଚଳାଏ । କିନ୍ତୁ ମନ ସ୍ୱଭାବତଃ ଚଂଚଳ । ଗୀତା ସାଧାରଣ ମନୁଷ୍ୟ ଭିତରେ ଏହି ପରମ ଦୁର୍ବଳତା ଦେଖିହିଁ କହିଛନ୍ତି— ଅସଂଶୟଂ ମହାବାହୋ ମନୋ ଦୁର୍ନିଗ୍ରହଂ ଚଳଂ (ହେ ମହାବାହୁ ଅର୍ଜୁନ, ମନୁଷ୍ୟର ମନ ଯେ ଚଂଚଳ ଏବଂ ସହଜରେ ନିୟନ୍ତ୍ରଣ ମାନେ ନାହିଁ, ଏଥିରେ ଆଦୌ ସଂଦେହ ନାହିଁ) । ମନକୁ ନିୟନ୍ତ୍ରିତ କରାଇବା ବା ଏକମୁଖୀ କରାଇବା ଦିଗରେ ବୁଦ୍ଧିର ବିଶ୍ଳେ-ଷଣା ଯେପରି ସାହାଯ୍ୟ କରେ, ତା'ଠୁ ଅଧିକ ସାହାଯ୍ୟ ଦେବାର କଥା ଧୃତି— ଏହା ଆମ ମାନସିକ ଶକ୍ତିର ସେହି ଗୁଣ ଯାହା ଆମ ବୁଦ୍ଧି ସାହାଯ୍ୟରେ ବୁଝି ସାରିବି କୌଣସି କର୍ମ ଆମେ ଥରେ କରଣୀୟ' ବୋଲି ଗ୍ରହଣ କରିନେଲେ, ଆଉ ତାକୁ ଛାଡ଼ିବନି,—ଅର୍ଥାତ୍ ନିଷ୍ଠା । ଜଗତରେ ଯେ କୌଣସି ସିଦ୍ଧିବନ୍ତ ଲୋକର ଜୀବନୀ ଆଲୋଚନା କଲେ ଆମେ ନିଶ୍ଚୟ ଦେଖିବା ଯେ, ତାଂକର ସିଦ୍ଧି ସେ ପାଇଛନ୍ତି କେବଳ "ଧୃତି ଯୁକ୍ତ ବୁଦ୍ଧି" ସାହାଯ୍ୟରେ ।

ଆଜି ଭାରତୀୟମାନଂକ ଭିତରେ ଯେଉଁ ପରିବ୍ୟାପ୍ତ ଅଧଃପତନ ଦେଖା ଦେଇଛି, ତାର ଦୁଃଖଦାୟକ ନିଦାନ କେବଳ ଏହି ଦୁଇଟି ମହାନ୍ ଗୁଣର ଅଭାବ । ପାଠକେ, ଆମେ ଆଜି ଏକ ଚିନ୍ତାହୀନ, କୁସଂସ୍କାର-ଗ୍ରସ୍ତ ଓ ମାନସିକ ଶାରୀରିକ ଜଡ଼ତାକ୍ରାନ୍ତ ଜାତି । ଆମେ ଈଶ୍ୱର-ଦତ୍ତ 'ବୁଦ୍ଧି'କୁ ଉଜ୍ଜ୍ୱଳିତ-ଜାଗ୍ରତ କରିବାକୁ ଉତ୍ସାହୀ ନୋହୁଁ, କି ଆମର ପାର୍ଥିବ ସିଦ୍ଧିମାନଂକ ପାଇଁ ବି ଆମଠାରେ କୌଣସି 'ଧୃତି' ପରିଲକ୍ଷିତ ହୁଏନାହିଁ (ହେଉ ପଛେ ତାହା ରାଜସିକ) । ଆଧ୍ୟାତ୍ମିକ ସିଦ୍ଧିପାଇଁ ଧୃତି(ଅର୍ଥାତ୍ ସାତ୍ତ୍ୱିକୀ ଧୃତି) କଥା କିଏ ପଚାରେ ? ପାଶ୍ଚାତ୍ୟ ସମାଜରେ ଜୀବନର ସକଳ ବିଭାଗରେ ଶୀର୍ଷସ୍ଥାନ ଅଧିକାର କରିଥିବା ଏପରି ଅଗଣିତ ଲୋକଂକୁ ଆମେ ଭେଟିବା, ଯେ କି ତଳୁ ଉଠିଉଠି ଆସିଛନ୍ତି । ଭାରତବର୍ଷରେ ଏ ଦୃଶ୍ୟ ଏକାନ୍ତ ବିରଳ । ଏଠି ସମସ୍ତେ ଚାହାନ୍ତି, ବିନା ଶ୍ରମ ଓ ବିନା ସାଧନାରେ କେବଳ ଧନୀ ବା ମନ୍ତ୍ରୀ ହେବେନି, ସମାଜରେ ସମ୍ମାନିତ ମଧ୍ୟ ହେବେ ପଣ୍ଡିତ ଭବରେ । ଏଠି ନିଷ୍ଠାରେ ଆଉ କାହାର ବିଶ୍ୱାସ ନାହିଁ । ବିଶ୍ୱାସ କେବଳ ଧରାଧରି ଓ ଠେଲା ପେଲାରେ । ଅସମ୍ଭବ ତେଣୁ ଏପରି ଏକ ଅଧଃପତିତ ଜାତିର ଅଭ୍ୟୁଦୟ ।

( ୩୪ )

ଯୟା ତୁ ଧର୍ମକାମାର୍ଥାନ୍ ଧୃତ୍ୟା ଧାରୟତେଽର୍ଜ୍ଜୁନ
ପ୍ରସଂଗେନ ଫଳାକାଂକ୍ଷୀ ଧୃତିଃ ସା ପାର୍ଥ ରାଜସୀ ।୩୪।

[ହେ] ପାର୍ଥ (ଅର୍ଜ୍ଜୁନ) [ମନୁଷ୍ୟ] ଯୟା ଧୃତ୍ୟା (ଯେଉଁ ଧୃତିଦ୍ୱାରା) ଧର୍ମକାମାର୍ଥାନ୍ ଧାରୟତେ (ଧର୍ମ, କାମ ଓ ଅର୍ଥକୁ ଧରି ରଖେ) [ଏବଂ] ପ୍ରସଂଗେନ ଫଳାକାଂକ୍ଷୀ (ଆସକ୍ତି ଅନୁସାରେ ଫଳାଭିଳାଷ ଜାଗ୍ରତ କରାଏ) ସା ରାଜସୀ ଧୃତ (ତାହା ରାଜସୀ ଧୃତି) ।

ଅନୁବାଦ—

ହେ ଅର୍ଜ୍ଜୁନ, ଯେଉଁ ଧୃତି ବା ନିଷ୍ଠା ମନୁଷ୍ୟକୁ ଅନ୍ତତଃ ଧର୍ମ (ସାମାଜିକ କର୍ତ୍ତବ୍ୟ) କାମ (ଜୈବିକ, ସାମାଜିକ ଅଭିଳାଷ ସବୁ) ଓ ଅର୍ଥକୁ ଧରି ରଖିବାରେ (ସ୍ଥାୟୀ ରଖିବାରେ) ସାହାଯ୍ୟ କରେ ଏବଂ ଚିତ୍ତକୁ ପ୍ରାସଂଗିକ ଭାବରେହିଁ ଫଳାଭିଳାଷୀ ରଖେ, (ଅର୍ଥାତ୍ ଅଯଥାର୍ଥ ଫଳାଭିଳାଷରେ ଚିତ୍ତକୁ ବିଭ୍ରାନ୍ତ କରାଏ ନାହିଁ) ତାହା ରାଜସିକ ବୋଲି ମନେ କରିବ ।

ବିଶେଷ ଭାଷ୍ୟ—

ସାଧାରଣ ହିନ୍ଦୁର ଶାସ୍ତ୍ରନିର୍ଦ୍ଦିଷ୍ଟ ଜୀବନ-ଲକ୍ଷ୍ୟ ହେଲା ଚାରିଟି—ଅର୍ଥ, କାମ, ଧର୍ମ, ମୋକ୍ଷ । ସଂସାରରେ ରହିଲେ ଆମ ପ୍ରତ୍ୟେକଂକୁ ନିଜର ବଞ୍ଚି ରହିବାପାଇଁ ଅର୍ଥାର୍ଜନ କରିବାକୁ ହେବ । ଗୀତା, କୌଣସିଠାରେ ଆମକୁ ନଜ ନଜର ବ୍ୟକ୍ତିତ୍ୱର ସମ୍ମାନକୁ ଅକୁଣ୍ଠିତ ଭାବରେ ପଦଦଳିତ କରି, ପରନିର୍ଭରତା ବା ଭିକ୍ଷାବୃତ୍ତି ଶିଖାଇ ନାହାନ୍ତି—ଯାହାକି ଏଥିମଧ୍ୟରେ ଭାରତବର୍ଷରେ ଜାତୀୟ-ସଂସ୍କାର ହୋଇ ଉଠିଛି । ଅଧିକନ୍ତୁ ଗୀତା ଚାହାନ୍ତିନି ଯେ, ଆମେ କେବଳ ଯେକୌଣସିମତେ ବଂଚିରହୁ, ଗୀତା ଚାହାଁନ୍ତି ଯେ, ଆମେ ଭଲ ଭାବରେ ବଂଚି ରହୁ—ପ୍ରତ୍ୟହ ପୁଷ୍ଟିଦାୟକ ସାତ୍ତ୍ୱିକ ଅର୍ଥାତ୍ ସୁଷମ ଖାଦ୍ୟ ଖାଇହିଁ ବଂଚୁ । ବାସି ପଖାଳ-ଲୁଣ ଲଂକା ବା ଶୁଖୁଆ ପୋଡା ପରି, ଗୀତାଂକ ଦ୍ୱାରା-ନନ୍ଦିତ ତାମସିକ ଖାଦ୍ୟ ଖାଇ କୌଣସିମତେ ବଂଚି ରହିବାକୁ ଗୀତା କୌଣସିଠି ସାମାନ୍ୟ ହେଲେ ସୂଚନା ଦେଇ ନାହାନ୍ତି । ନଚେତ୍ ଗୀତା ବାରଂବାର ଅର୍ଜ୍ଜୁନଂକୁ "ଉଠ""ଯୁଦ୍ଧ କର""ରାଜ୍ୟ ଭୋଗକର""ଶତ୍ରୁ ନାଶକର" ଇତ୍ୟାଦି ସଂପୂର୍ଣ୍ଣ ରାଜସିକ ଉତ୍ତେଜନା ଦେଇ ନଥାନ୍ତେ । ଅବଶ୍ୟ ଗୀତା ଏସବୁ

ଯୋଗ ତଳେ 'ନିରାସକ୍ତି' ଓ 'ନିରହଂକାର'କୁ ଜାଗ୍ରତ ରଖିବାକୁ ମଧ୍ୟ ଉପଦେଶ ଦେଇ ଆସିଛନ୍ତି । ଯେ ପ୍ରକୃତରେ ନିରାସକ୍ତ ଓ ନିରହଂକାର ଅଥଚ ଆନ୍ତରିକତାର ସହିତ 'ଲୋକସଂଗ୍ରହକାରୀ' (ଜନକଲ୍ୟାଣକାରୀ), ସେ "ଯଦୃଚ୍ଛା ଲାଭ ସନ୍ତୁଷ୍ଟଃ" ହୋଇ ରହିଲେହେଁ, ଦେଶ ଓ ସମାଜ ଯେ ତାଂକର ଉତ୍ତମ ରକ୍ଷଣା-ବେକ୍ଷଣ କରିବ, ଏହା ସବୁ ଦେଶ ଓ ଧର୍ମର ପୁରୋହିତ ଓ ସନ୍ନ୍ୟାସୀ ସଂପ୍ରଦାୟର ଜୀବନ-ଯାପନ-ପ୍ରଣାଳୀରୁ ପାଠକେ ବୁଝିପାରିବେ । 'ଭାରତୀୟ କୃଷକ'ର ବେଶ ଧାରଣ କରିଥିଲେହେଁ ଏବଂ ସତ୍ୟରେ ଦରିଦ୍ର ଭାରତୀୟ କୃଷକର ଦୈନ୍ୟ -ଦୁଃଖ କଥା ସେ ସବୁବେଳେ ଭାବୁଥିଲେ ହେଁ ମୋହନ ଦାସ କରମଚାନ୍ଦ ଗାନ୍ଧିର ଦୈନନ୍ଦିନ ଜୀବନ ବା ଖାଦ୍ୟ କ'ଣ ଭାରତୀୟ କୃଷକର ଜୀବନ ବା ଖାଦ୍ୟ ପରି ଥିଲା ? ଇଂରେଜ ସାଂବାଦିକମାନେ ମଧ୍ୟ କହିଛନ୍ତି ଯେ, କୌପୀନ-ବନ୍ତ ଗାନ୍ଧି ପାଖରେ ବସିଲେ ବା ଠିଆହେଲେ, ସେମାନଂକର ଚେତନାରେ ଅବବୋଧ ହେଉଥିଲା ଯେପରିକି ସେମାନେ ଜଣେ ରଜା ବା ସମ୍ରାଟର ଉପସ୍ଥିତିରେ ଅଛନ୍ତି ଏବଂ ଭାରତର ଇଂରେଜ ବଡ଼ଲାଟ ଠିକ୍ ଯେପରି ସେକ୍ରେ-ଟାରି- ପରିଷଦ୍‌ବର୍ଗ-ବେଷ୍ଟିତ ହୋଇ ଘଣ୍ଟା କଣ୍ଟା ଧରି ଚାଲୁଥିଲେ, କୁଟୀର ବାସୀ ଗାନ୍ଧି ମଧ୍ୟ ଠିକ୍ ସେହି ଥାଟରେ ବଂଚୁଥିଲେ ଅଥଚ ଆଧ୍ୟାତ୍ମିକତାରେ ସେ ଥିଲେ ଜୀବନ୍ତ ଗୀତା । ତେଣୁ ପାଠକେ ଧରନେବାର କୌଣସି ଯୁକ୍ତି ନାହିଁ ଯେ ଗୀତା ଆମକୁ ଦୀନ ଦରିଦ୍ର ବା ପରମୁଖାପେକ୍ଷୀ, ଭିକ୍ଷାନ୍ନଜୀବୀ ଜୀବନ ଯାପନ କରିବାକୁ ଚାହାନ୍ତି । ଗୀତା ଚାହାନ୍ତି ଅର୍ଥ ଓ କାମର ଯଥାଯଥ ପରିପୋଷଣ ଭିତରେ ଆମେ ସ୍ୱାଭାବିକ ଜୀବନ ଯାପନ କରୁ । ଅର୍ଥ ଓ କାମ ପରି, ଧର୍ମ ଓ ମୋକ୍ଷ ମଧ୍ୟ ଏହି ସ୍ୱାଭାବିକ ହିନ୍ଦୁ ଜୀବନାଦର୍ଶର ଅପରିହାର୍ଯ୍ୟ ଅଂଶ ।

ଭଗବଦ୍‌ଗୀତାରେ ବଂଚିବାଟା ଯେଉଁ ଗୋଟିଏ ଶବ୍ଦରେ ପ୍ରକାଶ ପାଏ, ତା' ହେଲା 'କାମ'—ଆମର ଭିନ୍ନ ଭିନ୍ନ ବାସନାସବୁ । କିନ୍ତୁ ସେସବୁ ବାସନା ସର୍ବଦା, ଧର୍ମଯୁକ୍ତ ରହିବା ଉଚିତ । ତାହାହିଁ କେବଳ ଗୀତାର ଆଦର୍ଶ ।

ରାଜସିକ ଧୃତିଦ୍ୱାରା ଏହିପ୍ରକାର ଉତ୍ତମ ପାର୍ଥିବ ଜୀବନ ସମ୍ଭବ ହେବ । ଦେଖିବାର କଥା ଯେ, ଗୀତା ଏଠାରେ 'ମୋକ୍ଷ' ଶବ୍ଦ ଆଦୌ ଉଚ୍ଚାରଣ କରି ନାହାନ୍ତି । କାରଣ ତାହାପାଇଁ ଦରକାର "ସାତ୍ତ୍ୱିକ" ଧୃତି । ତେଣୁ ବୁଝିବାକୁ ହେବ, "ଯେ ଧର୍ମଯୁକ୍ତ ରାଜସିକ ଧୃତି"ସଂପୂର୍ଣ୍ଣ ଗୀତାନୁମୋଦିତ, କାରଣ ଉତ୍ତମ ପାର୍ଥିବ ଜୀବନ ଯାପନ ପାଇଁ ତାହା ଏକାନ୍ତ ଆବଶ୍ୟକ । 'ଧର୍ମଯୁକ୍ତ' ହୋଇଥିଲେ ରାଜସିକ ଧୃତି ମଧ୍ୟ ଆମର ଆଦୌ କ୍ଷତିକାରକ ହେବନାହିଁ ଏବଂ 'ପ୍ରାସଂଗିକ ଫଳାଭିଳାଷ' ମଧ୍ୟ ଏକାନ୍ତ ଗର୍ହଣୀୟ ନୁହେଁ । କେବଳ ଖରାପ କାମରେ ଧୃତି, ଅର୍ଥାତ୍ ତାମସିକ ଧୃତିହିଁ ସର୍ବଥା ବର୍ଜନୀୟ ।

( ୩୫ )

ଯୟା ସ୍ୱପ୍ନଂ ଭୟଂ ଶୋକଂ ବିଷାଦଂ ମଦମେବଚ
ନ ବିମୁଂଚତି ଦୁର୍ମେଧା ଧୃତିଃ ସା ପାର୍ଥ ତାମସୀ ।୩୫।

[ହେ] ପାର୍ଥ (ଅର୍ଜ୍ଜୁନ) ଦୁର୍ମେଧାଃ (ମନ୍ଦ ବୁଦ୍ଧି ଲୋକ) ଯୟା ସ୍ୱପ୍ନଂ ଭୟଂ ଶୋକଂ ବିଷାଦଂ ମଦଂ ଏବ ଚ (ନିଦ୍ରାଳୁତା, ଭୟ, ଶୋକ, ବିଷାଦ, ଓ [ତଥାପି] ଗର୍ବ) ନ ମୁଂଚତି (ପରିତ୍ୟାଗ କରିପାରେ ନାହିଁ) ସା ଧୃତିଃ ତାମସୀ (ସେହି ଧୃତି ତାମସୀ ବୋଲି ମନେ କରିବ) ।

**ଅନୁବାଦ—**

ହେ ଅର୍ଜ୍ଜୁନ, ଯେଉଁ ଧୃତି ମନୁଷ୍ୟକୁ ନିଦ୍ରାଳୁତା, ଭୟାଳୁତା, ଶୋକାକୁଳତା, ଅବସାଦ ଏବଂ ତଥାପି ଗର୍ବହିଁ ଦେଇ ରଖେ, ତେବେ ଜାଣିବ ଯେ ସେ ଲୋକ ଅଳ୍ପ ବୁଦ୍ଧି ଏବଂ ତାର ଧୃତି ତାମସିକ ।

**ବିଶେଷ ଭାଷ୍ୟ—**

ପାଠକେ ଜୁଆଡ଼ିଆ, ମଦୁଆ, ଅଫିମିଆ, ଗଂଜେଇୟା, ହିଂସୁକୁଟିଆ, ସ୍ତ୍ରୈଣ ବା ଯୌନ-ବ୍ୟଭିଚାରପରାୟଣ ଲୋକଂକ କଥା ମନେ ପକେଇଲେ ଗୀତାର ଏହି ତାମସୀ ଧୃତିର ତାତ୍ପର୍ଯ୍ୟ ବୁଝିପାରିବେ । ଏହି ଅଭିଶପ୍ତ ଶ୍ରେଣୀର ଲୋକେ ସଂପୃକ୍ତ ମନ୍ଦ ଧୃତି (ଅଭ୍ୟାସ) ଯୋଗୁଁ ବାରଂବାର ଦୁର୍ଦ୍ଦଶା ଭୋଗୁଥିଲେହେଁ ସେମାନେ ତାହା ଛାଡ଼ି ପାରନ୍ତି ନାହିଁ । ସମୂଳେ ନଷ୍ଟ ହୁଅନ୍ତି ପଛକେ, ସେହି ଦୁରଭ୍ୟାସଗୁଡ଼ିକୁ ଛାଡ଼ି ପାରନ୍ତି ନାହିଁ । ଯେ କୌଣସି ଖରାପ ଅଭ୍ୟାସର କବଳରେ ପଡ଼ିଗଲେ, ଗୀତାର ଏହି ଶ୍ଳୋକ ବର୍ଣ୍ଣିତ, ଭୟ, ନିଦ୍ରାଳୁତା ବା ଆଳସ୍ୟ, ଏବଂ ବିଷଣ୍ଣତା ଆଦି ଯେ ଚରିତ୍ରଗତ ହୋଇ ଉଠିବ, ଏଥିରେ ସନ୍ଦେହ ନାହିଁ । ଚରିତ୍ରକୁ ଏସବୁ ଦେଖାଦେବା ମାନେ ମନୁଷ୍ୟର 'ମନୁଷ୍ୟତ୍ୱ' ବା 'ପୁରୁଷତ୍ୱ' ଗଲା ବୋଲି ଜାଣ । ତେଣୁ ପାଠକେ ଗୀତାଂକର ଉପଦେଶର ଯାଥାର୍ଥ୍ୟ ଅନୁଭବ କରିବେ ବୋଲି ଆଶା ।

ଉପରେ ତ କୁହାଯାଇଛି ଯେ, ଗୀତା ଚାହାନ୍ତି ଆମେ ସୁଖମୟ, ଆନନ୍ଦମୟ, ଚରିତାର୍ଥତାମୟ, କୃତକୃତ୍ୟତାମୟ ଜୀବନହିଁ ଯାପନ କରୁ । ପାଠକେ ତେଣୁ ପଚାରି ପାରନ୍ତି ଜୀବନର 'ସୁଖ' ବା 'ଆନନ୍ଦ' କହିଲେ ଗୀତା କ'ଣ ବୁଝନ୍ତି ? ମନୁଷ୍ୟକୁ ଅମନୁଷ୍ୟ କରିପକାଉଥିବା, ତାର ଜୀବନକୁ

ଦୁଃଖମୟ କରୁଥିବା ଦୋଷଗୁଡକ ଉପରେ ବର୍ଣ୍ଣନା କରିସାରିବା ପରେ, ଗୀତା ବର୍ତ୍ତମାନ ତାର ଜୀବନକୁ କଣ ସୁଖମୟ କରିବ ତାର ବର୍ଣ୍ଣନା ଦେଉଛନ୍ତି ।

( ୩୬ )

ସୁଖଂ ତ୍ୱିଦାନୀଂ ତ୍ରିବିଧଂ ଶୃଣୁ ମେ ଭରତର୍ଷଭ
ଅଭ୍ୟାସାଦ୍ ରମତେ ଯତ୍ର ଦୁଃଖାନ୍ତଂ ଚ ନିଗଚ୍ଛତି । ୩୬ ।

[ହେ] ଭରତର୍ଷଭ (ଅର୍ଜ୍ଜୁନ) ଇଦାନୀଂ (ବର୍ତ୍ତମାନ) ତ୍ରିବିଧଂ ସୁଖଂ ମେ ଶୃଣୁ ( ତିନିପ୍ରକାର ସୁଖ କ'ଣ ତାହା ମୋଠାରୁ ଶୁଣ ) ଅଭ୍ୟାସାତ୍ ରମତେ ( ଯାହା ଅଭ୍ୟାସ କଲେ ଜୀବନ ଆନନ୍ଦମୟ ହୋଇ ରହେ ) ଯତ୍ର ଦୁଃଖାନ୍ତଂ ଚ ନିଗଚ୍ଛତି ( ଏବଂ ଯେଉଁଠି ଦୁଃଖ ମଧ୍ୟ ପଳାୟନ କରେ )

ଅନୁବାଦ—

ହେ ଅର୍ଜ୍ଜୁନ, ଏ ଜଗତରେ ସୁଖ ମଧ୍ୟ କିପରି ତ୍ରିବିଧ ତାହା ଶୁଣ, ଯାହା ଅନୁଯାୟୀ ଅଭ୍ୟାସ କଲେ ଜୀବନ ସୁଖପୂର୍ଣ୍ଣ ଓ ଦୁଃଖଶୂନ୍ୟ ହେବ ।

( ୩୭ )

ଯତ୍ ତଦଗ୍ରେ ବିଷମିବ ପରିଣାମେଽମୃତୋପମଂ
ତତ୍ ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତମାତ୍ମବୁଦ୍ଧିପ୍ରସାଦଜଂ । ୩୭ ।

ଯତ୍ ତତ୍ ( ଯାହା ଯାହା ) ଅଗ୍ରେ ବିଷମିବ ( ଆରମ୍ଭରେ ବିଷପରି ଅସ୍ୱାଦ୍ୟ ବା ଅଗ୍ରହଣୀୟ ) [ କିନ୍ତୁ ] ପରିଣାମେ ଅମୃତୋପମଂ ( ଯାର ପରିଣତି ହୁଏ ଅମୃତ ତୁଲ୍ୟ ) [ ଏବଂ ଯାହା ] ଆତ୍ମବୁଦ୍ଧି ପ୍ରସାଦଜଂ ( ଆତ୍ମ-ଜ୍ଞାନ ବା ଆଧ୍ୟାତ୍ମିକ ଜ୍ଞାନର ପ୍ରସନ୍ନତାରୁ ଜାତ ହୋଇଥାଏ ) ତତ୍ ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତଂ ( ସେହି ସୁଖକୁହିଁ ସାତ୍ତ୍ୱିକ କୁହାଯାଇଥାଏ ) ।

ଅନୁବାଦ—

ହେ ଅର୍ଜ୍ଜୁନ, ଯାହା ଆଦ୍ୟରେ ବିଷପରି ପରିତ୍ୟାଜ୍ୟ ବା ଅଗ୍ରହଣୀୟ ବୋଧ ହେଲେହେଁ ପରିଣାମ ଯାର ଅମୃତ ତୁଲ୍ୟ କଲ୍ୟାଣକର ଓ ସୁଖଦାୟକ ଏବଂ ଯାହା ଆଧ୍ୟାତ୍ମିକ ପ୍ରସନ୍ନତାରୁହିଁ ଉପଜାତ ହୋଇଥାଏ, ସେହି ସୁଖହିଁ ସାତ୍ତ୍ୱିକ ବୋଲି ଜାଣିବ ।

( ୩୮ )

ବିଷୟେନ୍ଦ୍ରିୟ ସଂଯୋଗାଦ୍ ଯତ୍ତଦଗ୍ରେଽମୃତୋପମଂ
ପରିଣାମେ ବିଷମିବ ତତ୍ ସୁଖଂ ରାଜସଂ ସ୍ମୃତଂ । ୩୮ ।

ବିଷୟେନ୍ଦ୍ରିୟ ସଂଯୋଗାତ୍ ( ସାଂସାରିକ ବିଷୟମାନଙ୍କ ସହିତ ଆମର ଇନ୍ଦ୍ରିୟମାନଙ୍କର ସଂଯୋଗରୁ ) ଯତ୍ତତ୍ ( ଯେଉଁ ଯେଉଁ ସୁଖ ) ଅଗ୍ରେ ଅମୃତୋପମଂ ( ଆଦ୍ୟରେ ଅମୃତ ପରି ଲାଗେ ) [ କିନ୍ତୁ ] ପରିଣାମେ ବିଷଂଇବ ( ଶେଷରେ ବିଷପରି କାମ କରିଥାଏ ) ତତ୍ ସୁଖଂ ( ସେହି ସୁଖ ) ରାଜସଂସ୍ମୃତଂ ( ରାଜସ ବୋଲି ମନେ କରିବ ) ।

ଅନୁବାଦ—

ହେ ଅର୍ଜୁନ, ଆମର ଇନ୍ଦ୍ରିୟମାନଙ୍କର ସାଂସାରିକ ବିଷୟମାନଙ୍କ ସହିତ ସଂସ୍ପର୍ଶ ହେତୁ ସଦା ସଦା ଯେଉଁ ଅମୃତବତ୍ ପ୍ରତୀୟମାନ ସୁଖ ମିଳିଯାଏ, କିନ୍ତୁ ଆମପାଇଁ ଯାହାର ପରିଣାମ ହୁଏ ବିଷତୁଲ୍ୟ, ତାହା ରାଜସ ସୁଖ ବୋଲି ଜାଣିବ ।

( ୩୯ )

ଯଦଗ୍ରେ ଚାନୁବନ୍ଧେ ଚ ସୁଖଂ ମୋହନ ମାତ୍ମନଃ
ନିଦ୍ରାଳସ୍ୟ ପ୍ରମାଦୋତ୍ଥଂ ତତ୍ତାମସମୁଦାହୃତଂ । ୩୯ ।

ଯତ୍ ଚ ସୁଖଂ ( ଯେଉଁ ସୁଖ ) ଅଗ୍ରେ ଅନୁବନ୍ଧେଚ ( ଉଭୟ ଆରମ୍ଭ ଓ ପରିଣାମରେ ) ଆତ୍ମନଃ ମୋହନଂ ( ବ୍ୟକ୍ତିର ମୋହଜନକ ) [ ଏବଂ ଯାହା ସାଧାରଣତଃ ] ନିଦ୍ରାଳସ୍ୟ ପ୍ରମାଦୋତ୍ଥଂ ( ନିଦ୍ରା, ଆଳସ୍ୟ ଓ ଅନବଧାନତାରୁ ଉତ୍ପନ୍ନ ହୋଇଥାଏ ) ତତ୍ ( ସେହି ସୁଖ ) ତାମସଂ ଉଦାହୃତଂ ( ତାମସ ବୋଲି କୁହାଯାଇଥାଏ ) ।

ଅନୁବାଦ—

ହେ ଅର୍ଜୁନ, ଯାହା ଆରମ୍ଭରୁ ଶେଷଯାଏ ମନୁଷ୍ୟକୁ କେବଳ ମୋହଗ୍ରସ୍ତ ବା ବିସ୍ମୃତ ବୁଦ୍ଧିହୀନ କରିରଖେ, ଏବଂ ସାଧାରଣତଃ ଯାହା ନିଦ୍ରା, ଆଳସ୍ୟ ଓ ଦୁର୍ବୁଦ୍ଧି-ପ୍ରବଣତାରୁହିଁ ଜାତ ହୋଇଥାଏ, ସେ ସୁଖକୁ ତାମସିକ ସୁଖ ବୋଲିହିଁ ଜାଣିବ ।

**ବିଶେଷ ଭାଷ୍ୟ—**

ପାଠକେ ଧରିନେବେ ଯେ, ଆମର ଇନ୍ଦ୍ରିୟଗତ ସୁଖ ସବୁ ସାଧାରଣତଃ ରଜସିକ ସୁଖ । ଏ ସୁଖସବୁ ବାହ୍ୟ ସ୍ପର୍ଶରୁହିଁ ଆସେ । ସେ ସ୍ପର୍ଶ ଯେତେବେଳ ଯାଏ ଥିବ, ସେ ସୁଖ କେବଳ ସେତେକି ସମୟ ସ୍ଥାୟୀ । ପାନ, ଭୋଜନ ଓ ଯୌନସୁଖାଦି ଏହି ଶ୍ରେଣୀର । ଗୀତା ବହୁ ପୂର୍ବରୁ କହି ପାରିଛନ୍ତି "ଯେହି ସଂସ୍ପର୍ଶଜାଃ ଭୋଗାଃ ଦୁଃଖଯୋନୟଃ ଏବ ତେ" ( ବାହ୍ୟ ସ୍ପର୍ଶଜନିତ ଭୋଗ ସବୁ ପରିଣାମରେ ଦୁଃଖଜନକହିଁ ହୋଇଥାନ୍ତି; ଗୀତା ୫।୨୨ ) ତେଣୁ ଗୀତା ଏ ପ୍ରକାର ସୁଖମାନଙ୍କ ସମ୍ପର୍କରେ ବରବର ସାବଧାନ ରହିବାକୁ ଆମକୁ ଉପଦେଶ ଦେଇ ଆସିଛନ୍ତି । ଗୀତା ଆମକୁ ଶୋଇବାକୁ ବା ଖାଇବାକୁ ମନାକରି ନାହାନ୍ତି କିମ୍ବା ଆଦୌ ଯୌନ ସମ୍ପର୍କ ନ ରଖିବାକୁ କୌଣସିଠାରେ କହି ନାହାନ୍ତି । ସେ କହିଆସୁଛନ୍ତି ଯେ, ଏଗୁଡ଼ିକ ପ୍ରତ ମୋହ-ମୂଳ ଅତିରିକ୍ତ ଆସକ୍ତିହିଁ ବରବର ଦୁଃଖଜନକ ହୋଇଥାଏ । ତେଣୁ ଗୀତା ଉପଦେଶ ଦେଇଛନ୍ତି—

ଯୁକ୍ତାହାର ବିହାରସ୍ୟ ଯୁକ୍ତ ଚେଷ୍ଟସ୍ୟ କର୍ମସୁ
ଯୁକ୍ତ ସ୍ୱପ୍ନାବ ବୋଧସ୍ୟ ଯୋଗୋ ଭବତି ଦୁଃଖହା । (୬।୧୭)

ଆମେ ନଜେ ବିଚାରି ବସିଲେ ଦେଖିବା ଯେ, ରଜସିକ ଅର୍ଥାତ୍ ପାନ-ଭୋଜନ-ଯୌନଭୋଗାଦି ବାହ୍ୟ ସ୍ପର୍ଶ ଜନିତ ସୁଖମାନଙ୍କର ଅତ୍ୟଧିକ ଅଭ୍ୟାସ ହିଁ ଡାକି ଆଣେ ଶେଷରେ ତଥାକଥିତ "ତାମସିକ" ଅଭ୍ୟାସ ସବୁକୁ, (ସ୍ୱପ୍ନ, ଭୟ, ନିଦ୍ରାଳୁତା, ବିଷାଦ ଆଦି) ଯାହା ଆମକୁ କ୍ରମେ ତଳକୁ ତଳକୁ ଟାଣେ ଏବଂ ଶେଷରେ ଅମନୁଷ୍ୟ କରି ଛାଡେ । ପାଠକେ ନଜ ଅଭିଜ୍ଞତାରୁ ହିଁ କହିପାରିବେ ଯେ, ଅଯଥା ଭୋଜନ ବା ଅଯଥା ଯୌନାଭ୍ୟାସ ଇତ୍ୟାଦିର ମାରାତ୍ମକ ପରିଣାମ ହିଁ ହୋଇଥାଏ ନିଦ୍ରା, ଆଳସ୍ୟ (ମାନସିକ ଓ ଶାରୀରିକ) ତଥା ପ୍ରମାଦ, ଅର୍ଥାତ୍ କର୍ତ୍ତବ୍ୟ କର୍ମ ସଂପର୍କରେ ଅନବଧାନତା,—ଯେଉଁ ସବୁକୁ ଗୀତା ତାମସିକ ସୁଖ ବୋଲି ବର୍ଣ୍ଣନା କରିଛନ୍ତି । ତେଣୁ ପାଠକେ ସେସବୁ ପ୍ରତି ସାବଧାନ ରହିବେ ଏବଂ ବିଶେଷ କରି ସେଗୁଡ଼ିକର ପ୍ରକୃତ ଜନକ ତଥା-କଥିତ 'ରଜସିକ' ସୁଖ ସବୁ ପ୍ରତ । କିନ୍ତୁ ସୁଖାନ୍ୱେଷଣ ମନୁଷ୍ୟର ଏକ ସ୍ୱାଭାବିକ କ୍ଷୁଧା । ଅନେକ ପାଠକ, ଶୁଣି ହୁଏତ ବିସ୍ମିତ ହେବେ ଯେ, ଯୁକ୍ତରାଷ୍ଟ୍ର ଆମେରିକାର ସଂବିଧାନରେ ଏହାହିଁ ପ୍ରଥମ ସତ୍ୟ ଭାବରେ ଉଦଘୋଷିତ । ପ୍ରତ୍ୟେକ ନର ଓ ନାରୀର ସୁଖାନ୍ୱେଷଣ ଆଦ୍ୟତମ ମାନବିକ ଅଧିକାର । ଗୀତା ମଧ୍ୟ ତାହାକୁ କୌଣସି ଠାରେ ଅସ୍ୱୀକାର ତ କରି ନାହାନ୍ତି, ବରଂ ଗୀତା ବରବର "ଅକ୍ଷୟ" ସୁଖର ବାର୍ତ୍ତାହିଁ ଦେଇ ଆସୁଛନ୍ତି । ମନୁଷ୍ୟର ପ୍ରକୃତ ସୁଖ ବାହାରୁ ଆସେନା ବା ଦ୍ରବ୍ୟ

ପ୍ରାଚୁର୍ଯ୍ୟ ବା ଧନ-କ୍ଷମତା-ପ୍ରତିପତ୍ତି ସେ ସୁଖକୁ ବଞ୍ଚାଇ ରଖିନପାରନ୍ତି । ତାହା ଆସେ ମନୁଷ୍ୟର ଅନ୍ତରରୁ । ଏବଂ ସୁଖ ଯେତିକି ଯେତକି ବିଶୁଦ୍ଧ ଭାବରେ ମାନସିକ ଓ ବୌଦ୍ଧିକ ହେବ, ତାହା ହେବ ସେତିକି ସେତିକି ସମ୍ମାନଜନକ ଓ ଅମଳ ଆନନ୍ଦଦାୟକ । ଶେଷରେ ଆମେ ଯେତେବେଳେ ସକଳ ଆନନ୍ଦର ଜନ୍ମଭୂମି ଆତ୍ମା ସହିତ ଏକୀଭୂତ ହୋଇପାରୁ ସେତେବେଳେ ଯାଇଁ ଆମେ ସେହି ଚିରସ୍ଥାୟୀ ସୁଖ ପାଇବୁ, ଯାହାକୁ ହିଁ ହୁଏତ ଆମେ ଜନ୍ମ ଜନ୍ମ ଦେଇ ଖୋଜି ଚାଲିଛୁ ଆମର ସହସ୍ର ପ୍ରମାଦ ଭିତର ଦେଇ ।

ତେଣୁ ସବୁ କହିସାରି ଗୀତା ପୁଣି ନମ୍ରରେ କହି ରଖୁଛନ୍ତି ଯେ; ସାତ୍ତ୍ୱିକ, ରାଜସିକ, ବା ତାମସିକ ଯାହା କହ, ସେ ସମସ୍ତ ପ୍ରକୃତିଜ । ଆତ୍ମା-ପୁରୁଷ ତ୍ରିଗୁଣର ବାହାରେ । ପ୍ରକୃତି ସହିତ ଜଡ଼ିତ ହୋଇ ପଡ଼ି, ଆତ୍ମା କେବଳ ତମ ବା ରଜ ଗୁଣ ନୁହେଁ, ସତ୍ତ୍ୱ ଗୁଣରେ ମଧ୍ୟ ବାନ୍ଧହୋଇ ବନ୍ଦି ହୋଇଥାଏ । ମନେ ରଖିବାକୁ ହେବ ଯେ, 'ଗୁଣ' ଶବ୍ଦର ଅର୍ଥ ହିଁ 'ରଜ୍ଜୁ' ବା ଦଉଡ଼ି । ପ୍ରକୃତି, ଆତ୍ମା ବା ପୁରୁଷକୁ ସତ୍ତ୍ୱ, ରଜ ଓ ତମ ରୂପକ ତିନୋଟି ଟାଣ ଦଉଡ଼ିରେ ବାନ୍ଧି ରଖିଛି । ଗୀତା ମୂଳରୁ କହି ଆସୁଛନ୍ତି ଯେ ଆମର ଶରୀରଟା ଜୀବ ନୁହେଁ ଏବଂ ଦେହ ଓ ଦେହୀ (ଆତ୍ମା) ଭିନ୍ନ ଭିନ୍ନ । ଆତ୍ମାର ପ୍ରାକ୍ତନ ନିର୍ମଳତା ଓ ସ୍ୱାଧୀନତା ଫେରି ପାଇବାକୁ ହେଲେ, "ନିସ୍ତ୍ରୈଗୁଣ୍ୟ" ଅଭ୍ୟାସ କରିବାକୁ ହେବ । ଏହାହିଁ ଗୀତାର ମୁଖ୍ୟ ଆଧ୍ୟାତ୍ମିକ ସାଧନା ।

ପୁଣି ଏହି ପ୍ରକୃତିଜ 'ତ୍ରିଗୁଣ'ର ବିବିଧ ଗୁଣ, କେବଳ ଆମର ଜ୍ଞାନ, କର୍ମ, କର୍ତ୍ତୃତ୍ୱ ଭାବ, ବୁଦ୍ଧି ଓ ଧୃତିରେ ପ୍ରକଟିତ ହୋଇ ରହନ୍ତି ନାହିଁ, ସେସବୁ ଆମର ଜୀବିକାରେ ମଧ୍ୟ ପ୍ରକାଶିତ ହୋଇ ପଡ଼ଥାନ୍ତି । ପ୍ରତ୍ୟେକ ଲୋକର ଜୀବିକା ଉପରେ ନିର୍ଭର କରେ ତା'ର ଦୈନନ୍ଦିନ ଜୀବନର ରୀତ । ଗୀତା ଦୈନନ୍ଦିନ ଜୀବନର ଓ ସାଧାରଣ ଜୀବନର ଶାସ୍ତ୍ର । ଗୀତା, ତେଣୁ ତ୍ରିଗୁଣ ଦୃଷ୍ଟିରୁ ହିଁ ଜ୍ଞାନ, କର୍ମ, କର୍ତ୍ତା, ବୁଦ୍ଧି ଓ ଧୃତ ଇତ୍ୟାଦି ବୁଝେଇ ସାରି, ବର୍ତ୍ତମାନ ସାମାଜିକ ଜୀବନରେ ସେସବୁ କିପରି ପ୍ରତିବିମ୍ବିତ ହୋଇଥାନ୍ତି ତାହା ବର୍ଣ୍ଣନା କରିବେ ।

( ୪୦ )

ନ ତଦସ୍ତି ପୃଥିବ୍ୟାଂ ବା ଦିବି ଦେବେଷୁ ବା ପୁନଃ
ସତ୍ତ୍ୱଂ ପ୍ରକୃତିଜୈର୍ମୁକ୍ତଂ ଯଦେଭିଃ ସ୍ୟାତ୍ ତ୍ରିଭିର୍ଗୁଣୈଃ ।୪୦।

ପୃଥିବ୍ୟା ବା ଦିବ (ପୃଥିବୀରେ ବା ସ୍ୱର୍ଗରେ) [ମନୁଷ୍ୟମାନଂକ ଭିତରେ] ଦେବେଷୁ ବା (ବା ଦେବତାମାନଙ୍କ ଭିତରେ) ତତ୍ ସତ୍ତ୍ୱଂ ନ ଅସ୍ତି (ଏପରି ପ୍ରାଣୀ ବା ବସ୍ତୁ ନାହିଁ) ଯତ୍ (ଯେ ବା ଯାହା) ଏଭିଃ ପ୍ରକୃତଜୈଃ ତ୍ରିଭିଃ ଗୁଣୈଃ ମୁକ୍ତଃ ସ୍ୟାତ୍ (ପ୍ରକୃତିରୁ ଉଦ୍ଭୁତ ଏହି ତିନି ଗୁଣ ବା ଦଉଡ଼ରୁ ମୁକ୍ତ ରହନ୍ତି) ।

## ଅନୁବାଦ—

ହେ ଅର୍ଜୁନ, କିନ୍ତୁ ମନେରଖିବ ଯେ ଏହି ପୃଥିବୀରେ ବା ସ୍ୱର୍ଗରେ ମନୁଷ୍ୟମାନଂକ ଭିତରେ ବା ଦେବତାମାନଂକ ଭିତରେ, ମଧ୍ୟ, ଏପରି କେହି ନାହିଁ ଯେ କି ପ୍ରକୃତି-ଜାତ ତ୍ରିଗୁଣରୁ ସଂପୂର୍ଣ୍ଣ ମୁକ୍ତ । ଅର୍ଥାତ ଯେଉଁମାନେ କ ଅବସ୍ଥା ଭେଦରେ, କେହି ସତ୍ତ୍ୱ, କେହି ରଜ ଓ କେହି ବା ତମ ଗୁଣ (ଦଉଡ଼) ଦ୍ୱାରା ବଂଧା ନୁହନ୍ତି ।

## ବିଶେଷ ଭାଷ୍ୟ—

ଶଂକରାଚାର୍ଯ୍ୟଂକ ଭାଷାରେ ବ୍ରହ୍ମ ହିଁ ଏକ ଆତ୍ମା, ସୃଷ୍ଟିର ଆଉ ସବୁହିଁ କେବଳ 'ଅନାତ୍ମା' । ରାମକୃଷ୍ଣଂକ ଭାଷାରେ ଈଶ୍ୱରହିଁ ଏକମାତ୍ର ବସ୍ତୁ, ଆଉସବୁ ଅ-ବସ୍ତୁ । ଏକା କଥା । ଅର୍ଥାତ୍ କେବଳ ବ୍ରହ୍ମ ବା ଈଶ୍ୱରହିଁ ଏକମାତ୍ର ସତ୍ । ଆଉ ସବୁ ସେହି ସତର ଅ-ସତ୍ୟ ବା ମାୟା-ପ୍ରକାଶ ମାତ୍ର । ଆମେ ମନୁଷ୍ୟମାନେ ଦେବତାଂକୁ ବଡ଼ ବୋଲି ଧରିଥାଉ । କିନ୍ତୁ ଈଶ୍ୱର ଭିନ୍ନ ଯାହା କିଛି ସେ ଦେବତା ହେଉନ୍ତୁ ପଛେ, ତାଂକୁ କେବଳ ପ୍ରକୃତିହିଁ ବୁଝିବାକୁ ହେବ—ଯଦିଓ ସେ ହୋଇ ପାରନ୍ତି ସତ୍ତ୍ୱମୟ ପ୍ରକୃତି । କିନ୍ତୁ ସତ୍ତ୍ୱ ମଧ୍ୟ ଏକ ଗୁଣ (ଦଉଡ଼) । ଅଥଚ ସୃଷ୍ଟିର ମୌଳିକ ଉପାଦାନ ବ୍ରହ୍ମ (ଆତ୍ମା ବା ପୁରୁଷ) ହେଲେ ସଂପୂର୍ଣ୍ଣ ନିର୍ଗୁଣ (ଦଉଡ଼ ଶୂନ୍ୟ) । ଅର୍ଥାତ୍ ଗୀତା କହିବାକୁ ଚାହାନ୍ତି ଯେ ବ୍ରହ୍ମ ବା ଈଶ୍ୱରଂକୁ ଛାଡ଼ ଦେଲେ, ଏ ସୃଷ୍ଟିରେ ଯାହାକିଛି, ସେ ସମସ୍ତହିଁ ପ୍ରକୃତିର ତ୍ରିଗୁଣ (ତିନି ଦଉଡ଼) ପ୍ରଭାବିତ । ସ୍ୱର୍ଗର ଦେବତାମାନେ ମଧ୍ୟ ଏହିଁରୁ ବାଦ ଯିବେ ନାହିଁ । ସାଧାରଣ ସାମାଜିକ ଓ ଜୀବିକା ନେଇ ବ୍ୟସ୍ତ ମନୁଷ୍ୟ କଥା ତେଣୁ କ'ଣ କହିବା ? ତେବେ ଜାଣିରଖିବା ଉଚିତ ଯେ ପ୍ରକୃତିର ଏହି ତ୍ରିଗୁଣ, ସାମାଜିକ ମନୁଷ୍ୟର ଦୈନନ୍ଦିନ ଜୀବନରେ ମଧ୍ୟ କପରି ଆତ୍ମ-ପ୍ରକାଶ କରିଥାଏ । ସେହି ଜାଣି-ରଖିବା ହିଁ ଅଧ୍ୟାତ୍ମ-ସାଧନାର ପ୍ରଥମ ସୋପାନ,ପାଠକେ । ଧରପୃଷ୍ଠରେ ଜୀବନ-ସଂଗ୍ରାମ-ରତ ଅଗଣିତ ମାନବଗୋଷ୍ଠୀରେ ତ୍ରିଗୁଣାତ୍ମିକା ପ୍ରକୃତି ଛଅଟି ମୁଖ୍ୟ ପ୍ରକାରରେ ନିଜକୁ ଚଳମାନ ରଖେ ବୋଲି ଗୀତା ପୂର୍ବପରି ଏଠାରେ ମଧ୍ୟ

କହିବେ । ଏଠି ଜନ୍ମର ପ୍ରଶ୍ନ ନାହିଁ । ଏହା ହେଲା ମନୁଷ୍ୟମାନଂକଠାରେ ସାଧାରଣତଃ ଦେଖାଦେଉଥିବା ଚତୁର୍ବିଧ 'ସ୍ୱଭାବ' । 'ସ୍ୱଭାବରୁ' ଉପଜାତ ହୁଏ ପ୍ରତ୍ୟେକ ବ୍ୟକ୍ତିର ସ୍ୱ ଧର୍ମ । ଗୀତା ବର୍ତ୍ତମାନ ସେହି ସ୍ୱଭାବାନୁଗ ଧର୍ମ ବର୍ଣ୍ଣନା କରିବେ ।

( ୪୧ )

ବ୍ରାହ୍ମଣ କ୍ଷତ୍ରିୟ ବିଶାଂ ଶୂଦ୍ରାଣାଂ ଚ ପରନ୍ତପ
କର୍ମାଣି ପ୍ରବିଭକ୍ତାନି ସ୍ୱଭାବ ପ୍ରଭବୈ ର୍ଗୁଣୈଃ ।୪୧।

[ହେ] ପରନ୍ତପ (ଶତ୍ରୁନାଶକ ଅର୍ଜୁନ) ବ୍ରାହ୍ମଣ କ୍ଷତ୍ରିୟ ବିଶାଂ (ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଂକର) ଶୂଦ୍ରାଣାଂ ଚ (ଏବଂ ଶୂଦ୍ରମାନଂକର ମଧ୍ୟ) କର୍ମାଣି (କର୍ମ ସମୂହ) ସ୍ୱଭାବ ପ୍ରଭବୈଃ ଗୁଣୈଃ ପ୍ରବିଭକ୍ତାନ (ସ୍ୱଭାବ ଅର୍ଥାତ୍ ପ୍ରକୃତିଜାତ ଗୁଣମାନଂକ ନେଇହ ଭିନ୍ନ ଭିନ୍ନ ହୋଇଥାନ୍ତ) ।

## ଅନୁବାଦ—

ହେ ଅର୍ଜୁନ, ସମାଜରେ ସାଧାରଣତଃ ଯେଉଁ ଚାରି ମୁଖ୍ୟ ଶ୍ରେଣୀରେ ବିଭକ୍ତ ହୋଇ ଦେଖାଦେଉଥିବା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ମନୁଷ୍ୟମାନେ ସେମାନଂକର ସ୍ୱଭାବ-ଜାତ ଗୁଣମାନଂକର ଭିନ୍ନତା ଯୋଗୁଁ ହିଁ ସେପରି ହୋଇଥାନ୍ତି ବୋଲି ଜାଣିବ ।

## ବିଶେଷଭାଷ୍ୟ—

ପାଠକେ ଲକ୍ଷ୍ୟ କରିବେ ଯେ, ସମଗ୍ର ଗୀତାରେ କୌଣସିଠାରେ ହେଲେ ହିନ୍ଦୁ ସମାଜରେ ସୁପ୍ରତିଷ୍ଠିତ "ଜନ୍ମ"—ହେତୁକ ସାମାଜିକ-ଶ୍ରେଣୀ-ବିଭାଗର ସୂଚନାହିଁ ନାହିଁ । ଅର୍ଥାତ୍ ଜନ୍ମ ଯୋଗୁଁ ହିଁ ରାଜାପୁଅ ରଜା, ପୁରୋହିତ ପୁଅ ପୁରୋହିତ, ବା ଚଷାର ପୁଅ ଚଷା ହୋଇ ରହିବାର ନିର୍ଦ୍ଦେଶ ଗୀତାରେ କୌଣସି ଠାରେ ହେଲେ ନାହିଁ । ଗୀତାର ସାମାଜିକ ଶ୍ରେଣୀ ବିଭାଗ ପ୍ରତ୍ୟେକ ଲୋକର "ସ୍ୱଭାବଜ ଗୁଣ" ଓ ତଦନୁଯାୟୀ ଉପଜାତ କର୍ମ ଉପରେହିଁ ପ୍ରତିଷ୍ଠିତ—ଜନ୍ମ ଉପରେ ଆଦୌ ନୁହେଁ । ଏଠାରେ ମଧ୍ୟ ଗୀତା ସେହି କଥା କହୁଛନ୍ତି—ଲୋକେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ବା ଶୂଦ୍ର ହେବେ କେବଳ ପ୍ରତ୍ୟେକର "ସ୍ୱଭାବ—ପ୍ରଭବୈଃ ଗୁଣୈଃ"—ଅର୍ଥାତ୍ ଏବର କଥାରେ, ସେମାନଂକର ଆପ୍ଟିଚ୍ୟୁଡ୍ ( aptitude ) ବା interests ଦେଖିହିଁ ତାଂକଠାରେ ଯେଉଁ ବିଶିଷ୍ଟ କର୍ମ-

ପ୍ରେରଣା ଦେଖାଦେବ ତାହାହିଁ ହେବ ସେମାନଂକର 'ସ୍ୱ-ଧର୍ମ' । ଜନ୍ମରେ ଶୂଦ୍ର ହେଲେ ହିଁ ସାରଳା ଦାସ, ଭୀମା ଭୋଇ ବା ଗଂଗାଧର ମେହେର ପ୍ରତ୍ୟେକେ ନିଜ ନିଜର "ସ୍ୱ-ଭାବରେ" ବିକାଶ ଦେଇହିଁ ବ୍ରାହ୍ମଣୋଚିତ ମହତ୍ "ସ୍ୱ-ଧର୍ମ" ସଂପାଦନ କରି ଯାଇଛନ୍ତି । ଏହି ଅର୍ଥରେ ବହୁ ବ୍ରାହ୍ମଣ ବା ବହୁ କ୍ଷତ୍ରିୟ ଜନ୍ମ ସେମାନଂକର 'ସ୍ୱ-ଧର୍ମ' ପାଳନ କରନ୍ତି ନାହିଁ ବା କରିପାରନ୍ତି ନାହିଁ । କାରଣ ସେମାନଂକର ଜନ୍ମ ସହିତ ସେମାନଂକର "ସ୍ୱ-ଭାବ"ର ଅଙ୍ଗାଙ୍ଗୀ ସଂପର୍କ ନଥାଏ । ତଥାପି ସେମାନେ କେବଳ ଜନ୍ମ ଯୋଗୁଁହିଁ ବ୍ରାହ୍ମଣ ଓ କ୍ଷତ୍ରିୟର ସମାନ ଦାବୀ କରନ୍ତି, ଯାହାକି ଏକାନ୍ତ ଅଯୌକ୍ତିକ ।

( ୪୨ )

ଶମୋ ଦମ ସ୍ତପଃ ଶୌଚଂ କ୍ଷାନ୍ତି ରାର୍ଜବ ମେବ ଚ
ଜ୍ଞାନଂ ବିଜ୍ଞାନ ମାସ୍ତିକ୍ୟଂ ବ୍ରହ୍ମକର୍ମ ସ୍ୱଭାବଜଂ ।୪୨।

ଶମଃ ଚିତ୍ତଶାନ୍ତି) ଦମଃ (ଇନ୍ଦ୍ରିୟ ସଂଯମ) ତପଃ (ତପସ୍ୟା) ଶୌଚ 'ବାହ୍ୟ ଓ ଅନ୍ତରର ପବିତ୍ରତା) କ୍ଷାନ୍ତିଃ (କ୍ଷମା) ଆର୍ଜବଂ ସରଳତା) ଜ୍ଞାନଂ ପାର୍ଥିବ ଜ୍ଞାନ) ବିଜ୍ଞାନଂ (ଆଧ୍ୟାତ୍ମିକ ଅନୁଭବ) ଆସ୍ତିକ୍ୟଂ (ପରଲୋକ ବିଶ୍ୱାସ ବା ଆତ୍ମା ଓ ଈଶ୍ୱରଂକ ଅସ୍ତିତ୍ୱରେ ବିଶ୍ୱାସ) [ଏସବୁ] ସ୍ୱଭାବଜଂ ବ୍ରହ୍ମଂ କର୍ମ (ସ୍ୱାଭାବିକ ବ୍ରାହ୍ମଣ କର୍ମ) ।

## ଅନୁବାଦ—

ହେ ଅର୍ଜୁନ, ଶାନ୍ତଚିତ୍ତତା, ଇନ୍ଦ୍ରିୟ ସଂଯମ, ତପ, ବାହ୍ୟ ଓ ଆଭ୍ୟନ୍ତରୀଣ ପବିତ୍ରତା, କ୍ଷମାଶୀଳତା, ଅକପଟତା, ପାର୍ଥିବ ଜ୍ଞାନ, ଆଧ୍ୟାତ୍ମିକ ଅନୁଭବ, ଆତ୍ମା ଓ ଈଶ୍ୱରଂକ ଅସ୍ତିତ୍ୱରେ ବିଶ୍ୱାସ—ଏସବୁ ବ୍ରାହ୍ମଣ ରୂପେ ପରିଚିତ ଲୋକର ସ୍ୱଭାବଜ ସ୍ୱ-ଧର୍ମ ବୋଲି ଜାଣିବ ।

## ବିଶେଷ ଭାଷ୍ୟ—

ପାଠକେ ଏହି ଶ୍ଳୋକ ଓ ନିମ୍ନର ଆଉ ତିନୋଟି ଶ୍ଳୋକରେ ଏହି କଥାଟିକୁ ଦୃଷ୍ଟି ଦେବେ ଯେ, ଏ ସବୁରେ ଗୀତା, ହିନ୍ଦୁ ସାମାଜିକ ଶ୍ରେଣୀବିଭାଗ ମାନଂକର କର୍ତ୍ତବ୍ୟ ବର୍ଣ୍ଣନା କଲେ ମଧ୍ୟ କୌଣସିଠାରେ "ବ୍ରାହ୍ମଣର କର୍ମ" "କ୍ଷତ୍ରିୟର କର୍ମ" "ବୈଶ୍ୟର କର୍ମ" ବା "ଶୂଦ୍ରର କର୍ମ" ବୋଲି ଖୋଲାଖୋଲି କହି ନାହାନ୍ତି । ତା' ପରିବର୍ତ୍ତରେ ସେ କହିଛନ୍ତି 'ବ୍ରହ୍ମକର୍ମ', 'କ୍ଷାତ୍ରକର୍ମ' 'ବୈଶ୍ୟ-

କର୍ମ’ ଇତ୍ୟାଦି । ଏପରି କହିବାର ପ୍ରକୃତ ତାତ୍ପର୍ଯ୍ୟ ହେବ—“ଯାହାକୁ ବ୍ରାହ୍ମଣ କୁହାଯିବ ତାହାର କର୍ମ” ‘ଯାହାକୁ କ୍ଷତ୍ରିୟ କୁହାଯିବ ତାହାର କର୍ମ”ଇତ୍ୟାଦି । ଏହା କେବେହେଲେ ବୁଝାଇବନି ବ୍ରାହ୍ମଣ ଗୋଷ୍ଠୀ ଜାତ ଲୋକର ବା କ୍ଷତ୍ରିୟ ଗୋଷ୍ଠୀଜାତର କର୍ମ ବୋଲି । ତା’ ହୋଇଥିଲେ ପ୍ରତ୍ୟେକ ସଂପର୍କରେ ବାରଂବାର ସ୍ୱଭାବଜଂ’ ଶବ୍ଦ ମଧ୍ୟ ବ୍ୟବହୃତ ହୋଇ ନଥାନ୍ତା । ସଂସ୍କୃତରେ ‘ଶୂଦ୍ର’ ଶବ୍ଦର ବିଶେଷଣ ମଧ୍ୟ ସେହି ‘ଶୂଦ୍ର’ ଥିବାରୁହିଁ ତଳେ ‘ଶୂଦ୍ରସ୍ୟାପି’ (ଶୂଦ୍ରର ମଧ୍ୟ) ବ୍ୟବହୃତ ହୋଇଛି । କିନ୍ତୁ ‘ଶୂଦ୍ର’ର ‘ସ୍ୱଭାବ’ ବୋଲି ଯାହା ବର୍ଣ୍ଣିତ ହୋଇଛି ତାହା ମନସ୍ତତ୍ତ୍ୱ ଦିଗରୁ କୌଣସି ମନୁଷ୍ୟପକ୍ଷରେ ‘ସ୍ୱାଭାବିକ’ ହେବାର କଥା ନୁହେଁ ।

ପୁଣି, କାହାକୁ ବ୍ରାହ୍ମଣ କୁହାଯିବ, କାହାକୁ କୁହାଯିବ ନାହିଁ, ଏ ତର୍କ ଔପନିଷଦିକ କାଳରୁହିଁ ଚାଲି ଆସିଛି । ଏହା କେବଳ ଆଜିର କଥା ନୁହେଁ । ଅନେକଙ୍କର ଏକାନ୍ତ ଭ୍ରାନ୍ତଧାରଣା ଯେ, ଗୌତମ ବୁଦ୍ଧ କ୍ଷତ୍ରିୟ ଥିବାରୁହିଁ ସ୍ୱଭାବତ ଭାବରେ ବ୍ରାହ୍ମଣ-ବିରୋଧୀ ବା ବ୍ରାହ୍ମଣ୍ୟ-ସମାଜ ବିରୋଧୀ ଥିଲେ । ଏ ଅପପ୍ରଚାରର ଧୂଳିସାତ୍ ହେଉଛି, ବୌଦ୍ଧ ଗୀତା ‘ଧମ୍ମପଦ’ ଗ୍ରନ୍ଥରେ । “ଧମ୍ମପଦ”ର ଶେଷ ଦୁଇ ଅଧ୍ୟାୟ ହେଲା “ଭିକ୍ଷୁବର୍ଗ” ଓ ‘ ବ୍ରାହ୍ମଣ ବର୍ଗ” । ଉଭୟତ୍ର ବୁଦ୍ଧ, ଆଦର୍ଶ ଭିକ୍ଷୁ ଓ ଆଦର୍ଶ ବ୍ରାହ୍ମଣର ଯେପରି ବର୍ଣ୍ଣନା ଦେଇଛନ୍ତି, ସେଥିରେ ଉଭୟ ଭିତରେ କୌଣସି ପ୍ରଭେଦ ନାହିଁ, କି ସେଥିରେ ଥିବା ଉଭୟ ଆଦର୍ଶ ଭିକ୍ଷୁ ଓ ଆଦର୍ଶ ବ୍ରାହ୍ମଣର ବର୍ଣ୍ଣନା ଓ ଗୀତାର “ସ୍ଥିତପ୍ରଜ୍ଞ” ବା ଆଦର୍ଶ ଭକ୍ତ’ ବା “ଆଦର୍ଶଜ୍ଞାନୀ” ଭିତରେ କୌଣସି ହେଲେ ପ୍ରଭେଦ ନାହିଁ । ଏ ଆଦର୍ଶ ଜନ୍ମ ବା ବେଶଭୂଷାଦି ବାହ୍ୟ ପ୍ରକାଶ ଉପରେ ନିର୍ଭର ନକରି, ସଂପୂର୍ଣ୍ଣ ରୂପେ କରେ ଆଭ୍ୟନ୍ତରୀଣ ମାନସିକ ଅବସ୍ଥା ଉପରେ । ଦୃଷ୍ଟାନ୍ତ ସ୍ୱରୂପ ‘ଧମ୍ମପଦ’ର ବ୍ରାହ୍ମଣବର୍ଗର ଏକାଦଶ ଶ୍ଳୋକର ତାତ୍ପର୍ଯ୍ୟ ପାଠକେ ଦେଖି ନିଅନ୍ତୁ । ତାହା ଏହିପରି—“ଜଟାଜୁଟ ପରିଧାନ ଦ୍ୱାରା, ଗୋତ୍ରଦ୍ୱାରା ବା ଜନ୍ମ ଘେନି କେହି ବ୍ରାହ୍ମଣ ହୁଏ ନାହିଁ । ଯେ ଋଷି ଆର୍ଯ୍ୟ ସତ୍ୟକୁ ଷୋଡଶ ପ୍ରକାରରେ ଦର୍ଶନ କରିଛନ୍ତି ଏବଂ ଯେ ଲୋକୋତ୍ତର ଧର୍ମରେ ପ୍ରତିଷ୍ଠିତ, ସେହିଁ ବ୍ରାହ୍ମଣ, କାରଣ ସେ ପବିତ୍ର ।

ଏବଂ ଧମ୍ମପଦର ଆଦର୍ଶ ଭିକ୍ଷୁ ସହିତ ଗୀତାର ସ୍ଥିତ ପ୍ରଜ୍ଞର ଆଦର୍ଶ କିପରି ମିଳି ଯାଉଛି । ତାହା ମଧ୍ୟ ପାଠକେ ଦେଖନ୍ତୁ—ଭିକ୍ଷୁବର୍ଗ ( ୩ )—

“ସେହି ସଂଯତୋତ୍ତମ; ଆଧ୍ୟାତ୍ମିକ ବିଷୟ ଚିନ୍ତନେ ରତ, ସମାଧିସଂପନ୍ନ ସଂଗତ ରହିତ ଓ ସନ୍ତୁଷ୍ଟ ଚିତ୍ତ ଲୋକହିଁ ଭିକ୍ଷୁ ନାମରେ ଅଭିହିତ ହେବେ ।”

ପାଠକେ ମଧ୍ୟ ସ୍ମରଣ କରିବେ ଔପନିଷଦିକ ଋଷି ଗୌତମ କିପରି ପରିଷ୍କଳକା-ଗର୍ଭ-ଜାତ, ଅଜ୍ଞାତ-ପିତୃକ ଜାବାଳକୁ "ସତ୍ୟକାମ ଜାବାଳ" ନାମ ଦେଇ ବ୍ରାହ୍ମଣ ଛାତ୍ରମାନଙ୍କ ସହିତ ବ୍ରାହ୍ମଣ ରୂପେ ଗ୍ରହଣ କରି ନେଇଥିଲେ ।

ତେଣୁ ଭାରତରେ ଜନ୍ମ-ସ୍ୱତନ୍ତ୍ର ବ୍ରାହ୍ମଣତ୍ୱ କୌଣସି କାଳେ ପୁରାପୁରି ଗୃହୀତ ହୋଇ ଯାଇ ନାହିଁ । ଅନ୍ତତଃ ଗୀତାରେ ତାହା କୌଣସିଠାରେ ଦେଖିବାକୁ ମିଳେ ନାହିଁ ।

( ୪୩ )

ଶୌର୍ଯ୍ୟଂ ତେଜୋଧୃତିର୍ଦାକ୍ଷ୍ୟଂ ଯୁଦ୍ଧେଚାପ୍ୟ ପଳାୟନଂ
ଦାନମୀଶ୍ୱର ଭାବଶ୍ଚ କ୍ଷାତ୍ରଂକର୍ମ ସ୍ୱଭାବଜଂ ।୪୩।

ଶୌର୍ଯ୍ୟ (ପରାକ୍ରମ) ତେଜଃ (ଶକ୍ତି) ଧୃତିଃ (ଧୈର୍ଯ୍ୟ) ଦାକ୍ଷ୍ୟଂ (କର୍ମରେ ନିପୁଣତା) ଯୁଦ୍ଧେ ଚ ଅପଳାୟନଂ (ଯୁଦ୍ଧ କ୍ଷେତ୍ରରୁ ପଳେଇବାର ଅପ୍ରବଣତା) ଦାନଂ ( ଦାନ ) ଈଶ୍ୱରଭାବଃ (ପ୍ରଭୁ-ପଣ ବୋଧ) [ଏସବୁ] ସ୍ୱଭାବଜଂ କ୍ଷାତ୍ରଂ କର୍ମ (ଏସବୁ ସ୍ୱାଭାବିକ କ୍ଷାତ୍ର କର୍ମ) ।

ଅନୁବାଦ—

ହେ ଅର୍ଜୁନ, ଦୈହିକ ଶକ୍ତି ଓ ପରାକ୍ରମ, ଧୈର୍ଯ୍ୟ, କର୍ମଦକ୍ଷତା, ସଂଗ୍ରାମରୁ ଅପଳାୟନ, ଦାନଶୀଳତା, ପ୍ରଭୁତ୍ୱ-ବୋଧ, ଏସବୁକୁ ସ୍ୱାଭାବିକ କ୍ଷତ୍ରିୟ-ଗୁଣ ବୋଲି ଧରିନେବ ।

( ୪୪ )

କୃଷି ଗୋରକ୍ଷ୍ୟ ବାଣିଜ୍ୟଂ ବୈଶ୍ୟ-କର୍ମ ସ୍ୱଭାବଜଂ
ପରିଚର୍ଯ୍ୟାତ୍ମକଂ କର୍ମ ଶୂଦ୍ରସ୍ୟାପି ସ୍ୱଭାବଜଂ ।୪୩।

କୃଷି ଗୋରକ୍ଷ୍ୟ ବାଣିଜ୍ୟଂ (ଚାଷ, ଗୋରୁପାଳନ ଓ ବ୍ୟବସାୟ) (ଏ ହେଲା) ସ୍ୱଭାବଜଂ ବୈଶ୍ୟ-କର୍ମ ( ସ୍ୱାଭାବିକ ବୈଶ୍ୟକର୍ମ ) । ପରିଚର୍ଯ୍ୟାତ୍ମକଂ କର୍ମ ଶୂଦ୍ରସ୍ୟାପି ସ୍ୱଭାବଜଂ ( ଅନ୍ୟର ସେବାହିଁ ସ୍ୱାଭାବିକ ଶୂଦ୍ରକର୍ମ) ।

ଅନୁବାଦ—

କୃଷି, ଗୋପାଳନ ଓ ବ୍ୟବସାୟ ପ୍ରତି ଶ୍ରଦ୍ଧା ବୈଶ୍ୟକର୍ମ ଏବଂ ଅନ୍ୟ-ମାନଙ୍କୁ ସେବା କରିବାର ଭାବ ସ୍ୱାଭାବିକ ଶୂଦ୍ରକର୍ମ ବୋଲି ଜାଣିବ ।

**ବିଶେଷ ଭାଷ୍ୟ—**

ପାଠକେ ମନେରଖିବେ ଯେ, ଗୀତା ଯେଉଁ କୁରୁକ୍ଷେତ୍ର ରଣ ପ୍ରାଙ୍ଗଣରେ କୁହାହୋଇଥିଲା, ଠିକ୍ ସେହି ସମୟରେହିଁ, ଦ୍ରୋଣ, କୃପାଚାର୍ଯ୍ୟ ଓ ଅଶ୍ୱତ୍ଥାମାଦି ବିଖ୍ୟାତ ବ୍ରାହ୍ମଣମାନେ କ୍ଷତ୍ରିୟ କର୍ମରେହିଁ ପ୍ରଯୁକ୍ତ ଥିଲେ । ସେହି ସୂତ୍ରରେ ସେମାନେ ଦୁର୍ଯ୍ୟୋଧନ ରାଜାର ଭତ୍ତାଭୋଗୀ କର୍ମଚାରୀ ଅର୍ଥାତ୍ ସେବକ ବା ଶୂଦ୍ର ମଧ୍ୟ ଥିଲେ । ପୁଣି କୃଷି ଓ ଗୋରକ୍ଷା କେବଳ ବୈଶ୍ୟମାନଙ୍କର କର୍ମ ନୁହେଁ, ବ୍ରାହ୍ମଣ, କ୍ଷତ୍ରିୟ ଓ ଶୂଦ୍ର ସମସ୍ତଙ୍କର ଏସବୁ ଜୀବିକାର ଅଂଶଥିଲା ଓ ଏବେ ବି ଅଛି । ଉଭୟ ବିରାଟ ରାଜାର କ୍ଷତ୍ରିୟ ରାଜା ଓ ବ୍ରାହ୍ମଣ ବଶିଷ୍ଠଙ୍କ "ଗୋ-ଧନ" ପୁରାଣ-ପ୍ରସିଦ୍ଧ ଏବଂ ସେଥିପାଇଁ ରକ୍ତାକ୍ତ ଯୁଦ୍ଧସବୁ ମଧ୍ୟ ଘଟିଛି । କୁରୁବଂଶର ଆଦି ପୁରୁଷ କୁରୁଙ୍କ କ୍ଷେତ୍ର (କୃଷିଜମି)ହିଁ "କୁରୁକ୍ଷେତ୍ର" । ରାଜା ଜନକ ମଧ୍ୟ ନିଜ ହାତରେ ଲଙ୍ଗଳ ଧରି ଜମିଚଷ କରୁକରୁ ଶିଶୁ ସୀତାଙ୍କୁ ପାଇଲେ ଏବଂ ଲଂଗଳର ଲୁହା ଅନୁସାରେହିଁ ସେହି କନ୍ୟାଟିର ନାମ ମଧ୍ୟ ରହିଯାଇଛି 'ସୀତା' ବୋଲି । ଶ୍ରୀକୃଷ୍ଣଙ୍କ ବଡଭାଇ ବଳରାମ "ହଳଧର" ଓ ଏପର୍ଯ୍ୟନ୍ତ ଗାଈ ଗୋରୁଙ୍କ ଦେବତାରୂପେ କଳ୍ପିତ ଓ ଭାରତର ସର୍ବତ୍ର ସେହି ଭାବରେହିଁ ସମ୍ମାନିତ । ପୁଣି ନିଜ କ୍ଷେତ୍ର (ବିଲ)କୁ ରକ୍ଷା କରିବା କର୍ମରୁହିଁ 'କ୍ଷତ୍ରିୟ' ଶବ୍ଦର ଉତ୍ପତ୍ତି । ଆର୍ଯ୍ୟମାନେ ଦିନେ କେବଳ କୃଷକ ଓ ଗୋପାଳକ ଥିଲେ । ବିଶେଷଭାବରେ ଯାଦବ-କ୍ଷତ୍ରିୟ (ଶ୍ରୀକୃଷ୍ଣବଂଶୀୟ) ମାନଙ୍କର ବୈଶିଷ୍ଟ୍ୟହିଁ ଥିଲା ଗୋପାଳନ । ଏହିମାନଙ୍କର ଏକ ଶାଖା ଥିଲା 'ଅଭୀର' । ଏମାନଙ୍କର ଗୋ-ପାଳନ-ବୈଶିଷ୍ଟ୍ୟ ଯୋଗୁଁହିଁ ପରେ ଗଉଡ ମାତ୍ରେ, ଆଭୀର ବୋଲାଇଲେ—ନଚେତ୍ ଆଭୀର ଶବ୍ଦ ସହିତ ଗୋପାଳନର ଧାତୁଗତ ସଂପର୍କ ନାହିଁ ।

ପୁଣି ଅନ୍ୟର ସେବା କରିବା, ତଥାକଥିତ ଶୂଦ୍ର ମାତ୍ରର ନୋହିପାରେ । ମନେ ରଖିବାକୁ ହେବ ଯେ, ସ୍ୱାଧୀନ ଭାରତର ସମ୍ବିଧାନର ରଚୟିତା ଡକ୍ଟର ଆମ୍ବେଦକାର ଜନ୍ମରେ ମେହେନ୍ତରହିଁ ଅର୍ଥାତ୍ ଏକାନ୍ତ ଶୂଦ୍ର ଥିଲେ । ସଂସ୍କୃତ ଭାଷାରେ "ଶୂଦ୍ର—ସେବକ" ଓ "ଶୂଦ୍ର—ପ୍ରେଷ୍ୟ" ଶବ୍ଦରୁ ସ୍ପଷ୍ଟ ସୂଚନା ମିଳେ ଯେ, ପୂର୍ବେ ହିନ୍ଦୁ ସମାଜର ଉଚ୍ଚ ବର୍ଣ୍ଣର ଲୋକେ ମଧ୍ୟ କାହିଁ କାହିଁ ଶୂଦ୍ର ଜନର ସେବା କରୁଥିଲେ । ଇତିହାସ-ପ୍ରସିଦ୍ଧ ନନ୍ଦ-ରାଜବଂଶ ଶୂଦ୍ର ଥିଲେ । ମୁରା ଦାସୀ-ସମ୍ଭୂତ ମୌର୍ଯ୍ୟବଂଶ ବା' କ'ଣ ଥିଲେ? ପରେ ମ୍ଳେଚ୍ଛ ଓ ଯବନ ନବାବ ଓ ବାଦଶାମାନଙ୍କର ଉଚ୍ଚ ବର୍ଣ୍ଣ ହିନ୍ଦୁଏ ସବୁ ପ୍ରକାର ସେବା କରିବାରେ ଆଦୌ ପରାଙ୍ମୁଖ ହୋଇ ନାହାନ୍ତି । ତେଣୁ ସେବା କେବଳ ତଥାକଥିତ ଶୂଦ୍ର-ଜନର "ସ୍ୱଭାବଜ" ବୋଲି ନକହି 'ସେବାହିଁ ଯାର ସ୍ୱଭାବଜ ସେ ଶୂଦ୍ର' ଏପରି କହିବା

ଅଧିକ ଯୁକ୍ତିଯୁକ୍ତ ଓ ସତ୍ୟର ଅଧିକ ନକଟବର୍ତ୍ତୀ ହେବ । ମନୁ ଅବଶ୍ୟ ଏଥିପାଇଁହିଁ ବୋଧହୁଏ ବ୍ରାହ୍ମଣକୁ ଅନ୍ୟର ସେବା କରି ଅର୍ଥାତ୍ ଚାକିରି କରି ଜୀବିକାର୍ଜନ କରିବାକୁ ମନା କରିଯାଇଛନ୍ତି । କିନ୍ତୁ ଚାକରି କରି ଅର୍ଥାତ୍ ଅନ୍ୟର ଚାକର ବା ସେବାକାରୀ ହୋଇ ମଧ୍ୟ ଲୋକେ 'ବ୍ରାହ୍ମଣ' ବୋଲାଇବେ, ଅଥଚ ସ୍ୱାଧୀନ ବୃତ୍ତିକ ଚଷା ଓ ଚମାର 'ଶୂଦ୍ର' ବୋଲି ଘୃଣିତ ହେବେ—ଏଥିରେ କି ସାମାନ୍ୟତମ ଯୁକ୍ତିଯୁକ୍ତତା ବା ଯଥାର୍ଥତା ଥାଇପାରେ ? ଦିନେ 'ଜ୍ଞାନ' ଓ 'ବିଜ୍ଞାନ'କୁ ବଞ୍ଚେଇ ରଖିବାପାଇଁ ଓଡ଼ିଆ ରଜାମାନେ ଶତ ଶତ ବ୍ରାହ୍ମଣ ଶାସନ ବସାଇ ଯାଇଥିଲେ । ଆଜି ସେସବୁ ଗ୍ରାମରେ ଜ୍ଞାନ-ବିଜ୍ଞାନର ଗନ୍ଧ ତ ନାହିଁ, ବରଂ ପିଅନ ଗିରିରୁ ଆରମ୍ଭ କରି ସକଳ ପ୍ରକାର ସେବା ବା ଚାକିରି ଅନ୍ୱେଷଣରେ ଆଜି ଶାସନ ସବୁ ଖାଲି, ତେବେ 'ସେବା'ଟା କେବଳ ଶୂଦ୍ରର 'ସ୍ୱଭାବଜ' ବୋଲି ଏବେ ମଧ୍ୟ କିପରି ଗ୍ରହଣ କରାଯିବ ? ଅଥଚ ଅଧିକାଂଶ ତଥା-କଥିତ 'ଶୂଦ୍ର' ଆଦୌ ସେବାକାରୀ ନୁହନ୍ତି—ସେମାନେ ସଂପୂର୍ଣ୍ଣ ସ୍ୱାଧୀନ । ଯାହା ସ୍ୱଭାବଜ ତାହା ତ ଚିରନ୍ତନ ଓ ସାର୍ବଭୌମ ହେବାର କଥା । ପିଲାଙ୍କ ଖେଳ ଓ କୀଡ଼ ଓ ମିଷ୍ଟାନ୍ନ ପ୍ରିୟତା ସ୍ୱଭାବଜ । ଏହା ପୃଥିବୀର ସବୁଦେଶର ପିଲାଙ୍କ ପ୍ରତି ପ୍ରଯୁଜ୍ୟ । ସେହିପରି ନାରୀ ମାତ୍ରେ କେତେକ 'ସ୍ୱଭାବଜ' ଗୁଣ ଆଣିଥାନ୍ତି—ସେ ଯେଉଁ ଦେଶ, ଧର୍ମ, ବା ବର୍ଣ୍ଣର ନାରୀ ହୋଇଥାନ୍ତୁ । ତେଣୁ ଏହି ଅର୍ଥରେ ବ୍ରାହ୍ମଣ,ବୈଶ୍ୟ, ଶୂଦ୍ର ମାତ୍ରର ଏହା,ଏହା 'ସ୍ୱଭାବଜ' କର୍ମବୋଲି କହିବସିବା, ଘୋର ଅଯୌକ୍ତିକ ଓ ଅଯଥାର୍ଥ କଥା ହେବ । କାରଣ ଏ ବିଭାଗ କୌଣସି ଏକ ଦେଶର ସମାଜର ମନୁଷ୍ୟ କୃତ; ସାର୍ବଭୌମ ବା ସ୍ୱଭାବଜ ନୁହେଁ । ଦୃଷ୍ଟାନ୍ତ ସ୍ୱରୂପ ଏସିଆର ଅନ୍ୟ କୌଣସି ଦେଶରେ ଏପ୍ରକାର ଜନ୍ମ ନେଇ ଜାତି ବିଭାଗ ନାହିଁ । ଗୀତା ମଧ୍ୟ ଏ ଅର୍ଥରେ କୌଣସିଠାରେ ହେଲେ ସାମାନ୍ୟତମ ସୂଚନା ମଧ୍ୟ ଦେଇ ନାହାନ୍ତି । ଗୀତାଙ୍କର ପ୍ରକୃତ ଅର୍ଥ ଓ ଉଦ୍ଦେଶ୍ୟ ହେଉଛି —"ଏହି ଏହି ସ୍ୱଭାବଜ ଗୁଣ ଦେଖାଦେଲେ କାହାକୁ ବ୍ରାହ୍ମଣ ବା କ୍ଷତ୍ରିୟ ବା ଶୂଦ୍ର ବୋଲି ଧରାଯିବ ।"

ଅବଶ୍ୟ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଭିତରେ ଗୁଣନିର୍ବିଶେଷରେ କେବଳ ଜନ୍ମଗତ ଉଚ୍ଚନୀଚ ଭେଦବୋଧହିଁ ଏବର ହିନ୍ଦୁ ଜାତି-ପ୍ରଥାର ସବୁଠାରୁ ମାରାତ୍ମକ ଓ ଘୃଣ୍ୟାଂଶ । ନଚେତ ଯେ କୌଣସି ସମାଜରେ ଏ ପ୍ରକାର କର୍ମ-କେନ୍ଦ୍ରିକ ଶ୍ରେଣୀ ବିଭାଗ ସ୍ୱାଭାବିକ । ପାଶ୍ଚାତ୍ୟ ଦେଶମାନଙ୍କରେ ମଧ୍ୟ ଏହା କିଛି ଅସାଧାରଣ କଥା ନୁହେଁ ଯେ, ବହୁ ପୁରୁଷ ଧରି ଗୋଟାଏ ପରିବାର ଇଂଜିନିୟର ହୋଇ ଚାଲିଛନ୍ତି, ବା ଶିକ୍ଷକ-ଅଧ୍ୟାପକ ହୋଇ ଚାଲିଛନ୍ତି । ଚର୍ଚ୍ଚିଲଙ୍କ ବଂଶ ରାଜନୀତି ଓ ହକସିଲି-ବଂଶ ବୁଦ୍ଧିଜୀବୀ ଭାବରେ ବହୁ ପୁରୁଷ ଧରି ଇଂଲଣ୍ଡରେ ବିଖ୍ୟାତ । କିନ୍ତୁ କେବଳ ଏପ୍ରକାର କୌଣସି ବଂଶଗତ

ବୈଶିଷ୍ଟ୍ୟ ପାଇଁ କେହି ହେଲେ ସେସବୁ ଦେଶରେ ମାନବିକ ଶ୍ରେଷ୍ଠତା ଦାବୀ କରନ୍ତନି । ସେଠି ଚର୍ଚ୍ଚିଲ୍ ପ୍ରାଇମ୍ ମିନିଷ୍ଟର ହୁଏ, ବଂଶ ଯୋଗୁଁ ବା ଜନ୍ମ ଯୋଗୁଁ ନୁହେଁ, ବ୍ୟକ୍ତିଗତ ଗୁଣ ଓ କର୍ମ ଯୋଗୁଁ—ଯାହାକି ଗୀତାର ବାଣୀ । ସେହିପରି ବ୍ୟକ୍ତିଗତ ଗୁଣ ଓ କର୍ମ ଯୋଗୁଁହିଁ କାଠୁରିଆର ପୁଅ ଆବ୍ରାହାମ୍ ଲିନ୍‌କନ୍ ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ ହୁଏ ଏବଂ ମୋଚିର ପୁତୁର ରାମସେ ମାକ୍‌ଡୋନାଲ୍‌ଡ୍ ହୁଏ ଇଂଲଣ୍ଡର ପ୍ରାଇମ୍ ମିନଷ୍ଟର ।

ଗୀତାରେ ମଧ୍ୟ ସେହିପରି ସ୍ୱଭାବଜ ଗୁଣ ( ଆପ୍‌ଟିଚ୍ୟୁଡ୍) ନେଇହିଁ ମନୁଷ୍ୟର ଶ୍ରେଣୀ ବିଭାଗ କରାଯାଇଛି, ଅଥଚ କୌଣସିଠାରେ କର୍ମର ଭିନ୍ନତା ଯୋଗେ ଉଚ୍ଚନୀଚ ଭେଦର ନିର୍ଦ୍ଦେଶ ନାହିଁ । ବରଂ ଗୀତାର ଏହି ଅଧ୍ୟାୟର ପରବର୍ତ୍ତୀ ଦୁଇଟି ଶ୍ଳୋକ ଆମର ସମଗ୍ର ସାମାଜିକ-ବିଭିନ୍ନତା-ବୋଧକୁ ଧୂଳିସାତ୍ କରୁଛି । ଗୀତାର ଏହି ଶ୍ଳୋକ ଦୁଇଟି ସବୁଠାରୁ ଉଚ୍ଚରେ ବିପ୍ଳବାତ୍ମକ ପୁଣି ଉଦାତ୍ତ ଓ ମହତ୍ ଏବଂ ଗୀତା ଉପସ୍ଥାପିତ କରିଥିବା "କର୍ମଯୋଗ"ର ଏହାହିଁ ବୀଜ-ଚିନ୍ତା ବା କେନ୍ଦ୍ର-ଭାବ କହିବାକୁ ହେବ ।

( ୪୫-୪୬ )

ସ୍ୱେ ସ୍ୱେ କର୍ମଣ୍ୟଭିରତଃ ସଂସିଦ୍ଧିଂ ଲଭତେ ନରଃ
ସ୍ୱକର୍ମନିରତଃ ସିଦ୍ଧିଂ ଯଥା ବିନ୍ଦତି ତଚ୍ଛୃଣୁ ।୪୫।

ଯତଃ ପ୍ରବୃତ୍ତି ର୍ଭୂତାନାଂ ଯେନ ସର୍ବମିଦଂ ତତଂ
ସ୍ୱକର୍ମଣା ତମଭ୍ୟର୍ଚ୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ।୪୬।

ସ୍ୱେ ସ୍ୱେ କର୍ମଣି ଅଭିରତଃ ନରଃ (ପ୍ରତ୍ୟେକ ମନୁଷ୍ୟ ନିଜ ନିଜର କର୍ତ୍ତବ୍ୟ କର୍ମରେ ତତ୍ପର ରହିଲେହିଁ) ସଂସିଦ୍ଧିଂ ଲଭତେ (ସିଦ୍ଧି ଅର୍ଥାତ୍ ପାର୍ଥିବ ଓ ଆଧ୍ୟାତ୍ମିକ ଲକ୍ଷ୍ୟ ଲାଭ କରେ) । ସ୍ୱକର୍ମ ନିରତଃ ଯଥା ସିଦ୍ଧିଂ ବିନ୍ଦତି ତତ୍ ଶୃଣୁ (ନିଜ ନିଜ କାମଟିମାନଂକରେ ଲାଗି ରହି ମଧ୍ୟ ମନୁଷ୍ୟ ଯେପରି ବା ଯେ ହେତୁରୁ ସିଦ୍ଧି ବା ଆଧ୍ୟାତ୍ମିକ ଲକ୍ଷ୍ୟ ଲାଭ କରିପାରେ, ତାହା ଶୁଣ) । ଯତଃ ଭୂତାନାଂ ପ୍ରବୃତ୍ତିଃ (ଯେଉଁ ପରମେଶ୍ୱରଂକ ଠାରୁ ଜୀବ ସଂଘ ଉଦ୍ଭୂତ) [ପୁଣି] ଯେନ ଇଦଂ ସର୍ବଂ ତତମ୍ (ଯାହାଂକ ଦ୍ୱାରହିଁ ଏହି ସମଗ୍ର ବିଶ୍ୱ ପରିବ୍ୟାପ୍ତ) ମାନବଃ (ମନୁଷ୍ୟ [କେବଳ] ସ୍ୱକର୍ମଣା (ନିଜ କାମ ଦ୍ୱାରହିଁ) ତଂ ଅଭ୍ୟର୍ଚ୍ଚ୍ୟ (ସେହି ପରମେଶ୍ୱରଂକୁ ପୂଜା କରି) ସିଦ୍ଧିଂ ବିନ୍ଦତି (ଆଧ୍ୟାତ୍ମିକ ଲକ୍ଷ୍ୟ ଲାଭ କରେ) ।

## ଅନୁବାଦ—

ହେ ଅର୍ଜୁନ, କେବଳ 'ସ୍ୱଭାବଜ' 'ସ୍ୱଧର୍ମ' ଆଚରଣ କରିହିଁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ବୋଲି ପରିଗଣିତ ହେଉଥିବା ପ୍ରତ୍ୟେକଟି ନର ନାରୀ ସ୍ୱାଭାବିକ ଭାବରେ ଆଧ୍ୟାତ୍ମିକ ସିଦ୍ଧି ଲାଭ କରିଥାନ୍ତି । କିପରି କରନ୍ତି ତାହା ଶୁଣ । ଯାହାଙ୍କ ଠାରୁ ସକଳ ଜୀବର ଉତ୍ପତ୍ତି ଏବଂ ଯାହାଙ୍କ ଦ୍ୱାରହିଁ ଏହି ନିଖିଳ ସୃଷ୍ଟି ପରିବ୍ୟାପ୍ତ, ସେହି ପରମାତ୍ମାଙ୍କୁ ପ୍ରତ୍ୟେକ ମନୁଷ୍ୟ ନିଜ ନିଜର 'ସ୍ୱଭାବଜ ସ୍ୱଧର୍ମା-ନୁଚରଣ 'ଦେଇହିଁ ସହଜରେ ପାଇପାରିବ ।

## ବିଶେଷ ଭାଷ୍ୟ—

ପାଠକେ ମନେରଖିବେ ଯେ, ଏହି ଲେଖକ ମତରେ, ଗୀତାର ଏହି ଦୁଇଟି ଶ୍ଳୋକ ଗୀତାର ମୁଖ୍ୟତମ ଓ ସବୁଠାରୁ ଉତ୍କୃଷ୍ଟ ବାଣୀ । ଏହି ଦୁଇଟି ଶ୍ଳୋକରେ, ଧର୍ମ ବା ଆଧ୍ୟାତ୍ମିକ ସାଧନା ସାଧାରଣ ମନୁଷ୍ୟକୁ ସମାଜ-ପରିବାର-ସଂସାରରୁ ଅଲଗା କରିପକାଏ ବୋଲି, ଆମେ ଯେ ବିଶ୍ୱାସ କରିଆସିଛୁ, ତାକୁ ଦୂରୀଭୂତ କରି ସମସ୍ତ ଆଧ୍ୟାତ୍ମିକ ସାଧନାକୁ, ଗୀତା ଆମର ଦୈନନ୍ଦିନ ଜୀବନର ଧୂଳିଧୂସରତା ସହିତ ଏକୀଭୂତ କରିଦେଇ ଯାଇଛନ୍ତି । ବୋଧହୁଏ ଅନ୍ୟ କୌଣସି ହେଲେ ପ୍ରାଚୀନ ଧର୍ମ ଶାସ୍ତ୍ରରେ ଏ ପ୍ରକାର ଉଦାର ଓ ପ୍ରଜ୍ଞାବାନ ବାଣୀ ଘୋଷିତ ହୋଇ ନାହିଁ ଏବଂ ସେଥିପାଇଁ ଗୀତା ମଧ୍ୟ ଯଥୋଚିତ ଯୁକ୍ତି ଉପସ୍ଥାପିତ କରିଛନ୍ତି— ତା ପୁଣି ମନୋଜ୍ଞ ଶବ୍ଦ ଯୋଜନା ଦେଇ । ଆମେ ସମସ୍ତେ (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର) ସେହି ଏକ ପରମେଶ୍ୱରଙ୍କ ଠାରୁ ଆସିଛୁ (ଯତଃ ପ୍ରବୃତ୍ତିଃଭୂତାନାଂ) । ପୁଣି ସେହି ପରମେଶ୍ୱର କୌଣସି ଏକ ବିଶେଷ ସ୍ଥାନ (ମନ୍ଦିର, ଗୀର୍ଜା, ମସ୍‌ଜିଦ୍ ବା ଯେ କୌଣସି ତୀର୍ଥ) ବା ବିଶେଷ ବ୍ୟକ୍ତି ସଂଘ(ପୁରୋହିତ ସଂପ୍ରଦାୟ)କୁ ବିଶେଷ ଭାବରେ ଅନୁଗୃହୀତ କରୁନାହାନ୍ତି ଏହି ନିଖିଳ ସୃଷ୍ଟିର ପ୍ରତିଟି ସ୍ଥାନ ବ୍ୟକ୍ତି ଓ ଜୀବ ତାଙ୍କ ଦ୍ୱାରହିଁ ଆବୃତ (ଯେନ ସର୍ବମିଦଂ ତତମ୍) । ତେଣୁ ମନୁଷ୍ୟ ଭିତରେ କିଏ କିପରି ବଡ ବା କିଏ ସାନ ବୋଲ ଧରାଯିବେ ? ଈଶ୍ୱର ବ୍ରାହ୍ମଣଠାରେ ଯେପରି, ଶୂଦ୍ରଠାରେ ମଧ୍ୟ ସେହିପରି ମହାମହିମାରେ ବିରାଜିତ । କାହାର କର୍ମ ବା ତାଙ୍କ ଆଖିରେ ବଡ, କାହା କାମ ସାନ ହେବ ? କେଉଁ ଯୁକ୍ତିରେ ବା ତାହା ହେବ ? ତେଣୁହିଁ ଗୀତାଙ୍କର ଏହି ମହାନ୍ ଉଦାର ଘୋଷଣା ଯେ, ନିଜ ନିଜ କାମ ବା ପ୍ରତ୍ୟେକ ଲୋକ ତାର ସାମାଜିକ କର୍ତ୍ତବ୍ୟ ରୂପକ ସ୍ୱଧର୍ମର ସୁନିପୁଣ ସଂପାଦନା ଭିତର ଦେଇହିଁ, ଆମେ ଆମରି ଘରେ , ଅଫିସରେ, ଫାକ୍‌ଟ୍ରିରେ ବା ଚାଷଜମିରେ ମଧ୍ୟ ସେହି ସର୍ବବ୍ୟାପ୍ତ ପରମେଶ୍ୱରଙ୍କୁ ପାଇପାରିବା ।

ଧର୍ମ ସାଧନା ସଂପର୍କରେ ଯା ଠାରୁ ଉଦାରତର, ମହତ୍ତର ବା ଅଧିକତର ଯୁକ୍ତିଯୁକ୍ତ ବାଣୀ ଆଉ ଥାଇ ନପାରେ । ଏବଂ ନିଜର ପାରିବାରିକ ଓ ସାମାଜିକ ଜୀବନକୁ ନିଜର ଦୈନନ୍ଦିନ କର୍ତ୍ତବ୍ୟ ସଂପାଦନାରେ ଅବହେଳା ଦେଇ କଳୁଷିତ କରି ଚାଲି ମଧ୍ୟ । ବାହ୍ୟ ପୂଜା-ପ୍ରାର୍ଥନା, ତୀର୍ଥ-ଯାତ୍ରା ବା ଦାନ ଧର୍ମାଦି ଦ୍ୱାରା ଆଧ୍ୟାତ୍ମିକ ଉନ୍ନତ ଲାଭ କରିବା ବା ଈଶ୍ୱରାନୁଭବ ଆଶା କରିବା, କେଉଁ ଯୁକ୍ତି ବା ବିଚାରଣା ଦ୍ୱାରା ଯଥାର୍ଥ ହୋଇପାରେ, ବୁଝି ହେଉନ ।

ଆମ୍ଭେମାନେ ବାରଂବାର ଯେ କହିଆସିଛୁ, ଗୀତା ସାଧାରଣ ନାଗରିକର (ସେ ଯେଉଁ ଧର୍ମର ବା ଦେଶର ବା ରାଷ୍ଟ୍ରର ଲୋକ ହେଉନ୍ତୁ ନା କାହିଁକି, ଏପରିକି ନିରୀଶ୍ୱର କମ୍ୟୁନିଷ୍ଟ ମଧ୍ୟ ହୋଇ ପାରନ୍ତି) ଦୈନନ୍ଦିନ ଜୀବନର ଧର୍ମ-ଗ୍ରନ୍ଥ ଓ ଜୀବନ-ଦର୍ଶନ, ତାହାହିଁ ଗୀତାର ପରମ ଓ ଚରମ ମହନୀୟତା । ତାହା ଏହି ଦୁଇଟି ଶ୍ଳୋକରେହିଁ ପରମ ମଂଜୁଳ ଭାବରେ ପ୍ରକାଶିତ ।

ଏହି ବାଣୀକୁ ପରବର୍ତ୍ତୀ ଆହୁରି ଦୁଇଟି ଶ୍ଳୋକରେ, ଗୀତା ଦ୍ୱୈତ ଜାଣି ଜାଣି, ଆହୁରି ତୀବ୍ରତର ଭାବରେ ପ୍ରକାଶ କରୁଛନ୍ତି ।

( ୪୭ )

ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍
ସ୍ୱଭାବ ନିୟତଂ କର୍ମ କୁର୍ବନ୍ନାପ୍ନୋତି କିଲ୍‌ବିଷଂ ।୪୭।

ବିଗୁଣ ସ୍ୱଧର୍ମଃ (ନିଜର ଧର୍ମ ଆପାତତଃ ଗୁଣହୀନ ବୋଧ ହେଲେହେଁ) ସ୍ୱନୁଷ୍ଠିତାତ୍ ପରଧର୍ମାତ୍(ଉତ୍ତମ ଅନୁଷ୍ଠିତ ପରଧର୍ମ ଅପେକ୍ଷା) ଶ୍ରେୟାନ୍(ଶ୍ରେଷ୍ଠ)। ସ୍ୱଭାବ ନିୟତଂ କର୍ମ କୁର୍ବନ୍ (ସ୍ୱାଭାବିକ ଗୁଣାନୁଗତ କୌଣସି କର୍ମ କରି) [ମନୁଷ୍ୟ] କିଲ୍‌ବିଷଂ ନ ଆପ୍ନୋତି (କୌଣସି ପାପ କଲ ବୋଲି କୁହାଯିବ ନାହିଁ ) ।

ଅନୁବାଦ—

ତେଣୁ ହେ ଅର୍ଜୁନ, ନିଜର ସ୍ୱଭାବଜ ସ୍ୱଧର୍ମ ସ୍ୱାଦହୀନ ବୋଧ ହେଲେହେଁ ଉତ୍ତମାନୁଷ୍ଠାନ ବୋଲି ପ୍ରତୀୟମାନ ଅନ୍ୟଜନର ଧର୍ମଠାରୁ ଉତ୍କୃଷ୍ଟ-ତର ବୋଲି ଜାଣିବ । କୌଣସି ମନୁଷ୍ୟ ନିଜର ସ୍ୱ-ଭାବ-ପ୍ରଣୋଦିତ କର୍ମ କରି ପାପଭାଗୀ ହୋଇ ନଥାଏ ।

( ୪୮ )

ସହଜଂ କର୍ମ କୌନ୍ତେୟ, ସଦୋଷମପି ନ ତ୍ୟଜେତ୍
ସର୍ବାରମ୍ଭାହି ଦୋଷେଣ ଧୂମେନାଗ୍ନିରିବାବୃତାଃ ।୪୮।

[ହେ] କୌନ୍ତେୟ (ଅର୍ଜୁନ) ସେଦୋଷଂ ଅପି (ଦୋଷଯୁକ୍ତ ହୋଇଥିଲେ ମଧ୍ୟ) ସହଜଂ କର୍ମ ନ ତ୍ୟଜେତ୍ (ସ୍ୱଭବ ପ୍ରଣୋଦିତ କର୍ମ ପରିତ୍ୟାଗ କରିବା ଉଚିତ ନୁହେଁ । ହି (ଯେହେତୁ) ସର୍ବାରମ୍ଭା (ସମସ୍ତ କର୍ମ) ଧୂମେନ ଅଗ୍ନିଃଇବ ଦୋଷେଣ ଆବୃତାଃ (ଧୂଆଁ ଦ୍ୱାର ନଆଁ ଆଚ୍ଛାଦିତ ହେଲା ପରି, କୌଣସି ନା କୌଣସି ଦୋଷଦ୍ୱାର ଆବୃତ ।

ଅନୁବାଦ—

ହେ ଅର୍ଜୁନ, ଯେଉଁ କର୍ମ ମନୁଷ୍ୟ ପ୍ରତି ସ୍ୱାଭବିକ ଓ ଯାହା ସହଜାତ, ତାହା ଆଦୌ ପରିତ୍ୟାଜ୍ୟ ନୁହେଁ । କାରଣ ଏହା ମଧ୍ୟ ମନେରଖିଥିବ ଯେ, ଏ ଜଗତରେ ଛୋଟ ବଡ ସକଳ କର୍ମହିଁ, ନିଆଁ ଧୂଆଁ ଦ୍ୱାର ଆଚ୍ଛାଦିତ ହେଲା ପରି କିଛ ନା କଛ ଦୋଷଦ୍ୱାର ଦୂଷିତ ।

ବଶେଷ ଭାଷ୍ୟ—

ପାଠକେ ଏହି ଦୁଇଟି ଶ୍ଳୋକରେ ଦୁଇଟି ଶବ୍ଦ ଧର୍ମ' ଓ 'କର୍ମ' ଯାହା ବ୍ୟବହାର କରଯାଇଛି ତା'କୁ ଲକ୍ଷ୍ୟ କରିବେ । ମନୁଷ୍ୟର କେଉଁ କର୍ମ ଓ କେଉଁ ଧର୍ମକୁ ଗୀତା ଲକ୍ଷ୍ୟକର ଏସବୁ ଉପଦେଶ ଦେଇ ଚାଲିଛନ୍ତି ? ଗୀତା କୌଣସିଠାରେ କୌଣସି ଆନୁଷ୍ଠାନିକ ଧର୍ମ ପ୍ରଚ୍ଚର କରିନାହାନ୍ତି । ଖ୍ରୀଷ୍ଟାନ, ଇସଲାମ, ବା ବୈଦିକ-ବ୍ରାହ୍ମଣ୍ୟ ଧର୍ମ ହେଲେ ଆନୁଷ୍ଠାନିକ ଧର୍ମସବୁ । ଏମାନଙ୍କ ଭିତରୁ ଯେକୌଣସି ଧର୍ମଟିକୁ ଗ୍ରହଣ କଲେ, ଗ୍ରହୀତାକୁ ଆଗ ବିନା ପ୍ରଶ୍ନରେ ଓ ବିନା ବିଚାରରେ କେତେଗୁଡ଼ଏ କଥା ମାନ ନେବାକୁ ହେବ । ଯୀଶୁଖ୍ରୀଷ୍ଟଂକୁ ଏକମାତ୍ର ତ୍ରାଣକର୍ତ୍ତା ବୋଲି ମାନବା ହେଲା ଖ୍ରୀଷ୍ଟାନ ବୋଲେଇବାର ପ୍ରଥମ ପଦ-କ୍ଷେପ । ଇସଲାମରେ ସେହିପରି ମାନବାକୁ ହେବ ମହମ୍ମଦଂକୁ ଆଲ୍ଲାଂକର ପ୍ରୋଫେଟ୍ ଭବରେ । ବୈଦିକ-ବ୍ରାହ୍ମଣ୍ୟ ଧର୍ମ ଅର୍ଥାତ୍ ହିନ୍ଦୁ ଧର୍ମରେ ସେହିପରି ଜାତି-ପ୍ରଥା, ଗୋ ବ୍ରାହ୍ମଣ ଭକ୍ତି ଓ ପୌତ୍ତଳିକତା ମଧ୍ୟ ମାନିବାକୁ ହେବ ଏବଂ ମନେ ମଧ୍ୟ ରଖିବାକୁ ହେବ ଯେ ଏହି କୁସଂସ୍କାରଗ୍ରସ୍ତ ରକ୍ଷଣ-ଶୀଳତା ଯୋଗୁଁହିଁ ହିନ୍ଦୁ- ଧର୍ମ କ୍ରମ-କ୍ଷୟିଷ୍ଣୁ ହୋଇ ଚାଲିଛି ଏବଂ ତାକୁ ଖଣ୍ଡ ଖଣ୍ଡ କରି ବାଣ୍ଟିନେଇ ଚାଲିଛନ୍ତି ଇସ୍‌ଲାମ୍ ଓ ଖ୍ରୀଷ୍ଟଧର୍ମ । ଭରତୀୟ ଧର୍ମ-

ସଂସାରରେ କୌଣସି ହେଲେ ମତାନ୍ଧତା ନଥିଲା ବା ନାହିଁ କେବଳ ଗୌତମ ବୁଦ୍ଧଂକ ବାଣୀରେ ଓ ଶ୍ରୀକୃଷ୍ଣଂକ ବାଣୀ ଏହି ଗୀତାରେ । ବୌଦ୍ଧଧର୍ମର ଏବାଉ ସୁପରିଚିତ "ବୁଦ୍ଧଂ ଶରଣଂ ଗଚ୍ଛାମି" ବୁଦ୍ଧଂକ ବହୁ ପରେ ପ୍ରବର୍ତ୍ତିତ ଏବଂ ତାହା ମଧ୍ୟ କପିଳବାସ୍ତୁର ଯୁବରାଜଙ୍କୁ ନ ବୁଝାଇ ବୁଝାଏ ଯେ କୌଣସି ବୋଧି-ପ୍ରାପ୍ତ ବର୍ଣ୍ଣେଣ୍ୟ ଆଚାର୍ଯ୍ୟଂକୁ । ଗୀତାରେ 'ମୁଁ' ଅର୍ଥରେ ସେହିପରି ବକ୍ତା ଶ୍ରୀକୃଷ୍ଣଂକୁ ଯୋଇବା ବୋଧହୁଏ ପରବର୍ତ୍ତୀ ପ୍ରଚେଷ୍ଟା । ନଚେତ୍ ଉପରର ଏହି ଦୁଇ ଉଦାର-ମହତ୍ ଶ୍ଳୋକ ସଂପୂର୍ଣ୍ଣ ଅର୍ଥହୀନ ଓ ନନ୍‌ସେନ୍‌ସ (nonsense) ହୋଇ ଉଠିବ । ଗୀତା କେବଳ ଏଠାରେ ନୁହେଁ, ସର୍ବତ୍ର ଧର୍ମ ଓ କର୍ମକୁ ସମାନ ଅର୍ଥରେ ଗ୍ରହଣ କରି ଆସିଛନ୍ତି । କୌଣସି ଏକ ପ୍ରସ୍ତରକର ଯୁକ୍ତିହୀନ ନିର୍ଦ୍ଦେଶ ଗୀତାର ଧର୍ମ ନୁହେଁ । ଗୀତାର ଧର୍ମ, ବିଶ୍ୱର ଅନ୍ତର୍ନିହିତ ପ୍ରାକୃତିକ ନିୟମମାନଂକ ଉପରେ ପ୍ରତିଷ୍ଠିତ । ତେଣୁ ଏହା ଏକାନ୍ତରେ ଏକ ସ୍ୱାଭାବିକ ଧର୍ମ । ସୃଷ୍ଟିର ବା ପ୍ରକୃତିର ମୁଖ୍ୟ ଅନ୍ତର୍ନିହିତ ନିୟମ ହେଲା ଯଜ୍ଞ ଓ ପାରସ୍ପରିକ ନିର୍ଭରତା । ଗୀତା ତୃତୀୟ ଅଧ୍ୟାୟରେ ତେଣୁ ସମଗ୍ର ସୃଷ୍ଟି ସହିତ ମନୁଷ୍ୟ ଜୀବନ ମଧ୍ୟ କପରି ପରସ୍ପର-ନିର୍ଭର, ତାହା କପର ମହତ୍—ମନୋଜ୍ଞ ଯଜ୍ଞ-ଚକ୍ର ଉପରେ ଦଣ୍ଡାୟମାନ ତାହା ବ୍ୟାଖ୍ୟାନ କରିସାରିଛନ୍ତି । ଗୀତାର 'ଧର୍ମ'ହିଁ ତେଣୁ 'ଯଜ୍ଞ' ଏବଂ ସେ ଯଜ୍ଞ ବ୍ରାହ୍ମଣ-ଅଣାଇ-ଘିଅ-ପୋଡ଼ିବା ନୁହେଁ, ସେ ଯଜ୍ଞ ହେଲା ଆମ ପ୍ରତ୍ୟେକର ଦୈନନ୍ଦିନ କର୍ମ । ଗୀତାର ଧର୍ମ (ଯଜ୍ଞ) ଓ କର୍ମ ତେଣୁ ଅଭିନ୍ନ । ଗୀତା "ଧର୍ମ" ଅର୍ଥରେ ହିନ୍ଦୁ, ମୁସଲମାନ, ଜୈନ, ବା ଖ୍ରୀଷ୍ଟାନ ଧର୍ମ କଥା କହୁନାହାନ୍ତି ବା କର୍ମ ଅର୍ଥରେ କହୁ ନାହାନ୍ତି । ବ୍ରାହ୍ମଣର ବା ଶୂଦ୍ରର ବା କ୍ଷତ୍ରିୟର କର୍ମ ।

ଗୋଟିଏ 'କର୍ମ'ର କଥା ବିସ୍ତର କଲେ ଗୀତାର ଉଦ୍ଦେଶ୍ୟ ଅତି ସ୍ପଷ୍ଟ ହେବ । ଭାରତବର୍ଷରେ ସହସ୍ର ସହସ୍ର ବର୍ଷ ଧରି ଗୁରୁ ବା ଶିକ୍ଷକର କର୍ମ ଅତି ପବିତ୍ର ଓ ସମ୍ମାନନୀୟ ବିବେଚିତ ହୋଇ ଆସିଥିଲା । ଭାରତ ସ୍ୱାଧୀନତା ପାଇବା ପର୍ଯ୍ୟନ୍ତ ଏ ଅବସ୍ଥା ଏକ ପ୍ରକାର ସେହିପରି ଥିଲା । ସ୍ୱାଧୀନତା ପରେ କୋଡ଼ିଏ ବର୍ଷର କଂଗ୍ରେସ ଶାସନରେ ସହସ୍ର ସହସ୍ର ବର୍ଷର ଏହି ସୁପ୍ରାଚୀନ ଓ ମହନୀୟ, ଅତୀବ କଲ୍ୟାଣମୟ ସଂସ୍କୃତି ଧୂଳିସାତ୍ ହୋଇ ପଡ଼ିଲା । କାରଣ ସ୍ୱାଧୀନତା ପରେ ସବୁଠି ଦେଖାଗଲା ଦର-ପାଠୁଆ, ଅପାଠୁଆ, ମୂର୍ଖ, ନୈତିକତାବିହୀନ ଓ ଚରିତ୍ରହୀନ ଲୋକଂକର 'ପଲିଟିକ୍‌ସ୍' ଓ 'ଭୋଟ-ବାକ୍‌ସ' ଦେଇ ଜାତୀୟ ଜୀବନରେ ଅଶ୍ରୁତ-ପୂର୍ବ ଓ ଅକଳ୍ପନୀୟ ଆବିର୍ଭାବ ଓ ଅଭ୍ୟୁଦୟ । ଏହି ବିଗତ ଐତିହାସିକ ଦେଶ ଓ ସମାଜର ସବୁ ଶ୍ରେଣୀର ଲୋକଂକର ଭାଗ୍ୟକୁ ଏହି ମୂର୍ଖ-ପାଷଣ୍ଡ ଦଳ ନିୟନ୍ତ୍ରିତ କଲେ । ୟାଂକ ଦୁଆରକୁ ନ ଦୌଡ଼ିଲେ, କାହାର

କୌଣସି କାମ ହୋଇ ପାରିଲାନ । ଫଳରେ ଦେଖାଗଲା ଯେ, ଦେଶର ସର୍ବାଂଚଳର ଶିକ୍ଷକ ଓ ଛାତ୍ର ମଧ୍ୟ ଜ୍ଞାନ-ସାଧାନାର ପବିତ୍ର ପଥ ଛାଡଦେଇ ସଦା ସଦା ସୁବିଧା ପାଇଁ ଏଇ ପାଷଣ୍ଡ ଦଳର 'ପଲିଟିକ୍ସ' ପାଛେ ଦଉଡ଼ିଲେ, ଶିକ୍ଷକେ ତାଂକ ସୁବିଧା ପାଇଁ, ଛାତ୍ରେ ତାଂକ ସୁବିଧା ପାଇଁ । ଏହିପରି ଭାବରେ ଏମାନେ ନିଜନିଜର ଉଭୟ ଧର୍ମ ଓ କର୍ମକୁ ନଷ୍ଟକରି, ସମଗ୍ର ଦେଶ ଓ ଜାତିର ଅଧଃପତନର ବ୍ୟବସ୍ଥା କଲେ—ଅବଶ୍ୟ ନିଜ ନିଜର ଅଧଃପତନ ସହିତ ।

ଏହା ଜଣାକଥା ଯେ ଭାରତବର୍ଷରେ ଆଜିର ଅଧିକାଂଶ ଛାତ୍ର ବା ଶିକ୍ଷକ-ଅଧ୍ୟାପକ ଆଦୌ 'ସ୍ୱଭାବଜ' ଛାତ୍ର-ଶିକ୍ଷକ-ଅଧ୍ୟାପକ ନୁହନ୍ତି । ଏମାନଂକ ଭିତରୁ ଅଧିକାଂଶ ବାସ୍ତବରେ କୃଷି ବା ଫାକ୍ଟରୀମାନଂକ ପାଇଁ ହିଁ ଅଧିକ ଯୋଗ୍ୟ-ସ୍କୁଲ-କଲେଜ ପାଇଁ ନୁହେଁ । ସ୍କୁଲ-କଲେଜକୁ ଆସି ସେମାନେ ବରଂ ନିଜର 'ସ୍ୱଭାବଜ' ଧର୍ମ ହରାଇ ବସୁଛନ୍ତି ଏବଂ ଫଳରେ ସମଗ୍ର ସମାଜ ପାଇଁ ବିଭ୍ରାଟ ସୃଷ୍ଟି କରୁଛନ୍ତି । ଯେ କେତେଜଣ ଛାତ୍ର-ଶିକ୍ଷକ-ଅଧ୍ୟାପକଂକ "ସ୍ୱଭାବଜ" ଜ୍ଞାନ-ସ୍ପୃହା ଥିଲା ସେମାନଂକର ସେହି ଧର୍ମରେହିଁ "ଧୃତି" ବା ଧୈର୍ଯ୍ୟର ସହିତ ଦୃଢଭାବରେ ଦଣ୍ଡାୟମାନ ରହିବା ଉଚିତ ଥିଲା । ଯେହେତୁ ଏଇ ପ୍ରକାର ପାଁଚଟି ଛାତ୍ର ବା ଶିକ୍ଷକ ଦୃଢଚିତ୍ତ ରହିଥିଲେ ଅର୍ଥାତ୍ ନିଜର ସ୍ୱଭାବଜ ଧର୍ମ ଓ କର୍ମକୁ ରକ୍ଷା କରିଥିଲେ ସ୍ୱାଧୀନତୋତ୍ତର ଭାରତବର୍ଷରେ ଦେଖାଦେଇ ଥିବା ବୈପ୍ଲବିକ ବିତ୍‌ପାତ ଘଟିନଥାନ୍ତା ।

ଅବଶ୍ୟ ଗୀତାର ସମସାମୟିକ କାଳରେ ବ୍ରାହ୍ମଣ୍ୟ ଧର୍ମ ପରିତ୍ୟାଗ କରି ଭାରତର ଜନତା ବୌଦ୍ଧ ଓ ଜୈନ ଇତ୍ୟାଦି ବିଦ୍ରୋହୀ ଧର୍ମମାନଂକୁ ପଳାଇ ଯାଉଥିଲେ । ତୁଏଡ ଗୀତା ପରୋକ୍ଷରେ ସେହି ସଂପର୍କରେ ସ୍ୱ-ଧର୍ମ ଓ ପର-ଧର୍ମ ଶବ୍ଦ ବ୍ୟବହାର କରିଥାଇ ପାରନ୍ତି । ଏବଂ ତାହା ମଧ୍ୟ ଗୀତାର ଉପଦେଶ ଅନୁଯାୟୀ ବିଗ୍ଭରଣୀୟ । କୌଣସି ଲୋକ ନିଜ ଧର୍ମକୁ ଛାଡ ଦେଇ, ଅନ୍ୟ ଧର୍ମକୁ ପଳେଇ ଯିବାରେ ତାଂକର ସ୍ୱର୍ଗ ବା ଈଶ୍ୱର ପ୍ରାପ୍ତି ନିକଟତର ବା ସହଜତର ହୋଇଗଲା ବୋଲି ମନେକରିବା ଘୋର ମୂର୍ଖତା । ଈଶ୍ୱର ଯେ କୌଣସି ଧର୍ମରେ ଅନୁଭବ୍ୟ—ଏବଂ ତାହା ଏକାନ୍ତରେ ବ୍ୟକ୍ତିଗତ ଶ୍ରଦ୍ଧା, ଉତ୍ସାହ ଓ ବିଶ୍ୱାସ ଉପରେହିଁ ନିର୍ଭର କରେ । ଅନ୍ୟପକ୍ଷରେ ପ୍ରତ୍ୟେକ ଆନିଷ୍ଠାନିକ ଧର୍ମ ଓ ପ୍ରତ୍ୟେକଟି ସାମାଜିକ କର୍ମ ସହିତ ଆନୁସଙ୍ଗିକ ଦୋଷ ଓ ଜଂଜାଳ ଜଡିତ । କାହାର ଜୀବନରେ ବା କେଉଁ ଦେଶର ସମାଜରେ ଆନୁପାତିକ ଦୁଃଖ, ବ୍ୟାଧି, ବାଧା, ବିପଦ, ଦ୍ୱେଷ, ଘୃଣା, ଜଂଜାଳ, ଦାରିଦ୍ର୍ୟାଦି ନାହିଁ ? ସେ ହେଉନୁ ଖ୍ରୀଷ୍ଟାନ, ବା ହିନ୍ଦୁ ବା ମୁସଲମାନ । ଗୀତା ତେଣୁହିଁ ଯଥାର୍ଥରେ କହିଛନ୍ତି

"ସର୍ବାରମ୍ଭାହି ଦୋଷେଣ ଧୂମେନାଗ୍ନି ରିବାବୃତାଃ" ଏବଂ ତେଣୁ, ଧର୍ମ-ଓ ସମାଜ-ନିର୍ବିଶେଷରେ ଗୀତା ପ୍ରତ୍ୟେକଟି ମନୁଷ୍ୟକୁ ଉଦାର-ମହତ୍ ଉପଦେଶ ଦେଉଛନ୍ତି ସହଜଂ କର୍ମ କୌନ୍ତେୟ ସଦୋଷମପି ନ ତ୍ୟଜେତ୍ ।

ପୁଣି ମନେରଖିବାକୁ ହେବ ଯେ ଗୀତାର ଉପଦେଶ ନୁହେଁ ଖାଲି ନିଜ ନିଜର ଥାନଟିମାନ ଜାବୁଡ଼ି ଧରି ରହିବା । ପ୍ରତ୍ୟେକ ଲୋକ ନିଜ ସ୍ଥାନରେ ରହି ନିଜ କାମଟି ଏପରି କରିବା ଉଚିତ ଯେପରି ଏହା ଈଶ୍ୱରଙ୍କ ପ୍ରତି ଏକ 'ଅର୍ଚ୍ଚନା'ରେ ପରିଣତ ହୋଇ ଉଠିବ—ସ୍ୱକର୍ମଣା ତମଭ୍ୟର୍ଚ୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ । ପୂର୍ବେ ସେଇଥିପାଇଁ ଗୀତା କହିସାରିଛନ୍ତି ସାଧାରଣ ମନୁଷ୍ୟ ପାଇଁ ଯୋଗ ଆଉ କିଛି ନୁହେଁ, ତାହା କେବଳ ଉପର ନିଜନିଜ କର୍ମ ବା କର୍ତ୍ତବ୍ୟଟି ମାନ ଆମେ ସୁସଂପନ୍ନ କରିବାର ଜ୍ଞାନ ଯୋଗଃ କର୍ମସୁ କୌଶଳଂ ।

ସେହି ସ୍ୱାନୁଷ୍ଠିତ ସ୍ୱ କର୍ମହିଁ ଯେ ଗୀତାର ପରମ ଧର୍ମ । ଠକାମିଯୁକ୍ତ ବ୍ରାହ୍ମଣ ବା ମନ୍ତ୍ରୀ ବା କିରାଣୀର କର୍ମ ଅପେକ୍ଷା ସୁସଂପାଦିତ ଏକ ମେହେନ୍ତରର କର୍ମ ଈଶ୍ୱରଙ୍କ ନିକଟରେ ନିଶ୍ଚୟ ଅଧିକ ମୂଲ୍ୟବାନ । ଏହା ଯେପରି ଗୀତାର ପ୍ରତ୍ୟେକ ପାଠକ ଦୃଢ଼ଭାବରେ ସ୍ମରଣ ରଖନ୍ତି । ପରବର୍ତ୍ତୀ ଶ୍ଳୋକରେ ଏହା ଦୃଢ଼ତର ଓ ସ୍ପଷ୍ଟତର ଭାବରେ କୁହାଯାଉଛି ।

( ୪୯ )

ଅସକ୍ତବୁଦ୍ଧିଃ ସର୍ବତ୍ର ଜିତାତ୍ମା ବିଗତ ସ୍ପୃହଃ
ନୈଷ୍କର୍ମ୍ୟସିଦ୍ଧିଂ ପରମାଂ ସନ୍ନ୍ୟାସେନାଧିଗଚ୍ଛତି ।୪୯।

ସର୍ବତ୍ର (ସାମାଜିକ-ସ୍ଥାନ ବା କର୍ତ୍ତବ୍ୟ-ନିର୍ବିଶେଷରେ ସବୁଠାରେ) [ଯେ] ଅସକ୍ତ ବୁଦ୍ଧିଃ (ଆସକ୍ତି ଶୂନ୍ୟ) ଜିତାତ୍ମା (ଆତ୍ମଜିତ୍ ) ବିଗତସ୍ପୃହଃ (ଅଭିଳାଷଶୂନ୍ୟ) [ସେପରି ଲୋକ] ସନ୍ନ୍ୟାସେନ (ସେହି ଆସକ୍ତିଶୂନ୍ୟ ଫଳା-ଭିଳାଷହୀନତା ଫଳରେହିଁ) ପରମାଂ ନୈଷ୍କର୍ମ୍ୟସିଦ୍ଧିଂ ଅଧିଗଚ୍ଛତି (ପ୍ରକୃତ କର୍ମହୀନତା ବା କର୍ମ-ମୁକ୍ତି, ଅର୍ଥାତ୍ ମୋକ୍ଷରୂପକ ପରମ ସିଦ୍ଧିକୁ ପ୍ରାପ୍ତ ହୋଇ ଥାନ୍ତି) ।

**ଅନୁବାଦ—**

ହେ ଅର୍ଜ୍ଜୁନ, ତେଣୁ ମନେରଖିବ ଯେ ଜନ୍ମଗତ- ସାମାଜିକ- ସ୍ଥିତି-ନିର୍ବିଶେଷରେ ଯେ କୌଣସି ମନୁଷ୍ୟ, ଯିଏ ବିଷୟାସକ୍ତିଶୂନ୍ୟ, ଆତ୍ମଜୟୀ ଓ

ଅଭିଳାଷ ଶୂନ୍ୟ, ସେ ସଂସାରରେ ରହି ମଧ୍ୟ, ତାଂକର ଫଳାଶାହୀନତା ଓ ଆସକ୍ତି ଶୂନ୍ୟତା ରୂପକ ଆଭ୍ୟନ୍ତରୀଣ ସନ୍ନ୍ୟାସ ବା ତ୍ୟାଗ ଫଳରେହିଁ ନୈଷ୍କର୍ମ୍ୟ ବା ମୁକ୍ତି ରୂପକ ପରମା ସିଦ୍ଧି ସହଜରେ ଲାଭ କରିଥାନ୍ତି ।

**ବିଶେଷ ଭାଷ୍ୟ—**

ଗୀତାର ଏହି ଶେଷ ଅଧ୍ୟାୟରେ ପାଠକେ ଗୀତାରେ ବ୍ୟବହୃତ 'କର୍ମ' ଶବ୍ଦର ଯେଉଁସବୁ ବିଭିନ୍ନ ତାତ୍ପର୍ଯ୍ୟ ଯାହାକି ଯଥା ସ୍ଥାନରେ ଆଗରୁ କୁହାଯାଇଛି, ତାହାକୁ ମନକୁ ଆଣନ୍ତୁ । ଚତୁର୍ଥ ଅଧ୍ୟାୟର ୧୭ ଶ୍ଳୋକଟି ପାଠକେ, ଏ ସଂପର୍କରେ ମନନ କରିବେ—

କର୍ମଣୋ ହ୍ୟପି ବୋଦ୍ଧବ୍ୟଂ, ବୋଦ୍ଧବ୍ୟଂ ଚ ବିକର୍ମଣଃ<br>
ଅକର୍ମଣଶ୍ଚ ବୋଦ୍ଧବ୍ୟଂ, ଗହନା କର୍ମଣୋ ଗତିଃ ।

(କର୍ମ କ'ଣ, ବୁଝିରଖିବାକୁ ହେବ, ବିକର୍ମ କ'ଣ ଜାଣିରଖିବାକୁ ହେବ, ସେହିପରି ଅକର୍ମ କ'ଣ ତା ମଧ୍ୟ ଜାଣିରଖିବାକୁ ହେବ । କର୍ମର ତାତ୍ପର୍ଯ୍ୟ ବଡ଼ ଜଟିଳ) ।

ଗୀତାର 'କର୍ମ' ହେଲା ପ୍ରତ୍ୟେକ ମନୁଷ୍ୟର 'ସ୍ୱଭାବଜ କର୍ମ' ବା ଆମ ପ୍ରତ୍ୟେକଂକର ମାନବିକ, ସାମାଜିକ, ପାରିବାରିକ ବା ରାଷ୍ଟ୍ରୀୟ 'କର୍ତ୍ତବ୍ୟ' । ଅକର୍ମ ହେଲା, କିଛି କାମ ନ କରିବା, ଅର୍ଥାତ୍ ଅଳସୁଆ ହୋଇ ପର ଉପରେ ନିର୍ଭର କରି ଜୀବନ ଯାପନ କରିବା, ଯାହା ଗୀତା ଆଦୌ ପସନ୍ଦ କରନ୍ତି ନାହିଁ । 'ବିକର୍ମ' ହେଲା ଦୁଷ୍କର୍ମ ବା କୁକର୍ମ ଯାହାକି ନ କରିବା କଥା । 'କର୍ମ' ଦେଇହିଁ ଗୀତା ଉପଦେଶ ଦେଇ ଆସିଛନ୍ତି ଆଧ୍ୟାତ୍ମିକ 'ନୈଷ୍କର୍ମ୍ୟ' ଆଡ଼କୁ ଯିବାପାଇଁ— ଅର୍ଥାତ୍ ସେହି କର୍ମ; ଯାହା ଅନାସକ୍ତ, ଅଫଳାଭିଳାଷୀ ଓ ନିଃସ୍ୱାର୍ଥପର, ଅଥଚ ସୁସଂପାଦନା ଯୋଗେ ଯଜ୍ଞ ବା ଅର୍ଚ୍ଚନା ହୋଇପିବା ହେତୁ ଆଉ ଅଧିକା କର୍ମ ବା କର୍ମଜନିତ ବଂଧନ ସୃଷ୍ଟି କରଏ ନାହିଁ କେବଳ ନୁହେଁ, ବରଂ ପୂର୍ବର କର୍ମଜନିତ ଜମାଖର୍ଚ୍ଚକୁ ପୋଛି ଦେଇଥାଏ ।

ଗୀତା, ତେଣୁ ଉପରେ ଉଭୟ 'କର୍ମତ୍ୟାଗ' ଓ 'ଧର୍ମ ତ୍ୟାଗ'ର ଅନାବଶ୍ୟକତା ଓ ମାରାତ୍ମକତା ବୁଝାଇସାରିବା ପରେ, ଏ ଶ୍ଳୋକରେ ସେ ସଂପର୍କରେ ଶେଷକଥା କହି ରଖୁଛନ୍ତି । ସେ କହୁଛନ୍ତି ଯେ, ଛୋଟ ବଡ଼ ଯିଏ ଯେଉଁ କର୍ମରେ ନିଯୁକ୍ତ ଥାଉନା କାହିଁକି, ସେ ଯଦି ତାହା ନିଃସ୍ୱାର୍ଥପରତା ଓ ଆନ୍ତରିକତା ସହିତ ଫଳାକାଙ୍କ୍ଷା ନରଖି କାମଟିକୁ "ଅର୍ଚ୍ଚନା" ମନେ କରି ଚାଲନ୍ତି, ତେବେ ତାହାହିଁ ହେବ ତାଂକର ଶ୍ରେଷ୍ଠ ଧର୍ମ-ସାଧନା, ଏବଂ ସେ ସେହି

ମାର୍ଗରେହିଁ ସକଳ ଆଧ୍ୟାତ୍ମିକ ଲକ୍ଷ୍ୟରେ ପହଁଚି ପାରିବେ । ତାଂକୁ ଯାଗଯଜ୍ଞ କରିବାକୁ ପଡବନି, ତୀର୍ଥଯାତ୍ରା କରିବାକୁ ପଡବନି, କି ଘର ସଂସାର ଛାଡ ପଳେଇବାକୁ ହେବନି । ଏହାହିଁ ଗୀତାର ଉଦାର ମହତ୍ କର୍ମ ଦର୍ଶନ ଓ ଜୀବନ-ଦର୍ଶନ । ନିଃସନ୍ଦେହରେ ନେଗେଟିଭ ଅନାସକ୍ତ କର୍ମ ବା ପଜିଟିଭ୍ ଅର୍ଚ୍ଚନା-ଭାବନା -ଯୁକ୍ତ କର୍ମ ସାଧକର ଅନ୍ତରକୁ ଶୁଦ୍ଧ-ନିର୍ମଳ କରାଏ; ତାକୁ ଦେବତାର ସିଂହାସନ ସମୀପକୁ ନେଇଯାଏ । କିନ୍ତୁ ଶେଷ ଆଧ୍ୟାତ୍ମିକ ସିଦ୍ଧି ହେଲା ପୂଜାରୀ ଓ ଦେବତା ଏକୀଭୂତ ହୋଇ ଯିବା, ଅଂଶ ପୂର୍ଣ୍ଣରେ ମିଶିବା, କ୍ଷୁଦ୍ର-ଜୀବନ ମହା ଜୀବନରେ ମିଶିଯିବା । ଏଥିପାଇଁ ଆଉ କିଛି ସାଧନା ଆବଶ୍ୟକ; ଗୀତା ପରବର୍ତ୍ତୀ କେତୋଟି ଶ୍ଳୋକରେ ସେହି ସାଧନାର ସୂଚନା ଦେଇ ଯିବେ ।

( ୫୦ )

ସିଦ୍ଧିଂ ପ୍ରାପ୍ତୋ ଯଥା ବ୍ରହ୍ମ ତଥାପ୍ନୋତି ନିବୋଧମେ
ସମାସେନୈବ କୌନ୍ତେୟ ନିଷ୍ଠା ଜ୍ଞାନସ୍ୟ ଯା ପରା ।୫୦।

[ହେ] କୌନ୍ତେୟ (ଅର୍ଜୁନ) ସିଦ୍ଧିଂ ପ୍ରାପ୍ତଃ (ନିଜର ଧର୍ମ-କର୍ମକୁ ନିଃସ୍ୱାର୍ଥପରତା ଓ ଆସକ୍ତି ଶୂନ୍ୟ ଭାବରେ କରିବା ହେତୁ ତାହା ଦେବାର୍ଚ୍ଚନାରେ ପରିଣତ କରାଇ ପାରିଥିବା ରୂପକ ସିଦ୍ଧି ଲାଭ କରିଥିବା ଲୋକ) ଯଥା ବ୍ରହ୍ମ ଆପ୍ନୋତି (ଯେପରି ଶେଷରେ ବ୍ରହ୍ମ ଲାଭ କରନ୍ତି), ଯା ଜ୍ଞାନସ୍ୟ ପରା ନିଷ୍ଠା (ଯାହାହିଁ ମାନବିକ ଜ୍ଞାନର ଶେଷ ସୀମା) ତଥା ସମାସେନ ଏବ ମେ ନିବୋଧ (ତାହା ସଂକ୍ଷେପରେ ମୋ ଠାରୁ ଜାଣିରଖ) ।

ଅନୁବାଦ—

ହେ ଅର୍ଜୁନ, ସାଧକ ନିଜର ସ୍ୱଭାବଜ କର୍ମ-ଧର୍ମକୁ ସ୍ୱାର୍ଥଶୂନ୍ୟ ଓ ଆସକ୍ତି ଶୂନ୍ୟ ଭାବରେ ଓ ଈଶ୍ୱରାର୍ଚ୍ଚନା ମନେକରି; କରିବା ହେତୁ, ଲୋକ ଐହିକ ସିଦ୍ଧିଲାଭ କରିବା ସାଥେ ସାଥେ ସହଜରେ କିପରି ବ୍ରହ୍ମୋପଲବ୍ଧି ମଧ୍ୟ କରିଥାନ୍ତି ଏବଂ ଯାହାକି ମାନବିକ ଅଭିଜ୍ଞତାର ଶେଷକଥା, ତାହା ବର୍ତ୍ତମାନ ମୁଁ ସାମାନ୍ୟରେ କହିଯାଉଛି, ଶୁଣ ।

( ୫୧-୫୩ )

ବୁଦ୍ଧ୍ୟା ବିଶୁଦ୍ଧୟା ଯୁକ୍ତୋ ଧୃତ୍ୟାତ୍ମାନଂ ନିୟମ୍ୟଚ
ଶବ୍ଦାଦୀନ୍ ବିଷୟାଂସ୍ତ୍ୟକ୍ତ୍ୱା ରାଗଦ୍ୱେଷୌ ବ୍ୟୁଦସ୍ୟ ଚ ।୫୧।

ବିବିକ୍ତ ସେବୀ ଲଘ୍ୱାଶୀ ଯତବାକ୍ କାୟମାନସଃ
ଧ୍ୟାନ ଯୋଗ ପରୋ ନିତ୍ୟଂ ବୈରାଗ୍ୟଂ ସମୁପାଶ୍ରିତଃ ।୫୨।

ଅହଂକାରଂ ବଳଂ ଦର୍ପଂ କାମଂ କ୍ରୋଧଂ ପରିଗ୍ରହଂ
ବିମୁଚ୍ୟ ନିର୍ମମଃ ଶାନ୍ତୋ ବ୍ରହ୍ମଭୂୟାୟ କଳ୍ପତେ ।୫୩।

ବିଶୁଦ୍ଧୟା ବୁଦ୍ଧ୍ୟା ଯୁକ୍ତଃ (ପୂର୍ବୋକ୍ତ ଅନାସକ୍ତ, ଫଳାଶାଶୂନ୍ୟ ଭାବରେ କାମ କରିବା ଫଳରେ ବିଶୁଦ୍ଧ ବୁଦ୍ଧିଯୁକ୍ତ ହୋଇଥିବା ସାଧକ) ଧୃତ୍ୟା ଆତ୍ମାନଂ ନିୟମ୍ୟ (ଧୈର୍ଯ୍ୟଦ୍ୱାରା ନିଜକୁ ଅବିଚଳିତ ଭାବରେ ସଂଯତ ରଖି) ଶବ୍ଦାଦୀନ୍ ବିଷୟାନ୍ ତ୍ୟକ୍ତ୍ୱା (ଶବ୍ଦ-ରୂପ- ରସ-ଘ୍ରାଣ-ସ୍ପର୍ଶାଦି ସାଂସାରିକ ଆକର୍ଷଣ ପ୍ରଭୃତି ଅଳକୁ ଆଖିନଦେଇ) ରାଗଦ୍ୱେଷୌ ଉଭୟ ଅନୁରାଗ ଓ ବିଦ୍ୱେଷକୁ ବ୍ୟୁଦସ୍ୟ (ପକାଇ ଦେଇ)ବିବିକ୍ତସେବୀ (ଜନହୀନ ସ୍ଥାନାଭିଳାଷୀ) ଲଘ୍ୱାଶୀ (ଅଳ୍ପାହାରୀ) ଯତବାକ୍ କାୟମାନସଃ (କାୟ, ବାକ୍ୟ ଓ ମନକୁ ମଧ୍ୟ ନିଜର ସଂଯମରେ ରଖି) ନିତ୍ୟଂ ଧ୍ୟାନଯୋଗ ପରଃ (ସର୍ବଦା ବ୍ରହ୍ମ ବା ଈଶ୍ୱରଧ୍ୟାନରେ ନିବିଷ୍ଟ ରହି) ବୈରାଗ୍ୟଂ ସମୁପାଶ୍ରିତଃ (ବୈରାଗ୍ୟଭାବକୁ ସମ୍ୟକ୍ ଭାବରେ ଆଶ୍ରୟ କରି) [ଏବଂ]ଅହଂକାରଂ (ମୁଁ-ମୋର ପ୍ରଭୃତି ଭାବ ଗର୍ବ କରିବା) ବଳଂ(ନିଜର ଶକ୍ତି-ପ୍ରଭାବର ଗର୍ବ)ଦର୍ପଂ (ଔଦ୍ଧତ୍ୟ) କାମ (ଯୌନାଭିଳାଷ) କ୍ରୋଧଂ (କ୍ରୋଧ ଭାବ) ପରିଗ୍ରହଂ (ସଂପତ୍ତିଲାଭର ଲୋଭ)- [ଏ ସବୁକୁ] ବିମୁଚ୍ୟ (ସଂପୂର୍ଣ୍ଣ ପରିତ୍ୟାଗ କରି ଓ କରିବା ଫଳରେ) ନିର୍ମମଃ (ମମତ୍ୱ-ବୁଦ୍ଧି ହୀନ ଶାନ୍ତଃ (ଶାନ୍ତମୟ) [ହୋଇ] [ସେହି ସାଧକ ଶେଷରେ] ବ୍ରହ୍ମଭୂୟାୟ କଳ୍ପତେ (ବ୍ରହ୍ମଭାବ ପ୍ରାପ୍ତିର ଉପଯୁକ୍ତ ହୋଇଥାନ୍ତି) ।

ଅନୁବାଦ—

ହେ ଅର୍ଜୁନ, ଉପରେ ଯେପରି କୁହାଗଲା, ସେପରି ଭାବରେ ଅନାସକ୍ତ ଓ ଫଳାଭିଳାଷ ଶୂନ୍ୟ ଭାବରେ କାମ କରି ଚାଲିବା ଫଳରେ ସାଧକ ବିଶୁଦ୍ଧ-ବୁଦ୍ଧିଯୁକ୍ତ -ହୋଇ ଉଠିବେ ଏବଂ ତା'ପରେ ସେ ଧୈର୍ଯ୍ୟର ସହିତ ନିଜକୁ ସବୁମତେ ସଂଯତ ରଖିବା, ଶବ୍ଦ-ରୂପ-ରସ-ଘ୍ରାଣ-ସ୍ପର୍ଶାଦି ଆକର୍ଷଣରୁ ନିଜକୁ ଦୂରେଇ ରଖିବା, ରାଗ ଓ ଦ୍ୱେଷ ଉଭୟକୁ ପରିତ୍ୟାଗ କରିବା, ନିର୍ଜନତାଭିଳାଷୀ ଓ ଲଘ୍ୱାଶୀ ରହିବା, ବାକ୍ୟ ଓ ମନ ସହିତ ନିଜର ସମଗ୍ର ଶରୀରକୁ ନିଜ ଆୟତ୍ତରେ ରଖିବା, ସର୍ବକର୍ମତଳେ ବ୍ରହ୍ମ ବା ଈଶ୍ୱରଙ୍କୁ ସତତ ଧ୍ୟାନ କରିବା ଏବଂ ଚିତ୍ତରେ ବୈରାଗ୍ୟ ଭାବକୁ ସର୍ବଦା ଜାଗ୍ରତ ରଖିବା, ଅହଂକାର ଓ ନିଜର ଦୈହିକ-ଓ-ସାମାଜିକ- ଶକ୍ତିର- ଗର୍ବ ଓ ତଜ୍ଜନିତ ଔଦ୍ଧତ୍ୟ, ଯୌନାଭିଳାଷ ଓ ତା'ର ବିଫଳତାରେ କ୍ରୋଧ ଏବଂ ସଂପତ୍ତି-ସ୍ପୃହା ଇତ୍ୟାଦି ମାନସିକ ବିକାର

ସମୂହକୁ ପରିତ୍ୟାଗ କରିବା ଫଳରେ ମମତାଶୂନ୍ୟ ଓ ଶମଗୁଣ ପ୍ରାପ୍ତ ସେହି ସାଧକ ବ୍ରହ୍ମୋପଲବ୍‌ଧିର ଉପଯୁକ୍ତ ହୋଇ ଉଠନ୍ତି ।

**ବିଶେଷ ଭାଷ୍ୟ—**

ଏହି ଭାବ ଗୀତାରେ ସର୍ବତ୍ର ପ୍ରଚାରିତ ହୋଇଛି ଏବଂ ଯଥା ଯଥା ସ୍ଥାନରେ ତାହା ବୁଝାଇ ଦିଆଯାଇଛି । ତେଣୁ ଆଉ ବିଶେଷ ବ୍ୟାଖ୍ୟା ଅନାବଶ୍ୟକ । ସାରକଥା ହେଲା ଏହି ଯେ ସାଂସାରିକ ଆକର୍ଷଣମାନଂକରୁ ଆମର ଚିତ୍ତବୃତ୍ତିକୁ ଓଟାରି ଆଣି, ଅହଂକାର ଭାବ ପରିତ୍ୟାଗ କରି, ଆସକ୍ତିହୀନ ହୋଇ ଫଳାଶା ନରଖି, ଆମେ ନିଜର ସାମାଜିକ-ମାନବିକ-ରାଷ୍ଟ୍ରିକ ଦାୟିତ୍ୱ ସବୁକୁ ଯେତିକି ନିରାସକ୍ତ ଭାବରେ ଅଥଚ ସୁସଂପାଦିତ କରି ଚାଲିବା ଆମେ ସେତିକି ସେତିକି ଈଶ୍ୱରାନୁଭବର ନିକଟତର ହେବା । ସେହି ଈଶ୍ୱରାନୁଭବହିଁ ଏକମାତ୍ର ସତ୍ୟ ଶାନ୍ତି, ଏକମାତ୍ର ସତ୍ୟ ଆନନ୍ଦ ଏବଂ ଏକମାତ୍ର ସତ୍ୟ ଜ୍ଞାନ । ମୁକ୍ତ ବିଶୁଦ୍ଧ ଜୀବନହିଁ ଆମକୁ ଈଶ୍ୱରଂକ ସହିତ ଏକୀଭୂତ କରାଇ ଦିଏ । ପରବର୍ତ୍ତୀ ଶ୍ଳୋକ ଏହି ସୂଚନାକୁ ସ୍ପଷ୍ଟତର କରୁଛି ।

( ୫୪ )

ବ୍ରହ୍ମଭୂତଃ ପ୍ରସନ୍ନାତ୍ମା ନ ଶୋଚତି ନ କାଙ୍‌କ୍ଷତି
ସମଃ ସର୍ବେଷୁ ଭୂତେଷୁ ମଦ୍‌ଭକ୍ତିଂ ଲଭତେ ପରାଂ ।୫୪।

ବ୍ରହ୍ମଭୂତଃ (ବ୍ରହ୍ମ ବା ଈଶ୍ୱରଭାବ ପ୍ରାପ୍ତ ଲୋକ) ପ୍ରସନ୍ନାତ୍ମା (ପ୍ରସନ୍ନାତ୍ମା ହୁଏ, ଅର୍ଥାତ୍ ତାଂର ସମଗ୍ର ଆତ୍ମାରେ ଦୁଃଖର ଲେଶ ରହେନାହିଁ, ସେ ସଦା ପ୍ରସନ୍ନ ରହେ) । [ଫଳରେ, ସେ] ନ ଶୋଚତ ନ କାଙ୍‌କ୍ଷତି (କୌଣସି ବିଷୟ କପର ସେ ପାଇବେ ସେଥିପାଇଁ ଭାବି ହୁଅନ୍ତ ନାହିଁ କି, କୌଣସି କଥା ନ ଘଟିଲେ ମଧ୍ୟ ଦୁଃଖିତ ହୁଅନ୍ତ ନାହିଁ) । [ଅଧିକନ୍ତୁ] ସର୍ବ ଭୂତେଷୁ ସମଃ (ସକଳ ଜୀବ ଓ ମନୁଷ୍ୟଠାରେ ସମଭାବ ସଂପନ୍ନ ହେବା ଫଳରେ, ଅର୍ଥାତ୍ ସ୍ୱାର୍ଥ–କେନ୍ଦ୍ରିକ-ଭାବର ସଂପୂର୍ଣ୍ଣ ବିନାଶ ଫଳରେ) [ସେ ସାଧକ ଆପେ ଆପେ] ପରାଂ ମଦ୍‌ଭକ୍ତିଂ ଲଭତେ (ଶ୍ରେଷ୍ଠ କୋଟିର ଈଶ୍ୱର-ଭକ୍ତି ଅନୁଭବ କରନ୍ତି) ।

**ଅନୁବାଦ—**

ହେ ଅର୍ଜ୍ଜୁନ, ବ୍ରହ୍ମ ବା ଈଶ୍ୱରଂକୁ ଉପଲବ୍‌ଧି-କରିଥିବା ସେହି ଲୋକ, ସାଧାରଣତଃ ପ୍ରସନ୍ନାତ୍ମା ହୋଇ ଉଠନ୍ତି । ଅର୍ଥାତ୍ ତାଂକର ସମଗ୍ର ବ୍ୟକ୍ତିତ୍ୱରୁ

ସର୍ବଦା ପ୍ରସନ୍ନତାହିଁ ଫୁଟି ବାହାରିବ । ଫଳରେ ତାଂକୁ କେହି କୌଣସି କଥା ନହେଲା ବୋଲି ଦୁଃଖ କରିବାର ବା ଅମୁକ ବିଷୟ ପାଇବାକୁ ଅନେଇ ବସିଥିବାର ଦେଖିବ ନାହିଁ । ଅଧିକନ୍ତୁ ସକଳ ଜୀବ ଓ ମନୁଷ୍ୟଂକ ପ୍ରତି ସେ ସମାନ ଭବରେ ପ୍ରସନ୍ନ ଥିବାର ଲୋକେ ଦେଖିବେ । ଏବଂ ଏହିପରି ଭବରେ ସେହି ସାଧକ ଆପେ ଆପେ ଈଶ୍ୱର ଭକ୍ତି-ପରାୟଣ ହୋଇ ଉଠନ୍ତି ।

( ୫୫ )

ଭକ୍ତ୍ୟା ମାମଭିଜାନାତି ଯାବାନ୍ ଯଶ୍ଚାସ୍ମି ତତ୍ତ୍ୱତଃ
ତତୋ ମାଂ ତତ୍ତ୍ୱତୋ ଜ୍ଞାତ୍ୱା ବିଶତେ ତଦନନ୍ତରଂ ।୫୫।

[ବସ୍ତୁତ, ନିରାସକ୍ତ ଜୀବନ ଯାପନ ଫଳରେ ସହଜ ଭବରେ ଈଶ୍ୱର-ଭକ୍ତି-ପ୍ରାପ୍ତ ସେହି ସାଧକ] ଭକ୍ତ୍ୟା (ସେହି ଭକ୍ତି ବଳରେହିଁ) ଯାବାନ୍ ଯଃ ଚ ଅସ୍ମି (ମୁଁ ଅର୍ଥାତ୍ ଈଶ୍ୱର ଯେପରି ଓ ଯାହା ଅଟେ) [ତାହା] ତତ୍ତ୍ୱତଃ ମାଂ ଅଭିଜାନାତି (ସେ ସ୍ୱରୂପତଃ ମତେ ଜାଣିପାରନ୍ତି) ତତଃ ମାଂ ତତ୍ତ୍ୱତଃ ଜ୍ଞାତ୍ୱା (ଆମକୁ ଅର୍ଥାତ୍ ଈଶ୍ୱରଂକୁ ସ୍ୱରୂପତଃ ଜାଣିବାପରେ) [ସେ] ତଦନନ୍ତରଂ ବିଶନ୍ତି (ତାପରେ ଆମଠାରେ ପ୍ରବେଶ କରନ୍ତି) ।

## ଅନୁବାଦ—

ହେ ଅର୍ଜୁନ, ସେହି ଈଶ୍ୱର-ଭକ୍ତି-ପରାୟଣତା ଫଳରେ ହିଁ, ସେହି ସାଧକ ମୁଁ (ଈଶ୍ୱର) କ'ଣ ଓ କିପରି କ୍ରିୟମାଣ ତାହାର ତତ୍ତ୍ୱ ମଧ୍ୟ ସହଜରେ ଉପଲବ୍ଧି କରିପାରନ୍ତି, ଏବଂ ସେହି ଈଶ୍ୱରଂକୁ ତତ୍ତ୍ୱତଃ ଜାଣିବାହିଁ ହେଲା ତାଂକୁ ଉପଲବ୍ଧି କରିବା ।

( ୫୬ )

ସର୍ବକର୍ମାଣ୍ୟପି ସଦା କୁର୍ବାଣୋ ମଦ୍ ବ୍ୟପାଶ୍ରୟଃ
ମତ୍ ପ୍ରସାଦାଦବାପ୍ନୋତି ଶାଶ୍ୱତଂ ପଦମବ୍ୟୟଂ ।୫୬।

[ସେ ସାଧକ] ସଦା ସର୍ବକର୍ମାଣି କୁର୍ବାଣଃ ଅପି (ସବୁବେଳେ ସବୁ ପ୍ରକାର କାମ କରି ମଧ୍ୟ) ମଦବ୍ୟପାଶ୍ରୟଃ (ମୋର ବା ଈଶ୍ୱରଂକର ଆଶ୍ରୟ ନେଇଥିବାରୁ) ମତ୍ପ୍ରସାଦାତ୍ (ମୋର ବା ଈଶ୍ୱରଂକର ଅନୁକଂପାରୁ) ଶାଶ୍ୱତଂ ଅବ୍ୟୟଂ ପଦଂ ଅବାପ୍ନୋତି (ନିତ୍ୟ ଓ ଅକ୍ଷୟ ଅବସ୍ଥା ପ୍ରାପ୍ତ ହୁଅନ୍ତି)

**ଅନୁବାଦ—**

ହେ ଅର୍ଜ୍ଜୁନ, ଏ ପ୍ରକାର ସାଧକ ଇହଜୀବନରେ ସକଳ ପ୍ରକାର କାମ କରି ମଧ୍ୟ ମୋ (ଈଶ୍ୱରଂକ) ଠାରେ ସଂପୂର୍ଣ୍ଣ ଆଶ୍ରିତ ଥିବାରୁ, କୌଣସି କର୍ମର କୌଣସି ପ୍ରକାର ପ୍ରତିକ୍ରିୟାରେ ବାଁଧି ନ ହୋଇ ନତ୍ୟ-ଓ-ଅକ୍ଷୟ ସୁଖାତ୍ମକ ଅବସ୍ଥା ପ୍ରାପ୍ତ ହୋଇଥାନ୍ତି ।

( ୫୭ )

ଚେତସା ସର୍ବ କର୍ମାଣି ମୟି ସଂନ୍ୟସ୍ୟ ମତପରଃ
ବୁଦ୍ଧି ଯୋଗମୁପାଶ୍ରିତ୍ୟ ମଚ୍ଚିତ୍ତଃ ସତତଂ ଭବ ।୫୭।

[ତେଣୁ] ଚେତସା (ମନେମନେ) ସର୍ବ କର୍ମାଣି ମୟି ସଂନ୍ୟସ୍ୟ (ମୋଠିଠାରେ ବା ଈଶ୍ୱରଂକ ଠାରେ ସମସ୍ତ କର୍ମ ସମର୍ପଣ କରି ଦେଇ) ମତ୍ ପରଃ (ମତ୍ ପରାୟଣ, ଅର୍ଥାତ୍, ଏକାନ୍ତ-ଈଶ୍ୱର-ନିର୍ଭରଶୀଳ ହୋଇ) ଅଥଚ) ବୁଦ୍ଧିଯୋଗମୁପାଶ୍ରିତ୍ୟ (ଅନ୍ୟ ପକ୍ଷରେ ନିଜର ବୁଦ୍ଧି ସ୍ତରକୁ ମଧ୍ୟ ଜାଗ୍ରତ ରଖି) [ଉଭୟ ସ୍ତରରେ] ସତତଂ ମଚ୍ଚିତ୍ତଃ ଭବ (ସବୁବେଳେ ମତ୍ ସମର୍ପିତ-ମନ ହୋଇ ରହ) ।

**ଅନୁବାଦ—**

ତେଣୁ ମୋର ଶେଷ ଉପଦେଶ ଏହି ଯେ, ତୁମେ ବାହାରେ ଯାହା ଯାହା କାମ କରି ଚାଲନା କାହିଁକି, ନଜର ସାମାନ୍ୟତମ କର୍ତ୍ତୃତ୍ୱାଭିମାନ ନରଖି, ଚିତ୍ତରେ ସେ ସମସ୍ତଙ୍କୁ ମୋଠି (ଈଶ୍ୱରଂକ) ଠାରେହିଁ ସମର୍ପି ଦେଇ ଅଥଚ ନିଜର ବୁଦ୍ଧି-ସ୍ତରକୁ ଜାଗ୍ରତ ରଖି, ତୁମର ସମସ୍ତ ଚେତନା ଯେପରି ମୋ (ଈଶ୍ୱରଂକ) ଠାରେ ସମର୍ପିତ ହୋଇ ଯାଇଛି, ସେହିପରି ଜୀବନ ଯାପନ କରିବ ।

**ବିଶେଷ ଭାଷ୍ୟ—**

ଈଶ୍ୱରାଶ୍ରୟ କରିବା ମାନେ ବୋକା ପରି କାମ କରିବା ନୁହେଁ । ମନୁଷ୍ୟ ବୁଦ୍ଧିଯୁକ୍ତ ପ୍ରାଣୀ । ବୁଦ୍ଧିକି ଅବହେଳା କରିବା ମାନେ, ମନୁଷ୍ୟ ତାର ମନୁଷ୍ୟତ୍ୱ ହରାଇ, ଜନ୍ତୁ ସ୍ତରରେ ରହିବା । ଗୀତା ତେଣୁ ବାରଂବାର ମନୁଷ୍ୟର 'ବୁଦ୍ଧି' ପ୍ରୟୋଗ ଉପରେ ଜୋର ଦେଇଛନ୍ତି । ଜ୍ଞାନଯୋଗ, କର୍ମଯୋଗ, ଭକ୍ତି ଯୋଗ

ଛଡ଼ା, ଗୀତା ଆଉ ଏକ ଯୋଗର ପ୍ରସ୍ତାବ କରିଛନ୍ତି, ଯାହାର ନାମ କୁହାଯାଇ ପାରେ 'ବୁଦ୍ଧି ଯୋଗ'। ଆଜି ଭାରତବାସୀର ଚରମ ଦୁର୍ଦ୍ଦଶା ଏହି 'ବୁଦ୍ଧି ଯୋଗ'ର ଅଭାବରୁ। ଆମେ ବୁଦ୍ଧିହୀନ ଭାବରେ ବଁଚିଛୁ, କାମ କରି ଚାଲିଛୁ ଏବଂ ଗୀତାର ପରମ ବାକ୍ୟ ଯେ 'ବୁଦ୍ଧିନାଶାତ୍ ପ୍ରଣଶ୍ୟତି' (୨।୬୩) ତାହା ଅକ୍ଷରେ ଅକ୍ଷରେ ଆମର ବ୍ୟକ୍ତିଗତ ଓ ଜାତୀୟ ଜୀବନରେ ପ୍ରତିଫଳିତ ହେବାର ଦେଖୁଛୁ। ତେଣୁ ପାଠକେ ବରାବର ଗୀତାର ଉପଦେଶ ମନେ ରଖିବେ "ବୁଦ୍ଧୌ ଶରଣମନ୍ୱିଚ୍ଛ" (୨।୪୯)-ସବୁବେଳେ ବୁଦ୍ଧି-ତତ୍ତ୍ୱର ଆଶ୍ରୟ ନିଅ।

ଉପରେ କୁହାଗଲା ଯେ ବିଶୁଦ୍ଧ ଜୀବନର ସ୍ୱାଭାବିକ ପରିଣତ ହେବ ଈଶ୍ୱରଙ୍କ ପ୍ରତି ଏକ ସ୍ୱାଭାବିକ ଆକର୍ଷଣ। ଗୀତା କହୁଛନ୍ତି, ତା ସତ୍ତ୍ୱେ ତୁମେ ନିଜ ବୁଦ୍ଧି-ତତ୍ତ୍ୱର ପ୍ରୟୋଗ କର ମଧ୍ୟ ଈଶ୍ୱର ସମର୍ପିତ-ଚିତ୍ତ ହୁଅ। କୌଣସି କଥାକୁ ବିନା ବିଚାରରେ ମାନିଯାଅନାହିଁ। ପରମହଂସ ରାମକୃଷ୍ଣଙ୍କ କନୋଜ୍ଞ ଭାଷାରେ "ଟାକା ବାଜିୟେ ନାଓ"—ଟଙ୍କାକୁ ବଜେଇ ପରୀକ୍ଷା କରି ସାରିଲା ପରେ ଯାଇ ରଖ।

କିନ୍ତୁ, ଗୀତା କହିଆସିଛନ୍ତି ଏବଂ ଏଠାରେ ମଧ୍ୟ କହୁଛନ୍ତି ଯେ ବୁଦ୍ଧି-ତତ୍ତ୍ୱର ଫଳରେ ମଧ୍ୟ ତୁମେ ଅନୁଭବ କରିବ ଯେ ଈଶ୍ୱର-ଭକ୍ତି ବା ସର୍ବ ଈଶ୍ୱର-ସମର୍ପଣ ବା ଏକାନ୍ତ-ଈଶ୍ୱର-ନିର୍ଭରତା, ମନୁଷ୍ୟର ଏକ ସ୍ୱାଭାବିକ ଅବସ୍ଥା। ଏ ବ୍ୟାପାରଟା ବାହାରୁ ଆମ ଭିତରେ କିଏ ଜବରଦସ୍ତି ଗୁଁଜି ଦିଏ ନାହିଁ। ବରଂ ସଂସାରରେ ଶାନ୍ତିମୟ ଜୀବନ ଯାପନ ପାଇଁ ଏହାହିଁ ପ୍ରକୃଷ୍ଟ ପନ୍ଥା। ଅନ୍ୟ ପନ୍ଥା କେବଳ ଜଂଜାଳ ଓ ଅଶାନ୍ତିଜନକ, ଯାହା ଆମକୁ ଅଧିକରୁ ଅଧିକ କର୍ମ-ବଂଧନ ବା ଜନ୍ମ ଜନ୍ମାନ୍ତର-ବଂଧନରେ ନେଇ ପକେଇବ।

ପରବର୍ତ୍ତୀ କେତୋଟି ଶ୍ଲୋକରେ ଗୀତା ସେହି ଭାବକୁ ସ୍ପଷ୍ଟ କରି ଦେଇଛନ୍ତି।

( ୫୮ )

ମଚ୍ଚିତ୍ତଃ ସର୍ବଦୁର୍ଗାଣି ମତ୍ ପ୍ରସାଦାତ୍ ତରିଷ୍ୟସି
ଅଥଚେତ୍ ତ୍ୱମହଂକାରାନ୍ନ ଶ୍ରୋଷ୍ୟସି ବିନଙ୍କ୍ଷ୍ୟସି ।୫୮।

ମଚ୍ଚିତ୍ତଃ ତ୍ୱଂ (ମଦ୍‌ଗତ ମାନସ ବା ଈଶ୍ୱରଗତ-ମାନସ ହେଲେ, ତୁମେ) ମତ୍ ପ୍ରସାଦାତ୍ ସର୍ବଦୁର୍ଗାଣି ତରିଷ୍ୟସି (ମୋର ବା ଈଶ୍ୱରଙ୍କ ଅନୁଗ୍ରହରୁ

ସକଳ ଦୁଃଖ ଦୁର୍ବିପାକରୁ ଉଦ୍ଧାର ଯିବ) । ଅଥ ଚେତ୍ (କିନ୍ତୁ ଯେବେ ) ଅହଂକାରାତ୍ (ଅହଂକାରବଶତଃ ନ ଶ୍ରୋଷ୍ୟସି (ଏ ଉପଦେଶ ନ ଶୁଣ) [ତେବେ] ବିନଙ୍କ୍ଷ୍ୟସି (ବିନାଶପ୍ରାପ୍ତ ହେବ; ଅର୍ଥାତ୍ ତୁମର କର୍ମ ଜଂଜାଳ-ମୟ ଓ ବ୍ୟର୍ଥତାମୟ ହେବ) ।

## ଅନୁବାଦ—

ହେ ଅର୍ଜ୍ଜୁନ, ମଦ୍ (ଈଶ୍ୱର)ଗତ ଚିତ୍ତସାଧକ, ମୋ (ଈଶ୍ୱରଂକର) ଦୟାରୁ ସକଳ ଦୁଃଖ-ବିପଦରୁ ଉଦ୍ଧାର ପାଇଥାଏ । ତୁମେ ଯଦି ଅହଂକାର ବଶତଃ ଏଥିକି କର୍ଣ୍ଣପାତ ନକର, ତେବେ ନଷ୍ଟ ଭାବରେ ବିନାଶପ୍ରାପ୍ତ ହେବ ଅର୍ଥାତ୍ ଜଂଜାଳ ଓ ବ୍ୟର୍ଥତାହିଁ ହେବ ତମ ଜୀବନର ପରିଣତି ।

## ବିଶେଷ ଭାଷ୍ୟ—

ଏହି ଉକ୍ତିଟିକୁ ଶ୍ରୀକୃଷ୍ଣ ବର୍ତ୍ତମାନ ଉପସ୍ଥିତ କ୍ଷେତ୍ରରେ ଅର୍ଜ୍ଜୁନଙ୍କ ପ୍ରତି ପ୍ରୟୋଗ କରୁଛନ୍ତି । କିନ୍ତୁ ପାଠକେ ମନେ ରଖିବେ ଯେ ଗୀତାରେ ଅର୍ଜ୍ଜୁନଂକ ପ୍ରତି ଯାହା ସବୁ ଉପଦେଶ, ତାହା ନିଜ ନିଜ ଅବସ୍ଥାରେ ଗୀତାର ପ୍ରତ୍ୟେକ ପାଠକ ପ୍ରତି ମଧ୍ୟ ପ୍ରଯୁଜ୍ୟ । ଆମେ ପ୍ରତ୍ୟେକେ ଏକ ଏକ ଜିଜ୍ଞାସୁ ଅର୍ଜ୍ଜୁନ । କୁରୁକ୍ଷେତ୍ର ସଂଗ୍ରାମ, ଆମର ସାଂସାରିକ—ପାରିବାରିକ—ସାମାଜିକ—ମାନସିକ ଓ ଆତ୍ମିକ ସଂଗ୍ରାମର ବାହ୍ୟ ପ୍ରତୀକ ମାତ୍ର । ଗୀତାକୁ ଏହି ଉଦାର ଦୃଷ୍ଟିରୁ ନ ଦେଖି ଶିଖିଲେ, ମହାନ୍ ଜୀବନ-ଦର୍ଶନ ଭାବରେ ଗୀତାର ମୂଲ୍ୟ ବହୁତ କଟି ଯିବାର ଆଶଂକା, ପାଠକେ ।

( ୫୯ )

ଯଦହଂକାର ମାଶ୍ରିତ୍ୟ ନ ଯୋତ୍ସ୍ୟ ଇତି ମନ୍ୟସେ<br>
ମିଥ୍ୟୈବ ବ୍ୟବସାୟସ୍ତେ ପ୍ରକୃତି ସ୍ତ୍ୱାଂ ନିଯୋକ୍ଷ୍ୟତି ।୫୯।

ଅହଂକାରଂ ଆଶ୍ରିତ୍ୟ (ବୁଦ୍ଧି ବିବେକର ସିଦ୍ଧାନ୍ତକୁ ଅଗ୍ରାହ୍ୟ କରି, ନିଜର ଅହଂ ଭାବକୁ ମୋଟକରି ଧରି) ନ ଯୋତ୍ସ୍ୟ (ଯୁଦ୍ଧ କରିବି ନାହିଁ ବୋଲି) ଇତି ଯତ୍ ମନ୍ୟସେ (ଏପରି ଯାହା ଭାବୁଛ) ତେ ଏଷ ବ୍ୟବସାୟଃ ମିଥ୍ୟା (ତୁମର ଏ ପ୍ରତିଜ୍ଞା ମିଥ୍ୟା ହୋଇ ଯିବ) (କାରଣ) ପ୍ରକୃତିଃ ତ୍ୱାଂ ନିଯୋକ୍ଷ୍ୟତି (ତୁମର ପ୍ରକୃତିହିଁ ତୁମକୁ ସେଥିରେ ବାଧ୍ୟକରି ପ୍ରବର୍ତ୍ତିତ କରିବ) ।

## ଅନୁବାଦ—

ହେ ଅର୍ଜ୍ଜୁନ, ଯଦି ଅହଂକାର ବଶତଃ ମୋ ଉପଦେଶ ନମାନି ତୁମେ ଯୁଦ୍ଧ ନ କରୁଛ ତେବେ ଜାଣିରଖ ଯେ ତୁମର ସେ ପ୍ରକାର ମାନସିକତା

ଅଚିରେ ମିଥ୍ୟାରେହିଁ ପର୍ଯ୍ୟବସିତ ହେବ । ତୁମେ ତୁଏତ ପ୍ରକୃତି ଦ୍ୱାରା ବାଧ୍ୟ ହୋଇ ଯୁଦ୍ଧ କରିବ ।

( ୬୦ )

ସ୍ୱଭାବଜେନ କୌନ୍ତେୟ ନିବଦ୍ଧଃ ସ୍ୱେନ କର୍ମଣା
କର୍ତ୍ତୁଂ ନେଚ୍ଛସି ଯନ୍ମୋହାତ୍ କରିଷ୍ୟସ୍ୟବଶୋଽପିତତ୍ ।୬୦।

[ହେ] କୌନ୍ତେୟ (ଅର୍ଜ୍ଜୁନ) ମୋହାତ୍ ଯତ୍ କର୍ତ୍ତୁଂ ନ ଇଚ୍ଛସି (ମୋହବଶତଃ ଯାହା କରିବନାହିଁ ବୋଲି ଇଚ୍ଛା କରୁଛ) ସ୍ୱଭାବଜେନ (ନିଜ-ପ୍ରକୃତ ଜାତ) ସ୍ୱେନ କର୍ମଣା ନିବଦ୍ଧଃ (ନିଜ କର୍ମଦ୍ୱାରା ବାଁଧି ହୋଇ) [ତ] ଅବଶଃ (ବାଧ୍ୟ ହୋଇ) ତତ୍ ଅପି କରିଷ୍ୟସି (ଶେଷରେ ସେହି କଥାହିଁ କରିବ) ।

## ଅନୁବାଦ—

ହେ ଅର୍ଜ୍ଜୁନ, 'ଯୁଦ୍ଧ କରିବ ନ' ବୋଲି ଯାହା କହୁଛ ତାହା ତୁମର ଚିନ୍ତାର ମୋହଗ୍ରସ୍ତତାହିଁ ସୂଚନା କରେ । କିନ୍ତୁ ତୁମେ ଦେଖିବ ଯେ, ତୁଏତ ସ୍ୱଭାବଜ ପ୍ରବୃତ୍ତି ଦ୍ୱାରା ପ୍ରଣୋଦିତ ହୋଇ ତୁମେ ପର ମୁହୂର୍ତ୍ତରେ ବାଧ୍ୟ ହୋଇ ସେହି କାମ କରିବ ।

## ବିଶେଷ ଭାଷ୍ୟ—

"ମୁଁ ଏହା କରିବି" ଓ "ଏହା କରିବ ନାହିଁ" ଏହି ଉଭୟ ପ୍ରକାର ମାନସିକତାରେ ମନୁଷ୍ୟର ଅହଂଭାବ ସମଭାବରେ ପ୍ରକାଶିତ ହୋଇପାରେ । ଅର୍ଜ୍ଜୁନ, ସାମାଜିକ ଚେତନା ଘେନି, "କେବଳ ରାଜ୍ୟ ଲୋଭରେ କୁଟୁମ୍ବ ଲୋକଂକୁ ମଧ୍ୟ ମାରିଲେ ଲୋକେ ବା ଇତିହାସ ମତେ କ'ଣ କହିବ"—ଏହି ଭାବନାରେ ଘାଣ୍ଟିହୋଇ ଯୁଦ୍ଧ କରିବାକୁ ନାହିଁ କରୁଥିଲେ । ଅର୍ଜ୍ଜୁନ ଯଦି ପ୍ରଥମରୁ "ଆସରେ କୌରବ ଭାଇମାନେ, ଆସ ବଳକଷାକଷି ହେବା"— ଏପରି କହି ଯୁଦ୍ଧାରମ୍ଭ କରିଥାନ୍ତେ, ସେଥିରେ ତାଂକର ଅହଂକାର-ଭାବ ଯେପରି ପ୍ରକଟିତ ହୋଇଥାନ୍ତା, ଗୀତାଂକ ମତରେ ବ୍ୟକ୍ତିଗତ ସମ୍ମାନ-ବୋଧ ଯୋଗୁଁ ନାହିଁ କରିବାରେ ମଧ୍ୟ ତାଂକର ସେତିକି ଅହଂକାର ଭାବ ପ୍ରକାଶିତ ହେଉଛି ।

ଗୀତା କହିଆସୁଛନ୍ତି ଯେ "ଲୋକ ସଂଗ୍ରହ" ଦୃଷ୍ଟିରୁ ବା ଦୁଷ୍ଟ ନାଶନ ଶିଷ୍ଟରକ୍ଷଣ-ଦୃଷ୍ଟିରୁ, ଏ ଯୁଦ୍ଧ ଯଦି ତୁମର 'କର୍ତ୍ତବ୍ୟ' ବୋଲି ଭାବୁଛ, ତେବେ

ନ୍ୟାୟାନ୍ୟାୟ ଓ ଜୟ ପରାଜୟର ଏକମାତ୍ର ଦ୍ରଷ୍ଟା ଈଶ୍ୱରଙ୍କଠାରେ ସକଳ ଅହଂଭାବ ସମର୍ପି ଦେଇ, ନିଶ୍ଚିନ୍ତ ଚିତ୍ତରେ ରଣ-ପ୍ରବେଶ କର । ତାହାହିଁ ପ୍ରକୃତ ବିଜ୍ଞତା ।

ପୁଣି ଅର୍ଜୁନଙ୍କର ଏ ପ୍ରକାର ନାସ୍ତି ମନୋଭାବ ସବୁବେଳକୁ ରହିବ ତ ? ଆମ ପ୍ରତ୍ୟେକର ଯେପରି ରହେ କି ଦୈନନ୍ଦିନ ଜୀବନରେ ? ଅର୍ଜୁନଙ୍କର ମଧ୍ୟ ମନ ପରିବର୍ତ୍ତନ ହୋଇପାରେ । ଭୀରୁଭାବ ଅପବାଦରୁ ରକ୍ଷା ପାଇବା ପାଇଁ ସେ ହୁଏତ ପୁଣି ଫେରିବେ ଯୁଦ୍ଧ ଭୂମିକୁ ଏବଂ ବ୍ୟକ୍ତିଗତ ସମ୍ମାନ ପାଇଁ ହିଁ ଭାଇ ବନ୍ଧୁମାନଙ୍କୁ ମାରିଲେବେ ।

ଗୀତା କହନ୍ତି ଯେ, ଅହଂଭାବ ଯାହାକି ଏକାନ୍ତରେ ପ୍ରକୃତିଜାତ, ତାଦ୍ୱାରା ଅସ୍ତି-ନାସ୍ତି-ସୂଚକ-ପ୍ରତିଜ୍ଞା ନକରି, ବରଂ ସର୍ବଦା ଅହଂଜ୍ଞାନ-ରହିତ ହୋଇ ସ୍ତ୍ରୀ-ପୁତ୍ର-ସମାଜ-ଦେଶ ପ୍ରତି ସାମାନ୍ୟ ଆସକ୍ତି ନରଖି, ବୁଦ୍ଧିଯୁକ୍ତ ଭାବରେ ହିଁ 'କର୍ତ୍ତବ୍ୟ' ନିର୍ଦ୍ଧାରଣ କର ଏବଂ କରିସାରିବାପରେ ସକଳ ଫଳର ନିୟନ୍ତା ଭଗବାନଙ୍କଠାରେ ସଂପୂର୍ଣ୍ଣ ଭାବରେ ନିଜକୁ ସମର୍ପିତ କରିଦେଇ, କାମରେ ଲାଗିପଡ । ପ୍ରକୃତି-ଚାଳିତ କର୍ମ, ଅହଂଭାବାପନ୍ନ କର୍ମ । ତାହା ଅଜ୍ଞତା-ସୂଚକ ଓ ସେଥିର ସିଦ୍ଧି ମଧ୍ୟ କ୍ଷତିକାରକ । ବୁଦ୍ଧିଯୁକ୍ତ ନିରାସକ୍ତ, ନିରହଂକାର ଓ ଈଶ୍ୱର ସମର୍ପିତ କର୍ମ, ଜ୍ଞାନାଲୋକିତ କର୍ମ ଓ କଲ୍ୟାଣମୟ, ଶାନ୍ତିମୟ ପନ୍ଥା । ଏ ପନ୍ଥାରେ ବ୍ୟର୍ଥତାରେ ମଧ୍ୟ ଶାନ୍ତି । ବହୁ ବ୍ୟର୍ଥତାର ସ୍ତୂପ ଉପରେ ଠିଆହୋଇ ମଧ୍ୟ, କରମଚାନ୍ଦ ଗାନ୍ଧି କିପରି ମହାତ୍ମା ରୂପେ ବିଶ୍ୱଜନର ଶ୍ରଦ୍ଧା ସମ୍ମାନ ପାଇ ଆସୁଛନ୍ତି, ପାଠକେ ସେତିକି ମନେ ରଖିଲେହିଁ ଗୀତାର କର୍ମ-ଦର୍ଶନର ସୂକ୍ଷ୍ମ ଅଥଚ ଏକାନ୍ତ ଆବଶ୍ୟକ ତାତ୍ପର୍ଯ୍ୟଟି ବୁଝିପାରିବେ ।

ପୁଣି ଏହି ଉଦାର, ପାବନ କର୍ମଯୋଗ ଆମ ଭିତରେ ସ୍ୱାଭାବିକ ଭାବରେ ଦେଖାଦେଇପାରେ, କେବଳ ଗଭୀର ଈଶ୍ୱର ବିଶ୍ୱାସ ଦେଇ, ଯେପରି ଥିଲା ସେହି ମହାତ୍ମାଙ୍କର ।

ଗୀତା ତେଣୁ ବାରଂବାର କର୍ମଯୋଗରୁ ଭକ୍ତିଯୋଗକୁ, ଭକ୍ତିଯୋଗରୁ କର୍ମଯୋଗ ଏବଂ କର୍ମ ଯୋଗରୁ ପୁଣି ଭକ୍ତିଯୋଗକୁ ଫେରି ଆସୁଛନ୍ତି ।

ଆମେ ମୂଳରୁ କହିଆସିଛୁ ଯେ, ଆଧ୍ୟାତ୍ମିକ ସାଧନାରେ କୌଣସି ପରସ୍ପର ସ୍ୱତନ୍ତ୍ର, ଭିନ୍ନଭିନ୍ନ ଡିପାର୍ଟମେଣ୍ଟସବୁ କଳ୍ପନା କରାଯାଇ ନପାରେ । ଗୀତାକୁ କର୍ମ, ଜ୍ଞାନ ଓ ଭକ୍ତିଯୋଗ ଭାବରେ ବିଭାଗ କରାଯାଇଥିଲେହେଁ, ମନୁଷ୍ୟ ଆତ୍ମାର ପ୍ରସନ୍ନତା ଓ ପରିପୂର୍ଣ୍ଣତା ଲାଭ ପାଇଁ, କର୍ମ, ଜ୍ଞାନ ଓ ଭକ୍ତି

ଯାକ ଅନୁଭବ ଓ ଅଭିଜ୍ଞତା ଏକାବେଳେକେ ସମଭାବରେ ଏକାନ୍ତ ଅପରିହାର୍ଯ୍ୟ । ଏପରିକି ଆମର କୌଣସି ହେଲେ ସାଂସାରିକ, ସାମାଜିକ କର୍ମ ମଧ୍ୟ ଜ୍ଞାନ, ଭକ୍ତି ଓ କର୍ମଯୋଗ ଏ ତିନିଙ୍କର ସହଯୋଗ ବିନା ସୁସଂପନ୍ନ ହେବାର ଆମେ ଆଶା କରିପାରୁନାହିଁ । ସ୍ତ୍ରୀ, ଜନନୀ ବା ଭଗିନୀ ରାନ୍ଧି ଖୁଆଇଲେ ଆମେ ସାଧାରଣ ଖାଦ୍ୟରେ ହିଁ ଯେଉଁ ସନ୍ତୋଷ ଲାଭ କରୁ, ତା ପଛରେ ଏହି ତିନୋଟିଯାକ ଯୋଗର ସ୍ୱାଭାବିକ ସମାହାର ହିଁ ଦଣ୍ଡାୟମାନ । ଜ୍ଞାନ ନହେଲେ, ପିଠାପଣା ଛାଡ଼,ସାମାନ୍ୟ ଡାଲି-ତରକାରିକ ବି ସ୍ୱାଦ୍ୟ ଓ ଗ୍ରହଣୀୟ କରଯାଇ ପାରିବନି । କିନ୍ତୁ ହୋଟେଲ-ପୂଜାରୀର ଜ୍ଞାନ ହୁଏତ ଆମ ମା'-ଭଉଣୀଂକ ଜ୍ଞାନଠାରୁ ବ୍ୟାପକତର । କିନ୍ତୁ ମା-ଭଉଣୀଂକର "ମୋ ପିଲା"—"ମୋ-ଭାଇ" ଖାଇବ ଭାବି ଯେଉଁ ଶ୍ରଦ୍ଧା (ଭକ୍ତିଯୋଗ) ଏବଂ ସେଥିପାଇଁ ରନ୍ଧନ କ୍ରିୟାରେ ଯେଉଁ ନିଃସ୍ୱାର୍ଥ ଉତ୍ସାହ (କର୍ମଯୋଗ), ତାହା ଆମେ ହୋଟେଲର ପୂଜାରୀ ବା ଖାନସାମାଠି କପରି ଆଶା କରିବା ?

ତେଣୁ ଆମେ ଯଦି ଜ୍ଞାନ-କର୍ମ-ଭକ୍ତି-ଯୋଗ ବନା ଦିନରେ ଉତ୍ତମ ଭୋଜନଟିଏ ମଧ୍ୟ ପାଇପାରୁନାହିଁ, ଈଶ୍ୱରାନୁଭବ ରୂପକ ମାନବଜୀବନର ପରମ ପରିପୂର୍ଣ୍ଣତା କପରି ପାଇପାରିବାକୁ ଆଶାକରିବା କେବଳ ଗୋଟିଏ ପଥରେ ଖାଲି ଗୁଡାଏ ଧାଁ-ଧପଡ କରି; ଅନ୍ତରରେ ଜ୍ଞାନ-ଓ-ଭକ୍ତି ଯୋଗ, ଅର୍ଥାତ୍ ପରିପୂର୍ଣ୍ଣ ଈଶ୍ୱର-ଜ୍ଞାନ ଓ ଈଶ୍ୱର-ନର୍ଭରତା ବନା ?

ଗୀତାର ଏହି ଶେଷ ଅଧ୍ୟାୟର ଶେଷ ବାଣୀ ତେଣୁ ହୃଦୟ-ସ୍ପର୍ଶୀ 'ଭକ୍ତି ଯୋଗ' । ଗୀତା ସେହି ଉଦାତ୍ତ ବାଣୀରେ ହିଁ ନିଜକୁ ନିଃଶେଷିତ କରି, କୋଟି କୋଟି ପାଠକର ହୃଦୟକନ୍ଦରରେ ଅବସ୍ଥିତ ହେବାକୁ ଯାଉଛନ୍ତି ।

( ୬୨ )

ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜ୍ଜୁନ ତିଷ୍ଠତି
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନ ମାୟୟା । ୬୧ ।

[ହେ] ଅର୍ଜ୍ଜୁନ, ଈଶ୍ୱରଃ (ଭଗବାନ୍) ମାୟୟା (ନଜର ମାୟା ଶକ୍ତି ଦ୍ୱାରା) ସର୍ବଭୂତାନି (ପ୍ରାଣି ସମୂହକୁ) ଯନ୍ତ୍ରାରୂଢାନି [ଇବ] (ଅଦୃଶ୍ୟ ଯନ୍ତ୍ରଚାଳିତ କ୍ରୀଡନକ ବା ପୁତ୍ତଳିକା ପରି) ଭ୍ରାମୟନ୍ (ବୁଲେଇ ବୁଲେଇ) [ନିଜେ ସେହି] ସର୍ବଭୂତାନାଂ (ସକଳ ପ୍ରାଣୀଂକର) ହୃଦ୍ଦେଶେ (ହୃଦୟ ଭିତରେ) ତିଷ୍ଠତି (ଅଧିଷ୍ଠାନ କରୁଥାନ୍ତି) ।

**ଅନୁବାଦ—**

ହେ ଅର୍ଜ୍ଜୁନ, ନିଜର ମାୟା-ଶକ୍ତି ବଳରେ ଈଶ୍ୱର ଏ ସୃଷ୍ଟିର ସକଳ ଜୀବକୁ ଅଦୃଶ୍ୟ ଯନ୍ତ୍ର-ଚାଳିତ ପୁତ୍ତଳିକା ପରି ପରିଚାଳିତ କଲପରି ପ୍ରତୀୟମାନ ହେଉଥିଲେହେଁ ଜାଣିରଖ ଯେ, ସେହି ଈଶ୍ୱର ସେହି ପ୍ରତ୍ୟେକଟି ଜୀବର ଅନ୍ତରରେହିଁ ସୁପ୍ରତିଷ୍ଠିତ ।

**ବିଶେଷ ଭାଷ୍ୟ—**

'ଈଶ୍ୱର ଆମ ପ୍ରତ୍ୟେକର ହୃଦୟ ଭିତରେ ହିଁ ଅଛନ୍ତି'ର ଅର୍ଥ ଏହା ନୁହେଁ ଯେ ସେ ବାହାରେ କେଉଁଠି ନାହାନ୍ତି । କିନ୍ତୁ ଆମେ ଘୋର ଅଜ୍ଞତା ବଶତଃ, ସାଧାରଣତଃ ଈଶ୍ୱରଙ୍କୁ ବାହାର ଜଗତରେହିଁ ଖୋଜି ବୁଲୁ । ତାହା ଏକ ମାୟା । ଗୀତା ଆମର ସେହି ପରମତମ ଭ୍ରାନ୍ତିର ଅପନୋଦନ ପାଇଁ ଏଠାରେ ସ୍ପଷ୍ଟଭାବରେ ଚେତାଇ ଦେଉଛନ୍ତି ଯେ—ହେ ଅଜ୍ଞ ମନୁଷ୍ୟ, ଈଶ୍ୱରଙ୍କୁ ବାହାରେ ଖୋଜି ଧାଇଁଛ କାହିଁକି ? ସେ ଯେ ତୁମରି ହୃତ୍-କମଳରେହିଁ ଆସୀନ । ତୁମେ ଯେ ଅହରହ 'ମୁଁ' 'ମୁଁ' ହେଉଛ ସେ 'ମୁଁ'ଟି କିଏ ? ଅସଲି 'ମୁଁ' ଓ ନକଲି 'ମୁଁ' କୁ ଚିହ୍ନ ଆଗ । ତାହା ନ ଚିହ୍ନିବାହିଁ ମାୟା । ପ୍ରବୃତ୍ତି-ମାର୍ଗର ଅଗଣିତ ଅଭିଜ୍ଞତା ପାଇଁ ଚତୁର ଈଶ୍ୱର ଆମ ପାଇଁ ନକଲି 'ମୁଁ' ତିଆରିକରି ଦେଇଛନ୍ତି । ଆମେ ସେହି ନକଲି 'ମୁଁ'କୁ କେନ୍ଦ୍ର କରି ଅହରହ ଇତସ୍ତତଃ ଧାବମାନ ଏବଂ ଆଶା, ଦ୍ୱେଷ, ଲୋଭ ଓ ତଜ୍ଜନିତ ବ୍ୟର୍ଥତା ନେଇ ଚିର ଜଂଜାଳ -ଗ୍ରସ୍ତ । ଏହି ହେଉଛି ମାୟା ରୂପକ ଯନ୍ତ୍ର ଦେଇ ଆମର ଜନ୍ମ-ଜନ୍ମାନ୍ତର ମରୀଚିକା ପଛରେ ଧାଇଁବା । ଏ ପ୍ରକାର ଅଭିଜ୍ଞତା ସବୁର ପରେ ଯାଇ ମୋହଗ୍ରସ୍ତ ମନୁଷ୍ୟ ମାୟା ରୂପକ 'ଯନ୍ତ୍ର'ର ଘୂର୍ଣ୍ଣନରେ ଆଉ ନ ଭୁଲି, 'ଯନ୍ତ୍ରୀ'କୁ ଖୋଜି ବସିବ । ଶେଷରେ ସେ ଦେଖିବ ଯେ ସେହି ଚତୁର 'ଯନ୍ତ୍ରୀ' ତାରି ଭିତରେହିଁ ମୃଦୁ-ସ୍ମିତ-ମୁଖରେ ତାରି ଫେରିବାକୁ ବହୁ ଯୁଗ ହେଲା ଅପେକ୍ଷମାଣ । ସେହି ଯେ ଅସଲ 'ମୁଁ' । ଅଗଣିତ ଜନ୍ମ-ଜନ୍ମାନ୍ତରର ନକଲି 'ମୁଁ' ସେହି ଅସଲି 'ମୁଁ' ର ଭିନ୍ନ ଭିନ୍ନ ପ୍ରତିଫଳନ ମାତ୍ର । ଗୀତା ତେଣୁ ପରବର୍ତ୍ତୀ ଶ୍ଳୋକଟିରେ ସତ୍ ମାର୍ଗ ଦେଖାଇ ଦେଉଛନ୍ତି—

( ୬୨ )

ତମେବ ଶରଣଂ ଗଚ୍ଛ ସର୍ବ ଭାବେନ ଭାରତ
ତତ୍ ପ୍ରସାଦାତ୍ ପରାଂ ଶାନ୍ତିଂ ସ୍ଥାନଂ ପ୍ରାପ୍ସ୍ୟସି ଶାଶ୍ୱତଂ ।୬୨।

[ହେ] ଭାରତ (ଅର୍ଜ୍ଜୁନ) ତମ୍ ଏବ (ତୁମ ନିଜ ଭିତରେ ପ୍ରତିଷ୍ଠିତ ସେହି ପରମାଂକ ଠାରେହିଁ) ସର୍ବଭାବେନ ଶରଣଂ ଗଚ୍ଛ (ଆଂଶିକ ଭାବରେ ନୁହେଁ ସର୍ବତୋଭାବରେ ସମଗ୍ରତା ସହିତ ଶରଣ ନିଅ)। [ସେହି ପରିପୂର୍ଣ୍ଣ ସମର୍ପଣ-ଫଳରେହିଁ] ତତ୍ ପ୍ରସାଦାତ ତାଂକରି ଅନୁଗ୍ରହରୁ [ତୁମେ] ପରାଂ ଶାନ୍ତିଂ (ପରମ ଶାନ୍ତି) [ଓ] ଶାଶ୍ୱତଂ ସ୍ଥାନଂ (ନିତ୍ୟ ନିବାସ) ପ୍ରାପ୍ସ୍ୟସି (ପ୍ରାପ୍ତ ହେବ)।

## ଅନୁବାଦ—

ତେଣୁ ହେ ଅର୍ଜ୍ଜୁନ, ତୁମ-ନିଜ-ଭିତରେ ନିତ୍ୟ ସୁପ୍ରତିଷ୍ଠିତ ସେହି ପରମେଶ୍ୱରଂକଠାରେ ସଂପୂର୍ଣ୍ଣରୂପେ ନିଜକୁ ସମର୍ପି ଦିଅ। ଆଂଶିକ ଭାବରେ ନୁହେଁ, ସମଗ୍ର ଭାବରେ ତାଂକର ଶରଣାଗତ ହୋଇପଡ଼। ଅତଏବ ସେହି ସମଗ୍ରତାରୁହିଁ ତୁମେ ଇହଜୀବନରେ ଉତ୍କୃଷ୍ଟ ଶାନ୍ତି ଓ ମୃତ୍ୟୁ ପରେ ଶାଶ୍ୱତ ଧାମ ଲାଭ କରିବ ।

## ବିଶେଷ ଭାଷ୍ୟ—

ପାଠକେ ଏହିପ୍ରକାର ପୂର୍ଣ୍ଣ ଶରଣହିଁ ପ୍ରକୃତି ଭକ୍ତିଯୋଗ । ପରବର୍ତ୍ତୀ ଦୁଇ ଶ୍ଳୋକରେ ବକ୍ତା ଶ୍ରୀକୃଷ୍ଣ ଏହାକୁ ଗୁହ୍ୟ, ଗୁହ୍ୟତର ଓ ଗୁହ୍ୟତମ ଜ୍ଞାନ ବୋଲି କହି ବସିବେ। ଏପରି କହିବାର ହେତୁ କ'ଣ ?

ହେତୁ, ଖୁବ ସମ୍ଭବତଃ ଐତିହାସିକ। ଏହା ଆଗରୁ ଆଲୋଚିତ ହୋଇ ଯାଇଥିଲେହେଁ, ଏଠାରେ ମଧ୍ୟ ସାରକଥାଟି ପୁଣି କହି ରଖୁଛୁ। ନବମ ଅଧ୍ୟାୟର ପ୍ରଥମ ଶ୍ଳୋକରେ ମଧ୍ୟ ଏହି ଭକ୍ତିଯୋଗ ବ୍ୟାଖ୍ୟାନ କରିବାକୁ ଯାଇ ଶ୍ରୀକୃଷ୍ଣ ଏହାକୁ 'ଗୁହ୍ୟତମ' ବା 'ଅତ୍ୟନ୍ତ ଗୋପନୀୟ' ଜ୍ଞାନ ବୋଲି କହିଥିଲେ। କାହିଁକି ?

ଐତିହାସିକ ବିଶ୍ଳେଷଣରେ ବର୍ତ୍ତମାନ ଦେଖାଯାଉଛି ଯେ, ଗୀତା ଭାରତ-ଇତିହାସର କୌଣସି ଏକ କାଳ ଓ ଅବସ୍ଥାକୁ ଲକ୍ଷ୍ୟ କରି ଲେଖା ଯାଇ-ଥିଲେ ମଧ୍ୟ ଏବଂ ସେହି ଲକ୍ଷ୍ୟରେ "ଲୋକ ସଂଗ୍ରହ" ପ୍ରତି ଦୃଷ୍ଟି ଦେଇ, ଭାରତୀୟ ଜନତାକୁ ଏକ ପକ୍ଷରେ ବ୍ୟୟସାଧ୍ୟ ଓ ଅଯୌକ୍ତିକ ଯାଗଯଜ୍ଞାଦିରୁ ଏବଂ ଅନ୍ୟ ପକ୍ଷରେ ଆତ୍ମ-ସାଧନା ନାମରେ ଅଗଣିତ ଭିକ୍ଷୁଦଳର ମାରାତ୍ମକ ଅକର୍ମଦର୍ଶନରୁ ଟାଣିଆଣି ପ୍ରତ୍ୟେକଟି ନାଗରିକ ତାର ଦୈନନ୍ଦିନ ସାମାଜିକ ପାରିବାରିକ-ଗୋଷ୍ଠିକ କର୍ତ୍ତବ୍ୟମାନଙ୍କର ସୁସଂପାଦନା ଭିତରେ ହିଁ ସକଳ ଆଧ୍ୟାତ୍ମିକ ପରିପୋଷଣ ଯେପରି ପାଇ ପାରିବ, ଗୀତା ଏହି ପରମ

ଆଶ୍ୱାସନା ଶୁଣାଇଲେ ମଧ୍ୟ, ଅର୍ଥାତ୍ 'କର୍ମଯୋଗ'ହିଁ ଗୀତାର ମୁଖ୍ୟ ଲକ୍ଷ୍ୟ ହେଲେହେଁ, ଏବେ ଦେଖାଯାଉଛି ଯେ ଭାରତୀୟ ସଂସ୍କୃତିରେ 'ଭକ୍ତିବାଦ'ର ଆରମ୍ଭ ମଧ୍ୟ ଗୀତାରୁ । ଉପନିଷଦ ଓ ସାଂଖ୍ୟ ଦର୍ଶନ ସବୁରେ ଭାରତରେ 'ଜ୍ଞାନ ଯୋଗ' ପ୍ରତିଷ୍ଠିତ ହୋଇ ସାରିଥିଲା । ଗୀତା ତାହା ଉତ୍ତମ ଭାବରେ ପରିପୋଷଣ କରିଛନ୍ତି । ପୁଣି, ସେ ସବୁ ପୂର୍ବରୁ, ବୈଦିକ ଯାଗ-ଯଜ୍ଞାଦି ବାହ୍ୟ ଆଡମ୍ବର ସବୁହିଁ ଥିଲା "କର୍ମ" । ଗୀତା, ଯଜ୍ଞ ଓ କର୍ମର ରୂପକାତ୍ମକ ନୂତନ ବ୍ୟାଖ୍ୟା ଦେଇ ସେ ସବୁକୁ ପ୍ରତି ଗୃହସ୍ଥର ଦୈନନ୍ଦିନ ଜୀବନର କର୍ମକଳାପରେ ପର୍ଯ୍ୟବସିତ କରାଇ ନେଲେ । କିନ୍ତୁ ପ୍ରଶ୍ନ ଏହି ଯେ, କାହିଁକି ମନୁଷ୍ୟ ଏହି "ଜ୍ଞାନ ଯୋଗ" ଓ "କର୍ମ ଯୋଗ" କରିବାକୁ ଯିବ ? କି ଆବଶ୍ୟକତା ?

ବୌଦ୍ଧ-ଦର୍ଶନରେ ସଂସାରର ପରିବ୍ୟାପ୍ତ "ଦୁଃଖ" ଉପରେ ବହୁତ ଜୋର ଦିଆଯାଇଛି । ଗୀତା ଏହି ଦୁଃଖ-ବାଦକୁ ମଧ୍ୟ କୌଣସିଠାରେ ଅସ୍ୱୀକାର କରିନାହାନ୍ତି । କିନ୍ତୁ ପାଠକେ ନଜେ ଗୀତାକୁ ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ପଢ଼ିଲେ ଦେଖିବେ ଯେ, ଗୀତା ବିସ୍ମୟକର ଭାବରେ "ସୁଖବାଦୀ" । ଗୀତା କହିଲେ ଯେ, ଆମେ ଆମ ନଜ ନିଜ ସାଂସାରିକ ଦାୟିତ୍ୱ ସମୁଚିତ ଭାବରେ ତୁଲେଇବା ଭିତରେ ହିଁ ସୁଖ ଓ ଶାନ୍ତି ପାଇବା । ଘରଛାଡ଼ି ନିଷ୍କର୍ମା ହୋଇ ବା ଭିକ ମାଗିଲେ ସେ ସୁଖ ଶାନ୍ତି ଆମେ ପାଇବାନ ; କିନ୍ତୁ ଆମେ ସଂସାର ଓ ସମାଜରେ ଯେତେ ଭଲ କାମ କଲେହେଁ, ଏଠାର ସୁଖ ଓ ଶାନ୍ତି ମଧ୍ୟ ସୀମାବଦ୍ଧ ଏବଂ ଜଞ୍ଜାଳଯୁକ୍ତ । "ସର୍ବାରମ୍ଭାହି ଦୋଷେଣ ଧୂମେ-ନାଗ୍ନିରିବା ବୃତାଃ"—ନିଆଁ ଓ ଧୂଆଁ ଯେପରି, ଏ ସଂସାରରେ ସବୁ କାମ ସେହିପରି ଦୋଷଯୁକ୍ତ । ତେବେ ପୂର୍ଣ୍ଣ ଶାନ୍ତି ବା ଅକ୍ଷୟ ଆନନ୍ଦ କେଉଁଠି ମିଳିବ ?

ମନୁଷ୍ୟର ଏହି ଅନ୍ତର୍ନିହିତ ଚିରନ୍ତନ ଜିଜ୍ଞାସାର ଉତ୍ତରରେ ଗୀତା ହୁଏତ ବିଶ୍ୱରେ ପ୍ରଥମ ଗ୍ରନ୍ଥ ଯେ କି ଦୃଢ଼ ସ୍ୱରରେ ଘୋଷଣା କଲେ— "ମନୁଷ୍ୟକୁ ଅକ୍ଷୟ ଓ ପରିପୂର୍ଣ୍ଣ ଶାନ୍ତି ଓ ଆନନ୍ଦ ମିଳିବ, କେବଳ ଈଶ୍ୱରଙ୍କ-ଠାରେ ନିଃଶେଷ ଓ ପରିପୂର୍ଣ୍ଣ ଆତ୍ମ-ସମର୍ପଣ କରିପାରିଲେ ।" କିପରି ସେ ଈଶ୍ୱର ।

ଭାରତର ମାଳ ମାଳ ଉପନିଷଦ ସବୁ ବହୁ ଶତ ବର୍ଷ ଧରି ଏ ସୃଷ୍ଟିର ଆଧାର ରୂପେ ସୂକ୍ଷ୍ମ, ବିଶ୍ୱବ୍ୟାପ୍ତ, ଗୁଣହୀନ ଏକ 'ବ୍ରହ୍ମ'ର ଆଲୋଚନା କରି ଆସିଥିଲେ । କପିଳଙ୍କ ସାଂଖ୍ୟ ଦର୍ଶନ ମଧ୍ୟ ପ୍ରଚାର କରି ସାରିଥିଲେ । ପୁରୁଷ ଓ ପ୍ରକୃତିଙ୍କୁ ସୃଷ୍ଟିର ଅନ୍ତର୍ନିହିତ ନିୟମ ଭାବରେ ।

ଗୀତା ସେସବୁକୁ ଗ୍ରହଣ କରିନେଇ ମଧ୍ୟ ଦୃଢ଼ ଭବରେ ପ୍ରଥମଥର ପାଇଁ ଘୋଷଣା କଲେ ଯେ, "ହେ ମନୁଷ୍ୟ, ଈଶ୍ୱର ଏପରି ଏକ ନିୟମ ବା ତତ୍ତ୍ୱମାତ୍ର ନୁହନ୍ତି । ଈଶ୍ୱର ଏ ସୃଷ୍ଟିରେ 'ପୁରୁଷ' ନାମକ ଏକ ପ୍ରିନ୍‌ସିପ୍‌ଲ ( Principle ) ମାତ୍ର ନୁହନ୍ତି । ସେ ପରମ ବ୍ୟକ୍ତିତ୍ୱସଂପନ୍ନ 'ପୁରୁଷୋତ୍ତମ', ସେ ଆମ ବାହାରେ ଥିବା ଏକ ଶାସକ ବା ଦଣ୍ଡଦାତା ମଧ୍ୟ ନୁହନ୍ତି । ସେ କ୍ଷମାଶୀଳ ପିତା, ସେ ସ୍ନେହମୟ ମିତ୍ର, ସେ ସେହିପରି ସଖା ଯାହାଙ୍କୁ ଭରସା କରି ହେବ—

ପିତେବ ପୁତ୍ରସ୍ୟ, ସଖେବ ସଖ୍ୟୁଃ
ପ୍ରିୟଃ ପ୍ରିୟାୟାର୍ହସି ଦେବ ସୋଢୁଂ । (୧୧।୪୪)

ଏବଂ ମନୁଷ୍ୟ ତାଂକୁଇ ଜାଣିପାରିଲେ ପରମଧାମ ବା ଆତ୍ୟନ୍ତିକ ସୁଖ ବା ଅବ୍ୟୟ ଆନନ୍ଦ ପାଇପାରିବ—ତା' ପୂର୍ବରୁ ନୁହେଁ ।

ପାଠକେ ସ୍ମରଣ କରନ୍ତୁ, ତରୁଣ ନାସ୍ତିକ ନରେନ୍ଦ୍ରନାଥଙ୍କ ସେହି ତୀବ୍ର ଜିଜ୍ଞାସା "ଆପଣ ଈଶ୍ୱରଂକୁ ଦେଖିଛନ୍ତି କି ?" ବହୁ ପ୍ରତିଷ୍ଠିତ ସାଧୁ-ସାଧକଙ୍କଠାରୁ ବ୍ୟର୍ଥତାରେ ଫେରି ଶେଷରେ ଦିନେ ଗଦାଧର ଦତ୍ତ ନାମକ ଏକ ନିରକ୍ଷର ଦେଉଳ-ପଣ୍ଡା ପାଖରେହିଁ ସେହି ଜିଜ୍ଞାସା ଅପ୍ରତ୍ୟାଶିତ ଜ୍ଞାନ-ଯଜ୍ଞରେ ଜଳି ଉଠିଲା—"ହଁ ମୁଁ ଈଶ୍ୱରଂକୁ ଦେଖିଛି; ଏବଂ ତୁମେ ମୋ ଆଗରେ ଯେ ବସିଛ ତା'ଠୁ ସ୍ପଷ୍ଟତର ଭବରେ ଦେଖିଛି ।" ସେହିପରି ମଧ୍ୟ ଗୀତାରେ ଶ୍ରୀକୃଷ୍ଣଂକର ଏହି ମହାନ୍ ଘୋଷଣା । ଏହା ଐତିହାସିକ ଆବିଷ୍କାର ଭବରେ, ସେତେବେଳେ ଭରତର ସଂସ୍କୃତିରେ କେବଳ ନୂତନ ଓ ଗୋପନୀୟ । ନଥିଲା, ଆତ୍ମିକ ସାଧନା ଭବରେ ମଧ୍ୟ ଏହା ଚିରକାଳ ଗୁହ୍ୟ ବା ଗୋପନୀୟ । ଆମର ସାଂସାରିକ ସାମାଜିକ ବା ସ୍ୱାମୀ-ସ୍ତ୍ରୀ-ଭଇ-ବନ୍ଧୁ ଇତ୍ୟାଦି ସଂପର୍କ, ଅଧିକାଂଶତଃ କେବଳ ବାହ୍ୟ ପ୍ରତାରଣା ନୁହେଁ କି ? ସ୍ୱାମୀ ବିବେକାନନ୍ଦ ପରମତମ ସାଂସାରିକ ସତ୍ୟ କହି ନାହାନ୍ତି କି ଏହି ବାକ୍ୟରେ ଯେ—"ଜଗତର ସକଳ ପ୍ରେମ ସ୍ୱାର୍ଥଜଡ଼ିତ, ଏପରିକି ମାତାର ସ୍ନେହ ମଧ୍ୟ ?"

ଜୀବାତ୍ମା ଓ ପରମାତ୍ମା, ମନୁଷ୍ୟ ଓ ଈଶ୍ୱର, ଭକ୍ତ ଓ ଭଗବାନଂକ ସଂପର୍କରେ କିନ୍ତୁ, ପ୍ରତାରଣାର ଅବକାଶହିଁ ଥାଇ ନପାରେ । ଏହାର ଆଦ୍ୟ ଆବଶ୍ୟକତା ହେଉଛି ଆତ୍ମିକ ଶୁଦ୍ଧତା ବା ଶୌଚ । ଏହି ଶୌଚ ଆସିଗଲେ, ସାଧକ ଆପେ ଅନୁଭବ କରିବେ ନିଜର ଅନ୍ତରସ୍ଥ ପରମ ମିତ୍ର ସେହି ପୁରୁଷୋତ୍ତମଂକୁ ।

ଆମର ସାଂସାରିକ ଜୀବନରେ ମଧ୍ୟ ଯାହା ପ୍ରକୃତରେ ସବୁଠାରୁ ଉପଭୋଗ୍ୟ, ତାହା 'ଅନିର୍ବଚନୀୟ' ଅର୍ଥାତ୍ ବଚନର ବାହାରେ ଅର୍ଥାତ୍ ଗୁହ୍ୟ ଓ ଅପ୍ରକାଶ୍ୟ । ପ୍ରିୟ-ପ୍ରଣୟୀର ଆତ୍ମ-ବିନିମୟ ବା ଅଶ୍ରୁ-ବିନିମୟ ଏହିପରି ଏକ ଅନିର୍ବଚନୀୟ ଅଭିଜ୍ଞତା । କବି-ଶିଳ୍ପୀମାନଙ୍କର ସୃଜନାନନ୍ଦ ମଧ୍ୟ ଏହିପରି ଏକ ଅନିର୍ବଚନୀୟ ଅଭିଜ୍ଞତା ।

ତେଣୁ ଆମର ହୃତ୍-କମଳରେହିଁ ଆସୀନ ଈଶ୍ୱରଙ୍କୁ ଚିହ୍ନିପାରି, ଦେଖିପାରି କେବଳ ନୁହେଁ, ତାଙ୍କୁହିଁ ଏକମାତ୍ର ସଖା, ଗୁରୁ ଓ ଜନକ-ଜନନୀ ବୋଲି ମାନିନେଇ ସେହିପରି ଭାବରେ ଜୀବନ ପରିଚାଳନା କରିବା କି ଏକ ପାଟି-ତୁଣ୍ଡ-କରି ବଖାଣିବା ରୂପକ ଇତର ଅଭିଜ୍ଞତା ହୋଇପାରେ ?

ଗୀତା ଯଥାର୍ଥରେ ତେଣୁ କହିଛନ୍ତି ଯେ, ସେ ଅଭିଜ୍ଞତା ଗୁହ୍ୟ; ଗୁହ୍ୟତର ଓ ଗୁହ୍ୟତମ ।

( ୬୩ )

ଇତି ତେ ଜ୍ଞାନମାଖ୍ୟାତଂ ଗୁହ୍ୟାଦ୍ ଗୁହ୍ୟତରଂ ମୟା
ବିମୃଶ୍ୟୈତଦଶେଷେଣ ଯଥେଚ୍ଛସି ତଥା କୁରୁ । ୬୩ ।

ଇତ (ଏହି) ଗୁହ୍ୟାତ୍ ଗୁହ୍ୟତରଂ ଜ୍ଞାନଂ ( ଗୋପନୀୟଠାରୁ ଅଧିକ ଗୋପନୀୟ ଜ୍ଞାନ ) ତେ ମୟା ଆଖ୍ୟାତଂ ( ତୁମ ପାଖରେ ମୋ ଦ୍ୱାରା ବ୍ୟାଖ୍ୟାୟିତ ହେଲା ) । [ତୁମେ] ଅଶେଷେଣ ଏତତ୍ ବିମୃଶ୍ୟ ( ନିଃଶେଷରେ ଏହାର ଆଲୋଚନା କରିସାରି ) ଯଥା ଇଚ୍ଛସି ତଥା କୁରୁ ( ତୁମର ଯେପରି ଇଚ୍ଛା ସେପରି କର )

## ଅନୁବାଦ—

ଅତଏବ ହେ ଅର୍ଜୁନ, ମୁଁ ତୁମକୁ ଏହି ଅତି ଗୁପ୍ତ ଜ୍ଞାନତତ୍ତ୍ୱ କହିଲି । ଉତ୍ତମରୂପେ ଚିନ୍ତା ଓ ଆଲୋଚନା କରି ସାରି ତୁମର ଯେପରି ଇଚ୍ଛା ସେପରି କର ।

## ବିଶେଷ ଭାଷ୍ୟ—

ପାଠକେ ଲକ୍ଷ୍ୟ କରିବେ ଯେ, ଗୀତା ଶେଷ ହୋଇ ଆସିଲା ବେଳେ ମଧ୍ୟ, ଭକ୍ତି-ବାଦ ପ୍ରଚାର କଲେ ମଧ୍ୟ, ଗୀତା ଏଠି ବା କୌଣସିଠାରେ ହେଲେ ନିଜ ମତକୁ ବାଧ୍ୟ-ବାଧକ ରୀତିରେ ପ୍ରଚାର କର ନାହାନ୍ତି । ଶ୍ରୀକୃଷ୍ଣ

ଅଠର ଅଧ୍ୟାୟ ବଖାଣି ସାରିଲା ପରେ ମଧ୍ୟ, ବିଶ୍ୱରୂପ ଦେଖେଇ ସାରିଲେ ମଧ୍ୟ, ପରମ ଉଦାରତାଙ୍କର ପ୍ରିୟ ଶିଷ୍ୟଙ୍କୁ କହୁଛନ୍ତି—"ଯାହା କହଲି ତାହା ତୁମର ନିଜର "ବୁଦ୍ଧି ଯୋଗ" ପ୍ରୟୋଗ କରି, ଚିକ୍କିଣି କରି ବହୁର କର । ସେ ପ୍ରକାର ତୀକ୍ଷ୍ଣ ବିଶ୍ଳେଷଣାତ୍ମକ ଆଲୋଚନା ପରେହିଁ, ତୁମେ ନଜର ସିଦ୍ଧାନ୍ତ ଗ୍ରହଣ କରିବ ।"

ବିଶ୍ୱର ଅନ୍ୟ କୌଣସି ହେଲେ ଧର୍ମ-ଗ୍ରନ୍ଥରେ ଏ ପ୍ରକାର ଉଦାରତା ପ୍ରକାଶ ପାଇଛ ବୋଲି ମନେ ହେଉ ନାହିଁ ।

( ୭୪ )

ସର୍ବ ଗୁହ୍ୟତମଂ ଭୂୟଃ ଶୃଣୁ ମେ ପରମଂ ବଚଃ
ଇଷ୍ଟୋଽସି ମେ ଦୃଢମିତି, ତତୋ ବକ୍ଷ୍ୟାମି ତେ ହିତଂ । ୬୪ ।

ସର୍ବ ଗୁହ୍ୟତମଂ ମେ ପରମଂ ବଚଃ ଭୂୟଃ ଶୃଣୁ (ପୁଣି, ସବୁଠାରୁ ଗୋପନୀୟ ମୋର ଯେଉଁ କଥନୀୟ ତାହା ଶୁଣ) । ମେ ଦୃଢଂ ଇଷ୍ଟଃ ଅସି [ତୁମେ] (ମୋର ଅତ୍ୟନ୍ତ ପ୍ରିୟଜନ ଅଟ) । ତତଃ (ତେଣୁ) ତେ ହିତଂ ବକ୍ଷ୍ୟାମି (ତୁମର ଯାହା ଭଲ ହେବ ତାହାହିଁ କହିବ) ।

ଅନୁବାଦ—

ପୁଣି, ହେ ଅର୍ଜ୍ଜୁନ, ତୁମେ ମୋର ଅତି ପ୍ରିୟ । ସେଥିପାଇଁ ତୁମର ମଙ୍ଗଳ ସକାଶେ ସବୁଠାରୁ ଯାହା ଗୋପନୀୟ ସେହି ହିତ କଥା କହୁଛି ଶୁଣ ।

( ୭୫ )

ମନ୍ମନା ଭବ ମଦ୍‌ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ
ମାମେବୈଷ୍ୟସି ସତ୍ୟଂ ତେ ପ୍ରତିଜାନେ ପ୍ରିୟୋଽସିମେ ।୬୫।

[ତୁମେ] ମନ୍ମନା ଭବ (ମୋଠାରେ ବା ଈଶ୍ୱରଙ୍କଠାରେ ଏକାନ୍ତ ଭବରେ ମନ ରଖ), ମଦ୍ ଭକ୍ତଃ [ଭବ] (ମୋର ବା ଈଶ୍ୱରଂକର ଭକ୍ତ ହୁଅ) । ମଦ୍‌ଯାଜୀ [ଭବ] (ମୋର ବା ଈଶ୍ୱରଂକର ପୂଜାକର) । [ତାହେଲେ] ମାଂ ଏବ ଏଷ୍ୟସି (ମତେହିଁ ତୁମେ ପାଇବ) । ଅହଂ ତେ ସତ୍ୟଂ ପ୍ରତଜାନେ (ମୁଁ ତୁମଠାରେ ଏହି ସତ୍ୟ ପ୍ରତିଜ୍ଞା କରି ରଖୁଛି) । [କାରଣ ତୁମେ] ମେ ପ୍ରିୟଃ ଅସି (ମୋର ପ୍ରିୟ ଅଟ ) ।

ଅନୁବାଦ—

ତେଣୁ ହେ ଅର୍ଜ୍ଜୁନ, ତୁମେ ତୁମର ଚିତ୍ତକୁ ସମଗ୍ର ଭବରେ ଈଶ୍ୱରଂକୁ ସମର୍ପଣ କରଦିଅ, ଈଶ୍ୱରଂକ ଭକ୍ତ ବୋଲି ନିଜକୁ ପରିଚିତ କରଅ, ତାଂକରି

ପାଇଁହିଁ ସମସ୍ତ ଜୀବନକୁ ଏକ ନିରବଚ୍ଛିନ୍ନ ଯଜ୍ଞରେ ପରିଣତ କର । ପରମ ବିନୟରେ ସର୍ବଦା ଈଶ୍ୱର-ସ୍ତୁତି ପ୍ରତି ନମସ୍କାର କର ଏବଂ ତୁମକୁ ଏହି ପ୍ରତିଶ୍ରୁତି ଦେଉଛି ଯେ, ଏ ମାର୍ଗରେ ତୁମେ ସହଜରେ ଓ ସ୍ୱାଭାବିକ ଭାବରେହିଁ ଈଶ୍ୱରଙ୍କୁ ଲାଭ କରିବ ।

**ବିଶେଷ ଭାଷ୍ୟ—**

ଗୀତାର 'ମତ୍' ଯେ କେବଳ ଶ୍ରୀକୃଷ୍ଣଙ୍କୁ ବୁଝାଉନି, ତାହା ପାଠକେ ଏହି ଶ୍ଳୋକର ତାତ୍ପର୍ଯ୍ୟ ଆଲୋଚନା କଲେ, ଜାଣିବେ । ଅର୍ଜୁନ ଆଉ ଶ୍ରୀକୃଷ୍ଣଙ୍କଠାରୁ ଅଧିକା କ'ଣ ପାଇବେ ? ଯାହା ଯୋଗୀଋଷି-ଦେବ-ଗନ୍ଧର୍ବ କେହି ଦେଖି ନଥିଲେ ସେ ବିଶ୍ୱରୂପ ତ ଅର୍ଜୁନ ଦେଖିଲେ । ସେ ତ ନିଜେ କହିସାରିଛନ୍ତି ଯେ, ସେ ତାଂକୁ "ବିହାର ଶଯ୍ୟା ସନ ଭୋଜନେଷୁ" "ସଖେତି ମତ୍ୱା" ଅତି ଘନିଷ୍ଠ ଭାବରେ ବ୍ୟବହାର କରିଆସିଛନ୍ତି । ଶ୍ରୀକୃଷ୍ଣ ତ ପୁଣି ବର୍ତ୍ତମାନ ତାଂକର ସାରଥୀ ଓ ଉପଦେଷ୍ଟା । ପାଇବାକୁ ତେଣୁ ବାକୀ ଆଉ କ'ଣ ରହିଲା ? ଅର୍ଜୁନ ଓ ଦ୍ରୌପଦୀ ସହିତ ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କ ପ୍ରତ 'ମନ୍ମନା' 'ମଦ୍ଭକ୍ତ' ବା 'ମଦ୍ଯାଜୀ' ହୋଇ ନାହାନ୍ତି ବୋଲି କହିହେବ କି ? ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ଶ୍ରୀକୃଷ୍ଣଙ୍କୁ ତ ଅଗ୍ରପୂଜା ଦେଇଛନ୍ତି ପାଣ୍ଡବ ମାନେ ।

ତେଣୁ ଏ ଶ୍ଳୋକର ଉପଦେଶ ଗୀତାର ସାଧାରଣ ପାଠକର ସାଧାରଣ ଈଶ୍ୱରଙ୍କ ସଂପର୍କରେ ବୋଲି ଧରିଲେହିଁ ଅର୍ଥ ଓ ତାତ୍ପର୍ଯ୍ୟ ଯୁକ୍ତି-ଯୁକ୍ତ ହେବ । କେବଳ ଅର୍ଜୁନ ନୁହନ୍ତି, ଗୀତାର ପ୍ରତ୍ୟେକ ପାଠକ, ଈଶ୍ୱରଙ୍କର ଇଷ୍ଟ ଓ ପ୍ରିୟ ବୋଲି ଧରିବାକୁ ହେବ । ଶ୍ରୀକୃଷ୍ଣ ନବମ ଅଧ୍ୟାୟରେ ସ୍ପଷ୍ଟ ଘୋଷଣା କରିସାରିଛନ୍ତି ଯେ, "ସମୋଽହଂ ସର୍ବଭୂତେଷୁ ନ ମେ ଦ୍ୱେଷ୍ୟୋଽସ୍ତି ନ ପ୍ରିୟଃ" (୯।୨୯) । ଏବଂ ତାହାହିଁ ଯଥାର୍ଥ । ରଚନାର ସଂଗତି ରକ୍ଷା ପାଇଁ, ଗଳ୍ପର ମୁଖ୍ୟ ନାୟକ, ଗୌଣ ନାୟକଙ୍କୁ "ତୁମେ ମୋର ପ୍ରିୟ, ମୋର ଅତି ନିକଟର, ତେଣୁ ତୁମକୁ ଏକଥା କହିଦେଉଛି" ଇତ୍ୟାଦି କହିବା ସ୍ୱାଭାବିକ । ସେସବୁ କିନ୍ତୁ ଲେଖକର ମନଶ୍ଚକ୍ଷୁରେ ଅଦୃଶ୍ୟ ପାଠକ ସାଧାରଣଙ୍କ ପାଇଁହିଁ ଉଦ୍ଦିଷ୍ଟ ଥାଏ ।

( ୬୬ )

ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ।୬୬।

[ତୁମେ] ସର୍ବଧର୍ମାନ୍ ପରିତ୍ୟଜ୍ୟ (ଅନ୍ୟ ସକଳ ଅଧ୍ୟାତ୍ମ-ସାଧନ-ମାର୍ଗ ପରିତ୍ୟାଗ କରି) ଏକଂ ମାଂ ଶରଣଂ ବ୍ରଜ (କେବଳ ମତେ ଅର୍ଥାତ ଈଶ୍ୱରଙ୍କୁହିଁ ଆଶ୍ରୟ କର) ଅହଂ ତ୍ୱାଂ ସର୍ବପାପେଭ୍ୟଃ ମୋକ୍ଷୟିଷ୍ୟାମି (ମୁଁ ତୁମକୁ ସକଳ ପାପରୁ ମୁକ୍ତ କରିଦେବି ) ମା ଶୁଚଃ ( କୌଣସି ଶୋଚନା କରନାହିଁ )।

## ଅନୁବାଦ—

ତେଣୁ ହେ ଅର୍ଜୁନ, ଅନ୍ୟ ସକଳ ଅଧ୍ୟାତ୍ମ-ସାଧନ-ମାର୍ଗ ପରିତ୍ୟାଗ କରି କେବଳ ମତେ (ଈଶ୍ୱରଙ୍କୁ) ହିଁ ଆଶ୍ରୟ କର । ମୁଁ (ଈଶ୍ୱର) ତୁମକୁ ସକଳ ପାପରୁ ରକ୍ଷା କରିବି । କୌଣସି ଶୋଚନାର କାରଣ ନଥିବ ।

## ବିଶେଷ ଭାଷ୍ୟ—

ପାଠକେ ମନେରଖିବେ ଯେ, ସାଧାରଣ ଅର୍ଥରେ ଅର୍ଜୁନ, ଆମପରି ପାପୀ ତାପୀ ଲୋକ ନଥିଲେ, କି ଏଠାରେ ବା ଗୀତାର କୌଣସିଠାରେ ଅର୍ଜୁନ ନିଜର "ପାପ-କ୍ଷାଳନ" କଥା ଉଠାଇ ନାହାନ୍ତି । ତେଣୁ "ମୁଁ ତତେ ସବୁ ପାପରୁ ମୁକ୍ତି ଦେଇଦେବି, କିଛି ଚିନ୍ତା କରନା"—ଏଠାରେ ଏପରି ଏକ ବାକ୍ୟ, ଏକାନ୍ତ ଅବାନ୍ତର । ବୋଧହୁଏ ଭକ୍ତିବାଦ ସହିତ "ଶ୍ରୀକୃଷ୍ଣ-ବାଦକୁ"ହିଁ ପ୍ରତିଷ୍ଠିତ କରିବା ଲକ୍ଷ୍ୟରେ, ଗୀତାକାର ଏପରି କହିବାକୁ ବାଧ୍ୟ ହୋଇଛନ୍ତି ଏବଂ ସେ ପ୍ରକାର ବଚନ ଅର୍ଜୁନ ଅପେକ୍ଷା ସାଧାରଣ ଗୀତା-ପାଠକ ପ୍ରତି ହୁଏତ ଅଯଥାର୍ଥ ବୋଧ ହେବ ନାହିଁ । କିନ୍ତୁ ବୁଦ୍ଧ, ଯୀଶୁ, ମହମ୍ମଦ ଇତ୍ୟାଦି ମହାତ୍ମାମାନଙ୍କ କଥା ଛାଡ଼, ପୃଥିବୀରେ ଦେଶେ ଦେଶେ, ସମାଜେ ସମାଜେ ଅଗଣିତ ଗୁରୁ, ସ୍ୱାମୀ, ସେଣ୍ଟ ଇତ୍ୟାଦିଙ୍କ ଭିତରେ ମନୁଷ୍ୟର ଶ୍ରଦ୍ଧା-ବିଶ୍ୱାସ ବହୁଧା ବିଭକ୍ତ ହୋଇ ରହିଥିବା ସ୍ଥଳେ, ସ୍ୱୟଂ-ଈଶ୍ୱର-ବୋଲି-ଦାବୀ-କରୁଥିବା ଏକ ରଥ-ଚାଳକ ଶ୍ରୀକୃଷ୍ଣ ନିଜେ "ସମସ୍ତଙ୍କୁ ଛାଡ଼ ମତେଇ ଭଜନା କର"—ଏଭଳି ଅଯଥାର୍ଥ ବାକ୍ୟ ଉଚ୍ଚାରଣ କରିବେ କିଆଁ ? ଏବଂ ସେହି ସ୍ୱୟଂ ଈଶ୍ୱରଙ୍କ ବାଣୀ, ସମଗ୍ର ପୃଥିବୀ କଥା ଛାଡ଼; ନିଜ ଜନ୍ମ ଭାରତ-ବର୍ଷରେ ବା ଏବଯାଏଁ ଏପରି ଅପାଳିତ ହୋଇ ରହିଛି କାହିଁକି ? ପାଠକେ ବିଚାର କରନ୍ତୁ, ହିନ୍ଦୁ ସମାଜର ମଧ୍ୟ କେତେ ସାମାନ୍ୟ ଅଂଶ ମାତ୍ର ଏକମାତ୍ର-ଶ୍ରୀକୃଷ୍ଣ-ଉପାସକ ?

( ୬୭ )

ଇଦଂ ତେ ନାତପସ୍କାୟ ନାଭକ୍ତାୟ କଦାଚନ
ନ ଚାଶୁଶ୍ରୂଷବେ ବାଚ୍ୟଂ ନ ଚ ମାଂ ଯୋଽଭ୍ୟସୂୟତି ।୬୭।

ଇଦଂ (ଏହି ଯେ ଐକାନ୍ତିକ ଭକ୍ତିବାଦ ବା ଗୀତାର ମୋଟ କଥା) ତେ (ତୁମର) ଅତପସ୍କାୟ (ତପସ୍ୟା ବା କୌଣସି ପ୍ରକାର ଆତ୍ମିକ-ସାଧନା-ବିହୀନ ଲୋକକୁ) [ବା] ନ ଅଭକ୍ତାୟ (ଯାହାର ଭକ୍ତି-ପ୍ରବଣତା ନାହିଁ, ସେପରି ଲୋକକୁ) ନ ଚ ଅଶୁଶ୍ରୂଷବେ ( ସେପରି ଲୋକକୁ, ଯେ କି ଏ ପ୍ରକାର କଥା ଶୁଣିବାକୁ ଅର୍ଥାତ୍ ଜାଣିବାକୁ ମଧ୍ୟ ଉତ୍ସାହୀ ନୁହେଁ ) ଯଃ ଚ ମାଂ ଅଭ୍ୟସୂୟତି (ପୁଣି ଯେ ମୋର ନିନ୍ଦା କରିଥାନ୍ତି, ସେପରି ଲୋକକୁ) ନ ବାଚ୍ୟଂ (କହିବ ନାହିଁ )।

## ଅନୁବାଦ—

ହେ ଅର୍ଜୁନ, ଏହି ଯେ ଭକ୍ତିଯୋଗ କଥା ତୁମକୁ କହିଗଲି, ଏହାକୁ କୌଣସି ଅଧ୍ୟାତ୍ମ-ସାଧନା-ହୀନ ଲୋକ ବା ଅଭକ୍ତ ବା ଏ ଦିଗରେ ଅନୁତ୍ସାହୀ ବା ଯେ ଈଶ୍ୱର-ନିନ୍ଦୁକ, ସେପରି ଲୋକ ଆଗରେ ଏହାର ବ୍ୟାଖ୍ୟା ଯେପରି ନକର ।

## ବିଶେଷ ଭାଷ୍ୟ—

ବୈଦିକ-ବ୍ରାହ୍ମଣ୍ୟ ସଂସ୍କୃତି, ଧର୍ମ ବା ଆଧ୍ୟାତ୍ମିକତାକୁ ସଂଖ୍ୟା ଦେଇ ମାପିବାର ଜାଣି ନଥିଲା । ତେଣୁ ଏ ହେଲା ପୃଥିବୀରେ ଏକମାତ୍ର ଧର୍ମ ଯେ କି ପ୍ରଚାର କରି ବା ଜବରଦସ୍ତି କରି ନିଜ ଗୋଷ୍ଠୀର ସଂଖ୍ୟା ବଢ଼େଇବା ପାଇଁ ଲୋକଙ୍କୁ ଧର୍ମାନ୍ତର ଗ୍ରହଣ କରାଏ ନାହିଁ । ଗୌତମବୁଦ୍ଧ ପୃଥିବୀ-ଇତିହାସର ଆଦ୍ୟ ଧର୍ମ-ପ୍ରଚାରକ ଓ ଧର୍ମ-ସଂଘ (ଚର୍ଚ୍ଚ)ର ପ୍ରତିଷ୍ଠାତା । କିନ୍ତୁ ବୁଦ୍ଧ ନିଜକୁ ପ୍ରଚାର କରିବାକୁ ଧର୍ମ-ପ୍ରଚାର କରିନଥିଲେ । ନିଜାବିଷ୍କୃତ ସତ୍ୟକୁ ସର୍ବଆଡ଼େ ବୁଣିଦେବା ପାଇଁହିଁ ସେ ତାଙ୍କର ଶିଷ୍ୟସଂଖ୍ୟା ଷାଠିଏ ହେଲା ମାତ୍ରେ, ତାଙ୍କ ପଛେ ପଛେ ସମସ୍ତେ ନଯାଇ, ସେମାନଙ୍କୁ ଷାଠିଏଟି ଦିଗରେ ଏକାଏକା ଯାଇ ନବ ସତ୍ୟକୁ ପ୍ରଚାର କରିବାକୁ କହିଥିଲେ ଏବଂ ସେହିଭଳିଭାବରେହିଁ ବୌଦ୍ଧ-ବାଦ କ୍ରମେ ପୃଥିବୀବ୍ୟାପ୍ତ ହୋଇ ଉଠିଛି । ପୁଣି ଏହି ବୌଦ୍ଧଧର୍ମ ହେଉଛି ଏକମାତ୍ର ଧର୍ମ, ଯାହାର ପ୍ରଚାର ଓ ପ୍ରସାର ପାଇଁ ଏକବିନ୍ଦୁ ମନୁଷ୍ୟ-ରକ୍ତ କେଉଁଠି ହେଲେ ପଡ଼ିନାହିଁ । ବୁଦ୍ଧ ନିଜେ ଯୁକ୍ତିତର୍କ ଦ୍ୱାରାହିଁ ବିରୋଧୀମାନଙ୍କୁ ସ୍ୱମତକୁ ଆଣୁଥିଲେ ଏବଂ ତାଙ୍କପରେ ମଧ୍ୟ ତାହାହିଁ ରହି ଆସିଛି, ସେହି ଧର୍ମ-ପ୍ରଚାରର ଏକମାତ୍ର ପନ୍ଥା । ବୁଦ୍ଧଙ୍କ ପରେ ଧର୍ମ-ସଂଗଠନ ଦେଖାଦେଲା; ଯୀଶୁଖ୍ରୀଷ୍ଟ ଓ ମହମ୍ମଦଙ୍କୁ କେନ୍ଦ୍ର କରି । ଏ ଦୁଇ ଧର୍ମରେ ବରଣୀୟ ଅନେକ ଗୁଣ ଥିଲେହେଁ ଏମାନଙ୍କର ମତାନ୍ଧତା ସୁବିଦିତ ଏବଂ ମଧ୍ୟ-ପ୍ରାଚ୍ୟର

ସେମିଟିକ୍-ଗୋଷ୍ଠୀ-ଉଦ୍ଭୂତ ଏହି ଦୁଇ ଧର୍ମକୁ ଘେନି ଯେତେ ପରିମାଣ ମନୁଷ୍ୟ-ଅଶ୍ରୁ ଓ ମନୁଷ୍ୟ-ରକ୍ତ ଦ୍ୱାରା ଧରା-ପୃଷ୍ଠ ରଂଜିତ ହୋଇଛି, ସେପରି ହୁଏତ ଘଟି ନଥିବ, ସେମାନଂକର ଆବିର୍ଭାବ କାଳରୁ ଏ ପର୍ଯ୍ୟନ୍ତ ଘଟିଥିବା ସକଳ ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ । ମହମ୍ମଦାନୁଗାମୀମାନଂକର ଭାରତରେ ବର୍ବର ଓ ଅମାନୁଷିକ ଧ୍ୱଂସଲୀଳା ସୁବିଦିତ । ସ୍ୱ-ଧର୍ମ ପ୍ରଚାର ଲାଗି ଖ୍ରୀଷ୍ଟାନ ମିସନାରୀମାନେ ମୁସଲମାନମାନଂକ ଅପେକ୍ଷା ସଭ୍ୟତର ଓ ଅଧିକ ମାନବିକ ପନ୍ଥା ଅବଶ୍ୟ ଗ୍ରହଣ କରିଥାନ୍ତି । କିନ୍ତୁ ଏମାନଂକର ରାଷ୍ଟ୍ରୀୟ ବା ରାଜନୈତିକ ଆୟୁଧ ମୁସଲମାନର କରବାଳ ଅପେକ୍ଷା କମ୍ ମାରାତ୍ମକ ନୁହେଁ । ପୁଣି ଜେହେଦ୍ ଓ ଖ୍ରୀଷ୍ଟାନ୍ ଚର୍ଚ୍ଚ ଭିତରେ ରକ୍ତାକ୍ତ ସଂଗ୍ରାମ, ସମଗ୍ର ୟୁରୋପୀୟ ଇତିହାସକୁ ବର୍ବର କରି ପକାଇଛି ।

ଗୀତାର ଉପର୍ଯ୍ୟୁକ୍ତ ଶ୍ଳୋକଟି ବିଶ୍ୱର ସକଳ ଧର୍ମ ଭିତରେ ହିନ୍ଦୁ ବା ବୈଦିକ-ବ୍ରାହ୍ମଣ୍ୟ ଧର୍ମର ସେହି ସ୍ୱକୀୟ ଐତିହାସିକ ଭୂମିକାକୁହିଁ ପ୍ରତିବିମ୍ବିତ କରିଛି ମାତ୍ର । ହିନ୍ଦୁ ଧର୍ମ, ଧର୍ମକୁ ସଂଖ୍ୟା ଉପରେ ଠିଆ ହେବାର କେବେ କଳ୍ପନା କରି ନ ଥିଲା ଏବଂ ତାହାହିଁ ଯଥାର୍ଥ ଓ ଯୁକ୍ତିଯୁକ୍ତ ଦୃଷ୍ଟିକୋଣ । ହିନ୍ଦୁ, ପରବ୍ରହ୍ମବାଦ୍ୟା ଓ ଅପରବ୍ରହ୍ମବାଦ୍ୟା, ଉଭୟ ପାଇଁ ପ୍ରତ୍ୟେକ ମନୁଷ୍ୟର ଆତ୍ମିକ-ମାନସିକ 'ଅଧିକାର'କୁହିଁ ଏକମାତ୍ର ଦାବୀ ବୋଲି ସ୍ୱୀକାର କରିଆସିଛି । କୌଣସି ହିନ୍ଦୁ ଯୋଗୀ ବା ସନ୍ନ୍ୟାସୀ, କେବଳ ବ୍ରାହ୍ମଣ ହୋଇଥିବା ହେତୁ ତାହାକୁ ଶିଷ୍ୟତ୍ୱ ଦେଇଦେବେନ ବା ଅ-ବ୍ରାହ୍ମଣ ବୋଲି, "ଅଧିକାର" ସତ୍ତ୍ୱେ, ତାହାକୁ ପ୍ରତ୍ୟାଖ୍ୟାନ କରିଦେବେ ନାହିଁ । ଆମେ ଏବେ ପାଶ୍ଚାତ୍ୟାନୁ-କରଣରେ ଶତକଡ଼ା-ତିରିଶ-ସୂଚକ ଜଗଟ ସିଦ୍ଧି-ସୂଚକ ସାର୍ଟିଫିକେଟ ବାଣ୍ଟି, ଦେଶକୁ ବି. ଏ., ଏମ. ଏ. ର ପଙ୍ଗପାଳ ବାହିନୀଦ୍ୱାରା ଧ୍ୱଂସୋନ୍ମୁଖୀ କରି ପାରିଲୁଣି । ଭାରତୀୟ ସଂସ୍କୃତ ଏ ପ୍ରକାର ସର୍ବଥା ଅଯୌକ୍ତିକ ଓ ଉପହାସ୍ୟ ଓ ମାରାତ୍ମକ ପଦ୍ଧତିରେ କେବେ ହେଲେ ବିଶ୍ୱାସ କରି ନ ଥିଲା । ଜଗଟ ଭାରତୀୟ ସଂସ୍କୃତି ଗଢ଼ ଉଠିଥିଲା, ସେହି ମୁଷ୍ଟିମେୟ ଆତ୍ମା ଦେଇ ଯେଉଁଠି ଜନ୍ମ ଜନ୍ମାନ୍ତରର ସାଧନା ଫଳରେ 'ଅଧିକାର' ଫୁଟି ଉଠୁଥିଲା । ଏହି 'ଅଧିକାର'ର ପ୍ରଥମ ଓ ପ୍ରଧାନ ଲକ୍ଷଣ ହେଲା ଜିଜ୍ଞାସା ବା ପରିପ୍ରଶ୍ନ—ଦରମା ଦେଇ ପାରିଲେ ସ୍କୁଲ-କଲେଜରେ ଆଡ୍‌ମିଶନ-ଅଧିକାର, ତା ତୁଳନାରେ କପରି ସ୍ଥୂଳ ଓ ଅଯୌକ୍ତିକ, ପାଠକେ ବିଚାର କରନ୍ତୁ ।

ଚତୁର୍ଥ ଅଧ୍ୟାୟରେ ଗୀତା ନିଜେ ଭାରତୀୟ ଜ୍ଞାନ-ବିଜ୍ଞାନ-ସାଧନାର ମନୋଜ୍ଞ ଚିତ୍ର, ମାତ୍ର ଗୋଟିଏ ଶ୍ଳୋକରେ ଦେଖାଇ ଯାଇଛନ୍ତି ।

ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା
ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ ଜ୍ଞାନିନସ୍ତତ୍ତ୍ୱ ଦର୍ଶିନଃ (୪।୩୪)

'ପରିପ୍ରଶ୍ନ' ବା ଜିଜ୍ଞାସା ଜାଗ୍ରତ ହେଲେ, ଲୋକ ତତ୍ତ୍ୱଦର୍ଶୀ ଜ୍ଞାନୀ ଲୋକ ଯେ କି ତା'ର ପ୍ରଶ୍ନ ସବୁର ଉତ୍ତର ଦେଇପାରିବେ ତାଙ୍କୁ ଖୋଜିବ ।

ତତ୍ତ୍ୱଦର୍ଶୀ ଗୁରୁ, ଫିଜ୍ ନେଇ ଖଦ୍ୟା ବା ଘିଅ-ମାଛ-ସବୁ ଋଉଳ ବଦଳରେ ବା ବ୍ରାହ୍ମଣ-କରଣ-ଚଷା ଷଣ୍ଢରରେ ଡିଗ୍ରୀ ବାଣ୍ଟନ୍ତିନି, ଏବେ ଯେପରି ହେବାର ଶୁଣାଯାଏ ଆମର ତଥାକଥିତ ଷଣ୍ଢ ବିଦ୍ୟାଳୟ ସ୍ତରରେ ମଧ୍ୟ ।

ପ୍ରକୃତ ଜ୍ଞାନୀ, ପ୍ରକୃତ ସତ୍ୟ-ସଂଧାନୀ ବା ତତ୍ତ୍ୱଦର୍ଶୀ ପ୍ରଥମେ ଚାହିଁବେ ପ୍ରଣିପାତ—ଶିଷ୍ୟର ପରିପୂର୍ଣ୍ଣ 'ସରେଣ୍ଡର' ବା ଆତ୍ମସମର୍ପଣ । ସେହି ଆତ୍ମ-ସମର୍ପଣ ପ୍ରକାଶିତ ହେବ, ଶିଷ୍ୟର ଗୁରୁଙ୍କ ନିଷ୍କାପଟ ସେବାରେ । ଗୁରୁ ଏ ସବୁ ପରୀକ୍ଷା ରେ ଶିଷ୍ୟ ପ୍ରତି ସନ୍ତୁଷ୍ଟ ହେଲେ ଯାଇଁ ଉପଦେଶ ଦେବେ ।

ଠିକ୍ ଏହି ମନୋଜ୍ଞ-ମହତ୍ ଭାରତୀୟ ଐତିହ୍ୟକୁ ସ୍ୱତଃ ଅନୁସରଣ କରିହିଁ, ତରୁଣ ନରେନ୍ଦ୍ରନାଥ ରାମକୃଷ୍ଣଙ୍କୁ ଖୋଜି ପାଇଥିଲେ ଓ ରାମକୃଷ୍ଣ ମଧ୍ୟ ସୁଯୋଗ୍ୟ ଶିଷ୍ୟର 'ପରିପ୍ରଶ୍ନ' 'ପ୍ରଣିପାତ' ଓ 'ସେବା'ରେ ମୁଗ୍ଧ ହୋଇ ତାଙ୍କୁ ସବୁ ଦେଇ ଦେଇଥିଲେ ।

ଗୀତାର ଏହି ଶ୍ଳୋକଟି ଭାରତରେ ଜ୍ଞାନ-ଦାନର ସେହି ଉନ୍ନତ, ଯୁକ୍ତିଯୁକ୍ତ, ସୁନ୍ଦର, ମହତ୍ ଐତିହ୍ୟକୁହିଁ ପ୍ରକାଶ କରୁଛି । ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଅଧ୍ୟାତ୍ମ-ଉନ୍ନୟନର ସରଳତମ ଓ ମଧୁରତମ ପନ୍ଥା ବତାଇ ଦେଲେ । ତାହା ହେଲା ଭକ୍ତି-ବାଦ । ଅର୍ଜ୍ଜୁନ ଏହି ନବାବିଷ୍କୃତ ସତ୍ୟଟିକୁ ପାଇ, ଭାବିଆଡ଼େ କହିବୁଲିବା ସ୍ୱାଭାବିକ । ବିଶେଷତଃ ଯେତେବେଳେ ଏହାଦ୍ୱାରା ତାଙ୍କ ଭାଇ, ଗୁରୁ, ସଖା, ବନ୍ଧୁ ଓ ମିତ୍ର ଶ୍ରୀକୃଷ୍ଣଙ୍କର ମହିମାହିଁ ପ୍ରଚାରିତ ହେବ—ଯେପରି ଇସ୍‌ଲାମ୍ ଧର୍ମ କରେ ମହମ୍ମଦଙ୍କର ଓ ଖ୍ରୀଷ୍ଟାନ୍ ଧର୍ମ କରେ ଯୀଶୁଖ୍ରୀଷ୍ଟଙ୍କର । କିନ୍ତୁ ଏଗୁଡ଼ିକ ହେଲେ ବ୍ୟକ୍ତି-କେନ୍ଦ୍ରିକ ଧର୍ମ । ଏକମାତ୍ର ନର୍ବୈୟକ୍ତିକ ଧର୍ମ ହେଲା ହିନ୍ଦୁ ଧର୍ମ । ଗୀତା ତେଣୁ ଅର୍ଜ୍ଜୁନଙ୍କୁ ଆଗରୁ କହିରଖିଛନ୍ତି ଯେ "ଦେଖ, ଏହି ସତ୍ୟ ବା ତତ୍ତ୍ୱକୁ ତୁମେ ଯେଉଁଠି ସେଠି ପ୍ରଚାର କରିବସିବନି । ଯେଉଁ ଲୋକଠାରେ ତୁମେ କୌଣସି ପ୍ରକାର ସାଧନା ଦେଖିବନି ( ଅ-ତପସ୍ୱ ), ନିଜର ସାମାଜିକ-ପାରିବାରିକ-ଲାଭ ଛଡ଼ା ଯେ ଅନ୍ୟ କେଉଁ କଥାରେ ଶ୍ରଦ୍ଧାହୀନ ( ଅଭକ୍ତ ), ଏ ସବୁ କଥା ଜାଣିବା ଶୁଣିବା ପାଇଁ ଯାର କୌଣସି

ଉତ୍ସାହହିଁ ନାହିଁ ( ଅଶୁଶ୍ରୂଷବେ ) ଏବଂ ଯେ ବ୍ୟକ୍ତିଗତ ଭାବରେ ମୋ ପ୍ରତି ( ଈଶ୍ୱରଙ୍କ ପ୍ରତି ) ଦ୍ୱେଷଯୁକ୍ତ, ସେପରି ଲୋକଙ୍କ ଆଗରେ ଏହାର ପ୍ରଚାର କରି, ଏହି ପରମ ସତ୍ୟର ଯେପରି ଅବମାନନା କରିବ ନାହିଁ ।

କିନ୍ତୁ ଏହି ଲେଖକର ସ୍ୱମତ ଏହି ଯେ ଏକରେ ସାଙ୍ଗଠନିକ ପ୍ରସାରର ଅଭାବ ଏବଂ ଦ୍ୱିତୀୟରେ ମନୁଷ୍ୟକୁ ( ନାରୀକୁ ମଧ୍ୟ ) ଯଥାର୍ଥ ମାନବିକ ସମ୍ମାନ ନ ଦେବା ଫଳରେହିଁ ହିନ୍ଦୁ ଧର୍ମ, ଗତ ଏକ ସହସ୍ର ବର୍ଷ ଧରି ନିଜକୁ ହ୍ରତ ଓ ପରାଜିତ କରିଚାଲିଛି । ଯାହା କାଲି ତାରହିଁ ଗଡ଼ା ଥିଲା; ସେପରି ବହୁତ ଭୂଖଣ୍ଡମାନ ଆଜି ଅନ୍ୟ ଧର୍ମମାନଙ୍କ ଦ୍ୱାରା ବଳାତ୍କାରରେ ଅଧିକୃତ । ଦ୍ୱିଖଣ୍ଡିତ ହେଲା ପରେ ମଧ୍ୟ 'ହିନ୍ଦୁର ସ୍ଥାନ' ବୋଲି ଯେଉଁ ବାକୀ ଅଂଶ ରହିଛି; ସେଠି ବି, ଖ୍ରୀଷ୍ଟାନ୍ ଓ ଇସଲାମ ନିଜ ନିଜ ସଂଖ୍ୟା ବଢ଼େଇ ଚାଲିଲା ବେଳେ ବିଚରା ହିନ୍ଦୁ ଧର୍ମ ନିଜ-ନୀତିର-ବନ୍ଧନରେ ବାନ୍ଧହୋଇ ପରମ ଦୁର୍ବଳତାରେ ଅସହାୟ ହୋଇ ଠିଆ ରହିଛି ।

ଧର୍ମଟା ଏପରି ଦୁର୍ବଳ ଓ ଅସହାୟ ଓ ଛିନ୍ନ-ଭିନ୍ନ ହେଲେ ଚଳିବ କିପରି ?

ଯଦି ତୁମ ପାଖରେ ସତ୍ୟ ଅଛି ସ୍ଥାନ-ବ୍ୟକ୍ତି-ନିର୍ବିଶେଷରେ ତାହା ପ୍ରଚାର ନ କରିବ କାହିଁକି ? ସତ୍ୟଠାରେ ଭୟ ବା ଆଶଙ୍କା କଣ ? ଯିଏ ଗ୍ରହଣ କଲା କଲା, ଯିଏ ଗ୍ରହଣ ନ କଲା ନ କଲା । କିନ୍ତୁ ସତ୍ୟ ସର୍ବଦା ଅନ୍ୟକୁ, ଏପରିକି ଶତ୍ରୁକୁ ମଧ୍ୟ ଆଲିଙ୍ଗନ କରିବାକୁ ପ୍ରସ୍ତୁତ ରହିବା ଉଚିତ । ସତ୍ୟର ପ୍ରିୟ, ଅପ୍ରିୟ ବୋଲି କେହି ରହିବା ଉଚିତ ନୁହେଁ । ଆଧୁନିକ ନବାବିଷ୍କୃତ ବୈଜ୍ଞାନିକ ସତ୍ୟ ସବୁ ଯୁକ୍ତରତ କମ୍ୟୁନିଷ୍ଟ-ଅକମ୍ୟୁନିଷ୍ଟ-ନିର୍ବିଶେଷରେ ସମଗ୍ର ବିଶ୍ୱର ସମ୍ପତ୍ତି ହୋଇ ଯାଉଛି, ଲାବରେଟରୀରୁ ବାହାରିବା ମାତ୍ରେ । ଧର୍ମ ସମ୍ବନ୍ଧରେ ମଧ୍ୟ ତାହାହିଁ ହେବା ଉଚିତ । ହୁଏତ ଏକବିଂଶ ଶତାବ୍ଦୀ ଆଡ଼କୁ ଏପରି ହେବ ଯେ, ଆନୁଷ୍ଠାନିକ ଧର୍ମ ପ୍ରଚାର ମିଳିତ-ଜାତି-ସଂଘ ଦ୍ୱାରା ବନ୍ଦ କରାଯିବ ଏବଂ ଏପରି ହେବ ଯେ, ଏବେ ଯେମିତି ସର୍ବତ୍ର ଈଶ୍ୱର ଭିନ୍ନ ଭିନ୍ନ ଭାଷା-ଶିକ୍ଷାର ବ୍ୟବସ୍ଥା ହେଉଛି, ସେମିତି ଏକ ଏକ ସ୍ଥାନରେ ହିନ୍ଦୁ-ବୌଦ୍ଧ-ଖ୍ରୀଷ୍ଟାନ୍-ଇସଲାମ୍ ଇତ୍ୟାଦି ସବୁ ଧର୍ମର ବ୍ୟାଖ୍ୟାର ବ୍ୟବସ୍ଥା ରହିବ ଏବଂ ଶ୍ରୋତାମାନଙ୍କ ମଧ୍ୟରୁ ଯିଏ ଯେଉଁ ଧର୍ମ ଗ୍ରହଣ କଲା—ସେଥିପାଇଁ କୌଣସି ବାଧ୍ୟ-ବାଧକତା ନ ଥିବ । ସେ ପରିସ୍ଥିତିରେ ଗୀତାର ଜୟ ଅବଶ୍ୟମ୍ଭାବୀ । କାରଣ ଏଥିରେ ବିଶୁଦ୍ଧ ସତ୍ୟ ନିହିତ ଅଛି । ଉପର ଶ୍ଳୋକରେ ଗୀତା

ଯେପରି ନିଜକୁ ଭୀତ-ସଂକୁଚିତ ମନେ କରୁଛନ୍ତି ସେଥିପାଇଁ କୌଣସି କାରଣ ନାହିଁ, କ ପରେ 'ସେ କେଉଁଠି ପ୍ରିୟ' ବୋଲି ଯେପରି ବର୍ଣ୍ଣନା କରିଛନ୍ତି ସେଥିରେ ବି କୌଣସି ମହତ୍ତ୍ୱ ନାହିଁ ।

( ୬୮ )

ଯଂ ଇଦଂ ପରମଂ ଗୁହ୍ୟଂ ମଦ୍‌ଭକ୍ତେଷ୍ୱଭିଧାସ୍ୟତି
ଭକ୍ତିଂ ମୟି ପରଂ କୃତ୍ୱା ମାମେବୈଷ୍ୟତ୍ୟସଂଶୟଃ ।୬୮।

ଯଃ (ଯେ) ଇଦଂ ପରମଂ ଗୁହ୍ୟଂ (ଏହି ପରମ ଗୋପନୀୟ ତତ୍ତ୍ୱକୁ) ମଦ୍‌ଭକ୍ତେଷୁ ଅଭିଧାସ୍ୟତି (ମୋରି ଭକ୍ତମାନଂକ ନିକଟରେ ବ୍ୟାଖ୍ୟା କରିବେ) [ସେ] ମୟି (ମୋଠାରେ) ପରଂ ଭକ୍ତିଂ କୃତ୍ୱା [ସେହି ସୂତ୍ରରେ ମୋଠାରେ] ( ପରମ ଭକ୍ତି ପ୍ରଦର୍ଶନ କରିଥିବା ହେତୁ ) ଅସଂଶୟଃ (ନିଃସନ୍ଦେହ ଭବରେ) ମାଂ ଏବ ଏଷ୍ୟତି (ଆମ୍ଭଂକୁହିଁ ପ୍ରାପ୍ତ ହେବ) ।

**ଅନୁବାଦ—**

ହେ ଅର୍ଜ୍ଜୁନ, ଯେ ଏହି ପରମ ଗୋପନୀୟ ତତ୍ତ୍ୱକୁ ମୋର (ଈଶ୍ୱରଂକର) ଉପାଦୀ ଭକ୍ତମାନଂକ ନିକଟରେ ବ୍ୟାଖ୍ୟା କରିବେ ସେହି ବ୍ୟାଖ୍ୟାପକ-ପ୍ରଚାରକ ମଧ୍ୟ ସେହି ସୂତ୍ରରେ ମୋଠାରେ ପରମ ଶ୍ରଦ୍ଧା ପ୍ରଦର୍ଶନ ହେତୁ ନିଃସନ୍ଦେହରେ ମତେ ପ୍ରାପ୍ତ ହେବେ ।

**ବିଶେଷ ଭାଷ୍ୟ—**

ନିଜ ଭକ୍ତମାନଂକ ମଧ୍ୟରେ ନିଜ କଥା ପ୍ରଚାରରେ ବିଶେଷ ଗୌରବ ବା କାର୍ଯ୍ୟକାରିତା କି ଅଛି ? ଏହା ନିଃସନ୍ଦେହରେ ଅଦୂରଦର୍ଶିତା ସୂଚକ । ଆମେ ଯାହାକୁ ଦିନେ "(ମ୍ଲେଚ୍ଛ" ବୋଲି ଘୃଣା କରୁଥିଲୁ; ସେହି ୟୁରୋପୀୟ ମାନେ ଆମର ତଥାକଥିତ ଦେବ-ଭାଷା ସଂସ୍କୃତ ଜାଣିବାରୁ ନା, ଏ ଭାଷା ବିଶ୍ୱ-ବିଖ୍ୟାତ ହେଲା ? ଅ-ଜ୍ଞତା ସବୁଠି ଓ ସବୁକାଳେ ଦୁଃଖ ଓ ବ୍ୟାଧିର ଜନକ । ଗୀତା ନିଜେ କହିଯାଇଛନ୍ତି—ନହି ଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ (୪।୩୮) (ଜଗତରେ ଜ୍ଞାନଠାରୁ ଅଧିକ ପାବନକାରୀ ବସ୍ତୁ ଆଦୌ ନାହିଁ) । ତେଣୁ ଯିଏ ଜାଣିଛନ୍ତି, ତାଂକରି ଭିତରେ ଜ୍ଞାନଟା ଆବଦ୍ଧ କରି କି ଲାଭ; କିଇବା ଗୌରବ ? ଯେଉଁମାନେ ନ ଜାଣିଛନ୍ତି, ଜ୍ଞାନର ପ୍ରଚାର ସେଇଠି ହେବା ଉଚିତ । ଗତ ଦୁଇଶ ବର୍ଷ ଭିତରେ ଜ୍ଞାନହିଁ ମନୁଷ୍ୟକୁ ମ୍ୟାଲେରିଆ-ବସନ୍ତ-ହଇଜା-କୁଷ୍ଠ ଇତ୍ୟାଦି ସହସ୍ର-ସହସ୍ର-ବର୍ଷଧରି-ଦୁରାରୋଗ୍ୟ ବିବେଚିତ-ହେଉଥିବା ବ୍ୟାଧି ସବୁରୁ ଉଦ୍ଧାର କରିଛି । ପାଠକେ ତେଣୁ ତାହା

ବିଷୟକୁ ନେଇ ଜ୍ଞାନଟା ଅବାଧରେ ପ୍ରସାରିତ ହେବା ଉଚିତ କି ନା ତାହା ଠିକ୍ କରନ୍ତୁ । ଅବଶ୍ୟ 'ଅଧିକାର' ବିଷୟ ନକଲି କେବଳ ଫିଜ୍ ନେଇ ସାର୍ଟିଫିକେଟର ତିଳକ ମାରିଦେବା ଜ୍ଞାନ-ଆହରଣ ନୁହେଁ, ଡଗ୍ରୀ-ଡିପ୍ଲୋମା କହିଲେ ଇଣ୍ଡିଆରେ ଏବେ ଯାହା ବୁଝାଉଛି । ତେଣୁ ପ୍ରକୃତ ଜ୍ଞାନର ବ୍ୟାପକ ପ୍ରସାର ଏକାନ୍ତ ବାଂଛନୀୟ ହେଲେହେଁ ତା' ସାଥେ ସାଥେ ସେହି ପ୍ରାଚୀନ ହିନ୍ଦୁ ଆଚିହ୍ନ, 'ଅଧିକାର-ଭେଦ' କୁ ମଧ୍ୟ ଆମେ ଭୁଲିଯିବା ଆଦୌ ଉଚିତ ହେବ ନାହିଁ । ଆମେ ସ୍ୱାଧୀନତୋତ୍ତର ଭାରତବର୍ଷରେ 'ଉଚ୍ଚଶିକ୍ଷା' ବା ଜ୍ଞାନର ପ୍ରସାର ନାମରେ ଆମର ଜ୍ଞାନଗୌରବାନ୍ୱିତ ମହାଜାତିର ବୌଦ୍ଧିକ ଆତ୍ମହତ୍ୟା ହିଁ କରି ଚାଲିଛୁ ।

( ୬୯ )

ନ ଚ ତସ୍ମାନ୍ମନୁଷ୍ୟେଷୁ କଶ୍ଚିନ୍ମେ ପ୍ରିୟକୃତ୍ତମଃ
ଭବିତା ନ ଚ ମେ ତସ୍ମାଦନ୍ୟଃ ପ୍ରିୟତରୋ ଭୁବି ।୬୯।

ମନୁଷ୍ୟେଷୁ ( ମନୁଷ୍ୟମାନଂକ ଭିତରେ ) ତସ୍ମାତ୍ ( ଏହି ଭକ୍ତିବାଦ-ବ୍ୟାଖ୍ୟାକାରୀଙ୍କଠାରୁ) ମେ (ମୋର) ପ୍ରିୟକୃତ୍ତମଃ (ଅଧିକ ପ୍ରିୟକାରୀ) ନ (ନାହାନ୍ତି) । ତସ୍ମାତ୍ ଅନ୍ୟଃ (ତାଂକଠାରୁ ଅନ୍ୟ କେହି ମେ ପ୍ରିୟତରଃ ଚ (ମୋର ପ୍ରିୟତର ଲୋକ ମଧ୍ୟ) ଭୁବ ନ ଭବିତା (ପୃଥିବୀରେ ଭବିଷ୍ୟତରେ ହେବେ ନାହିଁ) ।

**ଅନୁବାଦ—**

ହେ ଅର୍ଜୁନ, ଜାଣିରଖ ଯେ, ମନୁଷ୍ୟମାନଙ୍କ ଭିତରେ ସେହି ମୋର-ଭକ୍ତିବାଦ-ବ୍ୟାଖ୍ୟାପକଙ୍କଠାରୁ ପ୍ରିୟତର କେହି ନାହାନ୍ତି କି ନୋହିବେ ।

**ବିଶେଷ ଭାଷ୍ୟ—**

ଲେଖକ ମନେକରେ ଯେ, ଏହା ଏକ ପ୍ରକ୍ଷିପ୍ତ ଶ୍ଳୋକ, କାରଣ ଏହା ଗୀତାର ସଂପୂର୍ଣ୍ଣ ଅନୁପଯୁକ୍ତ ଏବଂ ସଂକୀର୍ଣ୍ଣ ଓ ଅଯୌକ୍ତିକ ଭାବ-ପ୍ରକାଶକ । ଗୀତା "ସମୋଽହଂ ସର୍ବଭୂତେଷୁ, ନ ମେ ଦ୍ୱେଷ୍ୟୋଽସ୍ତି ନ ପ୍ରିୟଃ (୯ ୨୯) କହି ସାରିଲାପରେ, ଏ ସଂକୀର୍ଣ୍ଣତା ଶୋଭନୀୟ କି ? କେବଳ ଗୀତା ପାଠକ ବା ଗୀତା ବ୍ୟାଖ୍ୟାପକ ଭଗବାନଙ୍କର ବା ଏପରିକି ଶ୍ରୀକୃଷ୍ଣଙ୍କର ପ୍ରିୟ ହେବ, କୋରାନ୍-ପାଠକ-ବ୍ୟାଖ୍ୟାପକ ବା ବାଇବଲ୍-ପାଠକ-ବ୍ୟାଖ୍ୟାପକ ହେବେନି, କେଉଁ ଯୁକ୍ତି ବଳରେ ? ମାତ୍ର କେତୋଟି ଶ୍ଳୋକ ପୂର୍ବେ ଶ୍ରୀକୃଷ୍ଣ ପରା କହିଲେ, "ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି" ?—ମୁସଲମାନ,

ବା ଖ୍ରୀଷ୍ଟାନ ବା ଆଦିବାସୀର ହୃଦୟ କ ଈଶ୍ୱରହୀନ ? ଈଶ୍ୱର କି କେବଳ ହିନ୍ଦୁ, ପୁଣି ହିନ୍ଦୁ-ବ୍ରାହ୍ମଣର ହୃଦୟରେ କୁଣ୍ଡଆ ପକେଇ ଥାଆନ୍ତି, ଏବଂ ଦେଖୁଥାନ୍ତି ସେହି ଈଶ୍ୱରର ସେହି ଅତ ପ୍ରିୟଜନେ କପରି ସହସ୍ର ସହସ୍ର ବର୍ଷ ଧରି ଅଗଣିତ ନରନାରୀଙ୍କୁ ପଶୁଠାରୁ ହୀନ ଓ ଅସ୍ପୃଶ୍ୟ କରି ରଖିଥିଲେ ଏବଂ ଅଗଣିତ ବିଧବା ଜୀଅନ୍ତା ପୋଡ ମରିବାର ବା ନିଷ୍ଠୁର ବୈଧବ୍ୟରେ ଜୀଅନ୍ତା ଜଳିବାର ନିର୍ଶ୍ଚିନ୍ତରେ ଦେଖୁଥିଲେ—'ଈଶ୍ୱରଦିଷ୍ଟ' ଶାସ୍ତ୍ର ନାଁରେ ?

ମନେରଖନ୍ତୁ ପାଠକେ ଯେ ହିନ୍ଦୁଧର୍ମର ଏହି ତଥାକଥିତ ନାୟକମାନଙ୍କର ଏହି ପ୍ରକାର ସଂକୀର୍ଣ୍ଣ, ଅମାନବିକ, ଅଯୌକ୍ତିକ ଓ ସ୍ୱାର୍ଥ-କେନ୍ଦ୍ରକ ମତାନ୍ଧତା ଯୋଗୁଁ ହିଁ ଏ ଧର୍ମ କ୍ରମକ୍ଷୟିଷ୍ଣୁ ହୋଇ ଚାଲିଛି ଏବଂ ପବିତ୍ର ଆର୍ଯ୍ୟାବର୍ତ୍ତର ଅର୍ଦ୍ଧେକ ଆଜି କେବଳ ଏଇମାନଙ୍କର ମତାନ୍ଧତା ଯୋଗୁଁ ହିଁ ଅନ୍ୟଧର୍ମ କବଳିତ । ଏପରିକି ବେଦର ପ୍ରକୃତ ଜନ୍ମମାଟି ଆଜି ତଥାକଥିତ ମ୍ଳେଚ୍ଛାଧିକୃତ ।

( ୭୦ )

ଅଧ୍ୟେଷ୍ୟତେ ଚ ଯ ଇମଂ ଧର୍ମ୍ୟଂ ସଂବାଦ ମାବୟୋଃ
ଜ୍ଞାନଯଜ୍ଞେନ ତେନାହ ମିଷ୍ଟଃ ସ୍ୟାମିତି ମେ ମତଃ । ୭୦ ।

ଯଃ ଚ (ପୁଣି ଯେଉଁ ଲୋକ) ଆବୟୋଃ (ଆମ ଦିହିଁଙ୍କର) ଇମଂ ଧର୍ମ୍ୟଂ ସଂବାଦଂ (ଏହି ଧର୍ମ ବିଷୟକ କଥୋପକଥନ, ଅର୍ଥାତ୍ ଏହି ଶ୍ରୀମଦ୍ ଭଗବଦ୍ ଗୀତା ନାମକ ଗ୍ରନ୍ଥକୁ ଅଧ୍ୟେଷ୍ୟତେ (ଅଧ୍ୟୟନ କରିବେ) ତେନ (ତାଙ୍କ ଦ୍ୱାରା, ଅହଂ (ମୁଁ) ଜ୍ଞାନ ଯଜ୍ଞେନ [ସେହି] (ଜ୍ଞାନ ଯଜ୍ଞ ଦ୍ୱାରା) ଇଷ୍ଟଃ (ପୂଜିତ) ସ୍ୟାମ୍ (ହେବି) । ଇତି ମେ ମତିଃ (ଏହାହିଁ ମୋର ମତ) ।

ଅନୁବାଦ—

ପୁଣି, ହେ ଅର୍ଜୁନ, ଯେଉଁ ଲୋକ ଆମ ଦୁହିଁଙ୍କର ଏହି ଧର୍ମ ବିଷୟକ କଥୋପକଥନ ଅର୍ଥାତ ଭଗବଦ୍ ଗୀତାକୁ ଅଧ୍ୟୟନ କରିବେ, ସେହି ଜ୍ଞାନ ଯଜ୍ଞ ଦ୍ୱାରାହିଁ ମୁଁ ଆରାଧିତ ହୋଇଗଲି ବୋଲି ଜାଣିବ ।

ବିଶେଷ ଭାଷ୍ୟ—

ଏହା କେବଳ ପୁରାପୁରି ପରିପ୍ରକ୍ଷିପ୍ତ । ଏ ପ୍ରକାର ବାକ୍ୟ ଆମେ ଭାରତୀୟ ଧର୍ମ-ସାହିତ୍ୟରେ ଅଜସ୍ର ଭାବରେ ପାଇଥାଉଁ । ଓଡ଼ିଆ ଭାଷାରେ ମଧ୍ୟଯୁଗରେ ଶତ ଶତ 'ଗୀତା' ଓ 'ମାହାତ୍ମ୍ୟ ଲେଖା ହୋଇଥିଲା ଏବଂ ପାଠକେ ସେହି ପ୍ରତ୍ୟେକଟି ଗ୍ରନ୍ଥରେ ଏହି ପ୍ରକାର ବାଣୀ ଭେଟିବେ ।

ସାଧାରଣତଃ ଏହା ଏହିପରି । ଲେଖକ କହିବେ—"ମୁଁ ଜଣେ ମୂର୍ଖ, ଅପାଠୁଆ ଲୋକ । ଧର୍ମ ଫର୍ମ କିଛି ଜାଣେନା । ତେବେ ମତେ ଜଗନ୍ନାଥ କି ସାରଳା ଠାକୁରାଣୀ ରାତିରେ ସପନେଇ କହିଲେ, ମୁଁ ଯାହା କହୁଛି ଲେଖିପକା, ଏବଂ କହ ଯେ, ଯାକୁ ଯେ ପଢ଼ିବ ବା ଶୁଣିବ, ସେ ମଲାପରେ ସିଧା ସିଧା ମୋ ପାଖକୁ ଆସିଯିବ, ଯମଦୂତେ ତାକୁ ଛୁଇଁପାରିବେନି ।"

କିନ୍ତୁ ଗୀତାକାର ଏହି ଲୌକିକ ମିଥ୍ୟାଶ୍ରୟକୁ ଗୀତାପରି ଏତେ ମହତ୍ ଗ୍ରନ୍ଥରେ ମଧ୍ୟ ପ୍ରଶ୍ରୟ ଦେଇ, ନିଜର ସମଗ୍ର ଉଦାର ଯୋଜନାକୁ ଏ ଶ୍ଳୋକରେ ଧୂଳିସାତ କରିଛନ୍ତି ବୋଲି ଲେଖକର ଆଶଂକା । ଏହା ମଧ୍ୟ ଏକ ଅସମ୍ଭବ କଥା, କାରଣ ଗୀତାକାର ତାଙ୍କର ଯଥାର୍ଥରେ ମହତ୍ ଗ୍ରନ୍ଥଟିକୁ ସ୍ୱୟଂ ଶ୍ରୀକୃଷ୍ଣଙ୍କ ମୁଖ-ନିଃସୃତ ବାଣୀ ବୋଲି ଚତୁର ଭାବରେ ଯୋଜନାୟିତ କରିଥିଲେହେଁ, ଯେହେତୁ ଗ୍ରନ୍ଥଟି କୁରୁକ୍ଷେତ୍ର ରଣ ପ୍ରାଙ୍ଗଣରେ ଦୁଇଟି ଯୁଦ୍ଧୋଦ୍ୟତ ବାହିନୀ ଭିତରେ ଦୁଇଜଣ ଲୋକଙ୍କର କଥୋପକଥନ ମାତ୍ର ଥିଲାବେଳେ ଯାକୁ ଅନ୍ୟେ "ପଢ଼ିବେ" କିପରି ? ଏହି କଥୋପକଥନର ମାତ୍ର କିଛିକାଳ ପରେ, ଅର୍ଥାତ୍ କୁରୁକ୍ଷେତ୍ର ଯୁଦ୍ଧର ଅବସାନ ପରେ, ଶ୍ରୋତା ଅର୍ଜୁନ ଏବଂ ବକ୍ତା ଶ୍ରୀକୃଷ୍ଣ ଉଭୟେ ଏହାକୁ ସଂପୂର୍ଣ୍ଣ ଭୁଲିଯାଇଥିବାରୁ, ମହାଭାରତର ଶେଷ ଆଡ଼କି, ଏକ 'ଅନୁଗୀତା'କୁ ମଧ୍ୟ ଠିଆ କରାଯାଇଛି । ଏପରି ସ୍ଥଳେ ଏହି ଅ-ଲିଖିତ କଥୋପକଥନକୁ ପରେ ଲୋକେ 'ଅଧ୍ୟେଷ୍ୟତେ' ଅର୍ଥାତ୍ ଅଧ୍ୟୟନ କରିବେ ବୋଲି ବକ୍ତା ଶ୍ରୀକୃଷ୍ଣ ଏଠାରେ କହୁଛନ୍ତି କିପରି ?

ମୂଳକଥା ଏହି ଯେ, କୁରୁକ୍ଷେତ୍ର ରଣ ପ୍ରାଙ୍ଗଣରେ ଯୁଦ୍ଧୋଦ୍ୟତ ଦୁଇଟି ଅଠର ସେନାଙ୍କୁ ପ୍ରାୟ ଛଅ ଘଣ୍ଟା କାଳ ନିରବରେ ଠିଆ କରାଇ, ଏହିଯେ ଶ୍ରୀକୃଷ୍ଣ ଅର୍ଜୁନ-ସଂବାଦ, ରୂପକ ଶ୍ରୀମଦ୍ ଭଗବତ ଗୀତା । ଏହା ଏକାନ୍ତରେ ଏକ ଗ୍ରାନ୍ଥିକ ଶୈଳୀ ମାତ୍ର ପରେ ଭାରତୀୟ ଧର୍ମ-ସାହିତ୍ୟର ଅନ୍ୟତମ ମହତ୍ ଗ୍ରନ୍ଥ ଯୋଗବାଶିଷ୍ଠ ରାମାୟଣ ମଧ୍ୟ ଠିକ୍ ଏହିପରି ସଂସାର-ବିରକ୍ତ ଶ୍ରୀରାମ ଓ ବଶିଷ୍ଠଂକ କଥୋପକଥନ ଉପରେ ଠିଆ ହୋଇଛି ଯଦିଓ ତରୁଣ ଶ୍ରୀରାମ-ଙ୍କର ଅର୍ଜୁନଙ୍କ ପରି ବିଷାଦ-ଯୋଗ ଅନୁଭବ କରିବାର କୌଣସି ଯୁକ୍ତିଯୁକ୍ତ କାରଣ ନଥିଲା । ଏ ଏକ ଭାରତୀୟ ରଚନା କୌଶଳ ମାତ୍ର । ଏ ଗ୍ରନ୍ଥରେ ଶ୍ରୀକୃଷ୍ଣ ଓ ଅର୍ଜୁନ ଯାହା କହୁଛନ୍ତି ସେସବୁ ପୂର୍ବପୂର୍ବ ବହୁ ପରର ଅଜ୍ଞାତ-ନାମ ଧାମ ଗୀତାକାରଂକର କଥା । ଶ୍ରୀକୃଷ୍ଣ ଓ ଅର୍ଜୁନ ଏକ ରଣ କ୍ଷେତ୍ରରେ ଠିଆ ହୋଇ, ଏମିତ ନିର୍ଭୁଲ-ଛନ୍ଦୋବଦ୍ଧ ମନୋଜ୍ଞ ସଂସ୍କୃତ ପଦ୍ୟରେ ଅଧ୍ୟାୟ ପରେ

ଅଧ୍ୟାୟ ସ୍ୱାଭାବିକ ଭାବରେ କଥୋପକଥନ କରିବା ଅକଳ୍ପନୀୟ ଭାବରେ ଅସମ୍ଭବ ବ୍ୟାପାର । ପୁଣି ପ୍ରତି ଅଧ୍ୟାୟ ଶେଷରେ ସେହି ଯେ ଲମ୍ବା ଫର୍ମୁଲା ଇତଶ୍ରୀ ମହାଭାରତେ ଶତ ସହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମ ପର୍ବଣି ଶ୍ରୀମଦ୍ ଭଗବଦ୍ ଗୀତା ସୁପନିଷତ ସୁ ବ୍ରହ୍ମ ବଦ୍ୟାୟାଂ ଯୋଗ ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସଂବାଦେ ଅମୁକ ଯୋଗୋ ନାମଃ ଅମୁକ ଅଧ୍ୟାୟଃ''–ଏହାମଧ୍ୟ କ'ଣ ଶ୍ରୀକୃଷ୍ଣ-ଅର୍ଜୁନଂକର କଥୋପକଥନର ଅଂଶ ଥିଲା ?

ପ୍ରିୟ ପାଠକେ, ଯାହା ଅଯୌକ୍ତିକ; ଅସମ୍ଭବ , ଅବାସ୍ତବ ଓ ଯାହା ତତ୍ତ୍ୱ-ସତ୍ୟ-ପ୍ରତିଷ୍ଠ ନୁହେଁ, ସେ ସବୁରେ ଅନ୍ଧବିଶ୍ୱାସ ରଖି, ନିଜର ମାନବକ ବୁଦ୍ଧିର ଅବମାନନା କର ନାହିଁ । ଗୀତାକୁ ଜଣେ ମନୁଷ୍ୟର ରଚନା ବୋଲି ମାନିନେବାଦ୍ୱାରା ଗୀତାର ସାମାନ୍ୟତମ ମାନହାନି ହେବ ନାହିଁ । ବରଂ ମାନ ହାନି ହେଉଛି, ଗୀତାର ଏଇ କେତୋଟି ସଂପୂର୍ଣ୍ଣ ଅସମ୍ଭବ-ଆଯୌକ୍ତିକ ସଂକୀର୍ଣ୍ଣ-ଭାବ-ପ୍ରକାଶକ ଶ୍ଳୋକକୁ ବନା ବିଚାରରେ ମାନିନେବାଦ୍ୱାରା ।

( ୭୧ )

ଶ୍ରଦ୍ଧାବାନ ନ ସୂୟଶ୍ଚ ଶୃଣୁୟାଦପି ଯୋ ନରଃ
ସୋଽପି ମୁକ୍ତଃ ଶୁଭଁ ଲ୍ଲୋକାନ୍ ପ୍ରାପ୍ନୁୟାତ୍ ପୁଣ୍ୟ କର୍ମଣାଂ।୭୧।

ଶ୍ରଦ୍ଧାବାନ୍(ଶ୍ରଦ୍ଧାଯୁକ୍ତ) ଅନସୂୟଃ ଚ (ଅସୂୟା ଶୂନ୍ୟ ଅର୍ଥାତ୍ ଅ-ନିନ୍ଦୁକ) ଯଃ ନରଃ ଶୃଣୁୟାତ୍ ଅପି (ଯେ ଲୋକ କେବଳ ୟାକୁ ଶୁଣେ ମଧ୍ୟ, ସଃ ଅପି ମୁକ୍ତଃ (ସେ ମଧ୍ୟ ମୁକ୍ତ ହୋଇଯାଇ) ପୁଣ୍ୟକର୍ମଣାଂ (ପୁଣ୍ୟକୃତ୍ ମାନେ ମୃତ୍ୟୁ ପରେ ଯେଉଁଠିକି ଯିବାର କଥା) [ସେହିସବୁ] ଶୁଭଁ ଲ୍ଲୋକାନ୍ ପ୍ରାପ୍ନୁୟାତ ( ଶୁଭ ଲୋକମାନଂକୁ ପ୍ରାପ୍ତ ହୁଅନ୍ତ ) ।

ଅନୁବାଦ—

ହେ ଅର୍ଜୁନ, ପୁଣି ଯେଉଁ ଶ୍ରଦ୍ଧାବାନ୍ ଅନିନ୍ଦୁକ ଲୋକ, ଏହା ଅନ୍ୟଠାରୁ ଶୁଣିବ, ସେ ମଧ୍ୟ ସେହି ପୁଣ୍ୟ କର୍ମ ଫଳରେ ମୃତ୍ୟୁପରେ ଶୁଭଲୋକ ମାନଂକରେ ଯାଇ ଅଧିଷ୍ଠିତ ହେବ ।

ବିଶେଷ ଭାଷ୍ୟ—

ଗୀତାକୁ ଖାଲି ପଢ଼ିଲେ ବା ଶୁଣିଲେ ତାହା ପୁଣ୍ୟ କର୍ମ ହୋଇଯିବ ଏବଂ ତାହା ଫଳରେ ମୃତ୍ୟୁପରେ ସ୍ୱର୍ଗବାସ ହେବ ଏପରି କହିବା କେବଳ ନିର୍ଲଜ୍ଜ, ନିଃସଂକୋଚ ଆତ୍ମ-ପ୍ରସ୍ତାବ । ଗୀତା ମନୁଷ୍ୟପ୍ରତି କ'ଣ କହୁପାରେ, ତାହା ପ୍ରକୃତରେ ପରବର୍ତ୍ତୀ ଶ୍ଳୋକରେହିଁ ସୁପ୍ରତିଷ୍ଠିତ ।

( ୭୨ )

କଚ୍ଚିଦେତଚ୍ଛ୍ରୁତଂ ପାର୍ଥ ତ୍ୱୟୈକାଗ୍ରେଣ ଚେତସା
କଚ୍ଚିଦଜ୍ଞାନସମ୍ମୋହଃ ପ୍ରଣଷ୍ଟସ୍ତେ ଧନଂଜୟ ।୭୨।

[ହେ] ପାର୍ଥ (ଅର୍ଜୁନ) ତ୍ୱୟା (ତୁମଦ୍ୱାରା) ଏକାଗ୍ରେଣ ଚେତସା (ଏକାଗ୍ରଚିତ୍ତରେ) ଏତତ୍ ଶ୍ରୁତଂ କଚ୍ଚିତ୍ (ଏହା ଅର୍ଥାତ୍ ଏହି ସମଗ୍ର ମୋର ଉପଦେଶାବଳି, ଶୁଣା ହୋଇଛ ତ ?) [ହେ] ଧନଂଜୟ (ଅର୍ଜୁନ) ତେ (ତୁମର) [ଏହି ଏକାଗ୍ରଚିତ୍ତ ହୋଇ ମୋର ସମଗ୍ର ସଂଦେଶ ଶୁଣିଲା ପରେ] ଅଜ୍ଞାନସମ୍ମୋହଃ (ଅଜ୍ଞତା-ଜନତ ଭ୍ରାନ୍ତ ସକଳ) ପ୍ରଣଷ୍ଟଃ କଚ୍ଚିତ୍ ? (ପୂର୍ଣ୍ଣ ବିନଷ୍ଟ ହୋଇଛି ତ ?) ।

**ଅନୁବାଦ—**

ହେ ଅର୍ଜୁନ, ତୁମେ ମନଦେଇ ମୋ କଥା ମୂଳରୁ ଏଯାଏଁ ଶୁଣିବା ଫଳରେ ତୁମର ଅଜ୍ଞାନତା-ଜନତ ଭ୍ରାନ୍ତ ଧାରଣା ସବୁ ଦୂରୀଭୂତ ହୋଇ ଯାଇଛ ତ ?

**ବିଶେଷ ଭାଷ୍ୟ—**

ପାଠକେ ମନେରଖିବେ ଯେ ଗୀତା ପଠନ ଦ୍ୱାରା ଅର୍ଥାତ୍ ଗୀତାର ମର୍ମବୋଧ ଦ୍ୱାରା, ଆମର ଯେଉଁ ଆତ୍ମ-ଜ୍ଞାନ, ଆତ୍ମ-ଦର୍ଶନ ବା ପ୍ରକୃତ ବୋଧି ଲାଭ ହେବ ତାହାହିଁ ହେଲା ଗୀତା-ପାଠର ପରମ ଓ ମୁଖ୍ୟ ଫଳ । ତାହା ପାପ ନୁହେଁ କି ପୁଣ୍ୟ ନୁହେଁ । ତାହା ଜ୍ଞାନାଲୋକ, ଯାହାଦ୍ୱାରା ଆମର ଅଜ୍ଞତାନ୍ଧକାର ଦୂରୀଭୂତ ହୋଇ ଆମର ଅନ୍ତରକୁ ଆଲୋକିତ କରିବ । ଏହାହିଁ ସ୍ୱର୍ଗବାସ, ଏହାହିଁ ମୁକ୍ତି । ଯାହତା ଆଉ ସବୁ ପ୍ରଲୋଭନ ମୂଳକ ପ୍ରଚାର ମାତ୍ର, ଯାହା କେବଳ ବୌଦ୍ଧଧର୍ମ ଛଡ଼ା ଆଉ ସବୁ ଧର୍ମରେ ଭର୍ତ୍ତି ।

ଅର୍ଜୁନ ଉବାଚ

( ୭୩ )

ନଷ୍ଟୋ ମୋହଃ ସ୍ମୃତିର୍ଲବ୍ଧା ତ୍ୱତ୍ପ୍ରସାଦାନ୍ମୟାଚ୍ୟୁତ
ସ୍ଥିତୋଽସ୍ମି ଗତସନ୍ଦେହଃ କରିଷ୍ୟେ ବଚନଂ ତବ ।୭୩।

ଅର୍ଜୁନଃ ଉବାଚ (ଅର୍ଜୁନ କହିଲେ) [ହେ] ଅଚ୍ୟୁତ (ଶ୍ରୀକୃଷ୍ଣ) ତ୍ୱତ୍ ପ୍ରସାଦାତ୍ (ତୁମ ଅନୁଗ୍ରହରୁ) ମୋହଃ ନଷ୍ଟଃ (ମୋର ଅଜ୍ଞତା ଦୂର ହୋଇଛି) ମୟା ସ୍ମୃତଃ ଲବ୍ଧା (ମୋର କର୍ତ୍ତବ୍ୟ ଜ୍ଞାନର ସ୍ମୃତି ମୁଁ ଫେରି ପାଇଛି)ଗତ ସନ୍ଦେହଃ ସ୍ଥିତଃ ଅସ୍ମି (ମୋର କର୍ତ୍ତବ୍ୟାକର୍ତ୍ତବ୍ୟ ସଂପର୍କରେ ସଂପୂର୍ଣ୍ଣ

ସନ୍ଦେହମୁକ୍ତ ହୋଇ, ସେହି ନିଃସନ୍ଦେହତାରେ ମୁଁ ବର୍ତ୍ତମାନ ସ୍ଥିର) । ତବ ବଚନଂ କରିଷ୍ୟେ (ଏଣିକି ତୁମ କଥାନୁସାରେହିଁ କର୍ମ ସଂପାଦନ କରିବି) ।

**ଅନୁବାଦ—**

ଅର୍ଜୁନ କହିଲେ, ହେ ଶ୍ରୀକୃଷ୍ଣ ତୁମ ଅନୁଗ୍ରହରୁ ସତ୍ୟରେ ମୋର ବୌଦ୍ଧିକ ମୋହ ଦୂରୀଭୂତ ହୋଇଯାଇଛି । ମୋର କର୍ତ୍ତବ୍ୟ ଜ୍ଞାନର ସ୍ପଷ୍ଟ ସ୍ମୃତି ଯେପରକି ମୁଁ ଫେର ପାଇଛି । ମୋର ସନ୍ଦେହସବୁ ମଧ୍ୟ ଦୂରୀଭୂତ । ମୁଁ ବର୍ତ୍ତମାନ ତୁମରି ଉପଦେଶ ଅନୁଯାୟୀ କାମ କରିବି ।

**ସଂଜୟ ଉବାଚ**

( ୭୪ )

ଇତ୍ୟହଂ ବାସୁଦେବସ୍ୟ ପାର୍ଥସ୍ୟ ଚ ମହାତ୍ମନଃ
ସଂବାଦମିମ ମଶ୍ରୌଷମଦ୍‌ଭୁତଂ ଲୋମହର୍ଷଣଂ ।୭୪।

ସଂଜୟଃ ଉବାଚ (ସଂଜୟ କହିଲେ) । ଅହଂ ଇତି (ମୁଁ ଏହିପରି) ବାସୁଦେବସ୍ୟ ପାର୍ଥସ୍ୟ ଚ ମହାତ୍ମନଃ (ଶ୍ରୀକୃଷ୍ଣ ଓ ମହାତ୍ମା ଅର୍ଜୁନଙ୍କର)ଇମଂ ଲୋମହର୍ଷଣଂ ଅଦ୍‌ଭୁତଂ ସଂବାଦଂ ଅଶ୍ରୌଷମ୍ (ଏହି ରୋମାଂଚକର ଅଦ୍‌ଭୁତ କଥୋପକଥନ ଶୁଣିଲି) ।

**ଅନୁବାଦ—**

ସଂଜୟ କହିଲେ, ହେ ରାଜା ଧୃତରାଷ୍ଟ୍ର, ମହାତ୍ମା ଅର୍ଜୁନ ଓ ଶ୍ରୀକୃଷ୍ଣଂକର ଏହି ଅଦ୍ଭୁତ ଓ ରୋମହର୍ଷଣକାରୀ କଥୋପକଥନ ମୁଁ ନିଜ କାନରେ ଶୁଣିଛି ।

**ବିଶେଷ ଭାଷ୍ୟ—**

ଏହି ଶ୍ଳୋକରେ କୌଣସି ବିଶେଷଣହୀନ ବାସୁଦେବ ସାଥିରେ, ଅର୍ଜୁନଂକୁ 'ମହାତ୍ମା' କାହିଁକି କୁହାଯାଇଛି, ବୁଝି ହେଉନି । ଟୀକାକାରମାନେ ନୀରବ । ବୋଧହୁଏ ଗ୍ରନ୍ଥକାର ଛନ୍ଦାନୁରୋଧରେ ଏପରି କରିବାକୁ ବାଧ୍ୟ ହୋଇପଡ଼ିଲେ ଲେଖି ଲେଖି ।

( ୭୫ )

ବ୍ୟାସ ପ୍ରସାଦାଚ୍ଛ୍ରୁତ ବାନିମଂ ଗୁହ୍ୟମହଂ ପରଂ
ଯୋଗଂ ଯୋଗେଶ୍ୱରାତ୍ କୃଷ୍ଣାତ୍ ସାକ୍ଷାତ୍ କଥୟତଃ ସ୍ୱୟଂ ।୭୫।

ବ୍ୟାସ ପ୍ରସାଦାତ୍ (ବ୍ୟାସଦେବଂକ ଦୟାରୁହିଁ) ଅହଂ (ମୁଁ) ଏତତ୍ ପରଂ ଗୁହ୍ୟଂ ଯୋଗଂ (ଏହି ପରମ ଗୋପନୀୟ ଯୋଗଶାସ୍ତ୍ର) ସାକ୍ଷାତ୍

କଥୟତଃ (ପ୍ରତ୍ୟକ୍ଷ କହୁଥିବା) ସ୍ୱୟଂ ଯୋଗେଶ୍ୱରତ୍ କୃଷ୍ଣତ୍ ଶ୍ରୁତବାନ୍ (ସ୍ୱୟଂ ଯୋଗେଶ୍ୱର କୃଷ୍ଣଙ୍କ ଠାରୁ ପ୍ରତ୍ୟକ୍ଷରେ ଶୁଣିଲି ।

ଅନୁବାଦ—

ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କ ମୁଖ-ନିଃସୃତ ଏହିସବୁ ଗୋପନୀୟ ଅଥଚ ପରମ ଯୋଗ-ବାଣୀ ସବୁ, ମୁଁ ଯେ ପ୍ରତ୍ୟକ୍ଷ ଶୁଣିପାରିଲି, ତାହା କେବଳ ବ୍ୟାସ ଦେବଙ୍କ ପ୍ରସାଦରୁ ।

( ୭୬ )

ରାଜନ୍ ସଂସ୍ମୃତ୍ୟ ସଂସ୍ମୃତ୍ୟ ସଂବାଦ ମିମମଦ୍ଭୁତଂ
କେଶବାର୍ଜ୍ଜୁନୟୋଃ ପୁଣ୍ୟଂ ହୃଷ୍ୟାମି ଚ ମୁହୁର୍ମୁହୁଃ । ୭୬ ।

ରାଜନ୍ (ହେ ମହାରାଜ) କେଶବାର୍ଜ୍ଜୁନୟୋଃ (ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନଙ୍କର) ଇମଂ ପୁଣ୍ୟଂ ଅଦ୍ଭୁତଂ ସଂବାଦଂ (ଏହି ପବିତ୍ର ଓ ଅଦ୍ଭୁତ କଥୋପକଥନ) ସଂସ୍ମୃତ୍ୟ ସଂସ୍ମୃତ୍ୟ ମୁହୁର୍ମୁହୁଃ ହୃଷ୍ୟାମି (ସ୍ମରଣ କରି କରି ମୁଁ କ୍ଷଣକୁକ୍ଷଣ ଆନନ୍ଦ ଉପଭୋଗ କରି ଚାଲିଛି) ।

ଅନୁବାଦ—

ହେ ରାଜନ୍ ଶ୍ରୀକୃଷ୍ଣାର୍ଜ୍ଜୁନଙ୍କର ସେହି ପୁଣ୍ୟଦାୟକ ଓ ଅଦ୍ଭୁତ କଥୋପକଥନ ସ୍ମରଣ କରି କରି ମୁଁ ଅଭୂତପୂର୍ବ ଆନନ୍ଦ ପ୍ରତିକ୍ଷଣରେ ଅନୁଭବ କରୁଛି ।

( ୭୭ )

ତଚ୍ଚ ସଂସ୍ମୃତ୍ୟ ସଂସ୍ମୃତ୍ୟ ରୂପମତ୍ୟଦ୍ଭୁତଂ ହରେଃ
ବିସ୍ମୟୋ ମେ ମହାନ୍ ରାଜନ୍ ହୃଷ୍ୟାମି ଚ ପୁନଃପୁନଃ । ୭୭ ।

ରାଜନ୍ (ହେ ରାଜା) ହରେଃ ତତ୍ ଅତ୍ୟଦଭୂତଂ ରୂପଂ (ହରିଙ୍କର ସେହି ଅତି ଅଦ୍ଭୁତ ରୂପ ବିଶ୍ୱରୂପକୁ) ସଂସ୍ମୃତ୍ୟ ସଂସ୍ମୃତ୍ୟ ଚ (ବାରମ୍ବାର ସ୍ମରଣ କରି ମଧ୍ୟ) ମେ ମହାନ୍ ବିସ୍ମୟଃ (ମୋର ଅତ୍ୟନ୍ତ ବିସ୍ମୟ ଜାତ ହେଉଅଛି) । [ସେହି କାରଣରୁ ମଧ୍ୟ] ପୁନଃ ପୁନଃ ହୃଷ୍ୟାମି (ମୁଁ ବାରମ୍ବାର ଆନନ୍ଦିତ ହେଉଛି) ।

ଅନୁବାଦ—

ପୁଣି, ହେ ରାଜନ୍, ଶ୍ରୀକୃଷ୍ଣଙ୍କର ସେହି ଅଦ୍ଭୁତ ବିଶ୍ୱ-ରୂପକୁ ସ୍ମରଣ କରି ମୁଁ ବାରମ୍ବାର ଆନନ୍ଦ ସହିତ ପରମ ବିସ୍ମୟ ମଧ୍ୟ ଅନୁଭବ କରୁଅଛି ।

## ବିଶେଷ ଭାଷ୍ୟ—

ଏକାଦଶ ଅଧ୍ୟାୟରେ ବିଶ୍ୱରୂପ ଦେଖାଇବା ପୂର୍ବରୁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସେଥିପାଇଁ 'ଦିବ୍ୟଚକ୍ଷୁ' ଦାନ କଲେ । ପୁଣି ଶେଷରେ କହିଲେ, "ତୁମକୁ ଯାହା ଆଜି ଦେଖାଇଲି, ତାହା ଦେବତାମାନେ ମଧ୍ୟ ଦେଖିବାକୁ ଇଚ୍ଛୁକ; କିନ୍ତୁ ଦେଖିପାରନ୍ତି ନାହାନ୍ତି ।" କିନ୍ତୁ ଏଣେ ଘରେ ବସି ସଞ୍ଜୟ ବିନା-ଟିକେଟରେ-ସିନେମା ଦେଖିଲା ପରି ସବୁ କିପରି ଦେଖିନେଲେ ? "ବେଦାଧ୍ୟୟନ,ତପସ୍ୟା, ଦାନ ବା ଯଜ୍ଞ," ଦ୍ୱାରା ଯାହା ଦେଖିବା ସମ୍ଭବ ନୁହେଁ, କେଉଁ ଅଧିକାରରେ ସଞ୍ଜୟ ତାହା ବିନା ସାଧନାରେ ଦେଖିନେଲେ ? ପାଠକେ, ଏ ସବୁହିଁ ତେଣୁ ଗଳ୍ପ-ରଚନା-ନିବନ୍ଧନ-ବ୍ୟବସ୍ଥା, ବୋଲି ଜାଣିବେ—ଆଉ କିଛି ନୁହେଁ । ଅଯୌକ୍ତିତାକୁ ଘୋଡେଇ ନେବାପାଇଁ ହିଁ ଏଠି "ବ୍ୟାସ ପ୍ରସାଦାତ୍" ବ୍ୟବହାର କରାଯାଇଛି । ବ୍ୟାସକୃପାରୁହିଁ ଯଦି ସଞ୍ଜୟ ଏହା ଦେଖିପାରିଲେ, ତେବେ ଏ ଦୃଶ୍ୟ ଦେବ-ଦୁର୍ଲ୍ଲଭ ବା ହେବ କିପରି ?

( ୭୮ )

ଯତ୍ର ଯୋଗେଶ୍ୱରଃ କୃଷ୍ଣୋ ଯତ୍ର ପାର୍ଥୋ ଧନୁର୍ଦ୍ଧରଃ
ତତ୍ର ଶ୍ରୀ ର୍ବିଜୟୋ ଭୂତି ର୍ଧ୍ରୁବାନୀତି ର୍ମତି ର୍ମମ । ୭୮ ।

[ହେ ରାଜା!] ଯତ୍ର (ଯେଉଁ ପକ୍ଷରେ) ଯୋଗେଶ୍ୱରଃ କୃଷ୍ଣଃ (ଯୋଗେଶ୍ୱର କୃଷ୍ଣ ରହିଛନ୍ତି) ଯତ୍ର ଧନୁର୍ଦ୍ଧରଃ ପାର୍ଥଃ (ଯେଉଁ ପକ୍ଷରେ ପୁଣି ଧନୁର୍ଦ୍ଧର ଅର୍ଜୁନ ତତ୍ର ଅଛନ୍ତି) ଶ୍ରୀଃ (ସେଠି ସିଦ୍ଧି) ବିଜୟଃ (ବିଜୟ) ଭୂତିଃ (ଅଭ୍ୟୁଦୟ) ଧ୍ରୁବାନୀତି (ନୀତର ସ୍ଥିରତା) [ନିଶ୍ଚିତ], ଇତି ମେ ମତିଃ (ଏହାହିଁ ମୋର ମତ) ।

## ଅନୁବାଦ—

ହେ ରଜା, ଜାଣିରଖ ଯେ ଯେଉଁ ପଟରେ ଯୋଗେଶ୍ୱର ଶ୍ରୀକୃଷ୍ଣ ଓ ପରମ ଧନୁର୍ବିଦ୍ ଅର୍ଜୁନ, ସେହି ପକ୍ଷକୁ ଯେ, ସିଦ୍ଧି, ବିଜୟ ଓ ଅଭ୍ୟୁଦୟ ଢଳିବ ଏହା ମତେ ଜଳଜଳ ଦେଖାଯାଉଛି ।

## ବିଶେଷଭାଷ୍ୟ—

ମହାଭାରତ ଯୁଦ୍ଧ ପରେ ପୃଥିବୀ ପୃଷ୍ଠରେ ସେହିପରି ଭୟାବହ ବହୁ ଯୁଦ୍ଧ ଘଟିଯାଇଛି । ଯୁଦ୍ଧ ମାତ୍ରେ ଶେଷହେବ ଜୟ ବା ପରାଜୟରେ । କିନ୍ତୁ ଯେତେ ସବୁ "ଐତିହାସିକ ଜୟ" ଘଟିଯାଇଛି ସେଠିକି ଯୋଗେଶ୍ୱର କୃଷ୍ଣ ଓ ଧନୁର୍ଦ୍ଧର ଅର୍ଜୁନ ଥିଲେ ? ଚେଙ୍ଗିଜ-ତୈମୁର-ମାହାମୁଦ-ମାହମ୍ମଦ ଘୋରୀ-ବାବର-ଆଉରଙ୍ଗଜେବ ପ୍ରଭୃତିଙ୍କର ବିପୁଳ, ଅବାଧ, ବର୍ବର ବିଜୟ ପଛପଟେ

ଯୋଗେଶ୍ୱର କୃଷ୍ଣ ଥିଲେ କି ? ତେବେ ସେ ସବୁ ଈଶ୍ୱରଖ୍ୟାତ ବିଜୟ କିପରି ଘଟିଲା ?

ଖାଲି ଏମିତ ମନକୁ ମନ ଶ୍ଳୋକ ରଚନା କରି ଦେଇଗଲେ ତ, ପୃଥିବୀ ଇତିହାସର ବାସ୍ତବ ଘଟଣାଗୁଡ଼ିକ ଲୋପ ପାଇଯିବନ ? ଗୀତା ରଚିତ ହେବାର ହୁଏତ ହଜାର ବର୍ଷପରେ, ଗୀତା ଯେଉଁଠି ଜନ୍ମ ନେଇଥିଲା, ସେହି କୁରୁକ୍ଷେତ୍ର (ପାନିପଥ) ଏବଂ ସ୍ୱୟଂ ଶ୍ରୀକୃଷ୍ଣ ଯେଉଁଠି ଜନ୍ମ ନେଇଥିଲେ, ସେହି ମଥୁରାନଗରୀ, ଏବଂ ଧନୁର୍ଦ୍ଧର ଅର୍ଜୁନଙ୍କ ବିଳାସ ସ୍ଥଳୀ ଇନ୍ଦ୍ରପ୍ରସ୍ଥ (ଦିଲ୍ଲୀ) —ସମସ୍ତହିଁ ମ୍ଳେଚ୍ଛ-ବିଧ୍ୱସ୍ତ ଓ ଅଧିକୃତ ହେଲା ବା କିପରି ? ଜାତିହୀନ, ଅପୌତ୍ତଳିକ ଓ ଏକେଶ୍ୱରବାଦୀ ଇସଲାମର ବିଶ୍ୱାଭିଯାନ,କୁରୁକ୍ଷେତ୍ରର କାଳ୍ପନିକ-କାଳ୍ପନିକ ବିଜୟ ଅପେକ୍ଷା ବିଶ୍ୱ-ଇତିହାସରେ ଅଧିକ ଜ୍ୱଳନ୍ତ ଓ ବାସ୍ତବ । ସେଠି କେଉଁ ଯୋଗେଶ୍ୱର ଶ୍ରୀକୃଷ୍ଣ ବା ଧନୁର୍ଦ୍ଧର ଅର୍ଜୁନ ଥିଲେ ଶ୍ରୀ, ବିଜୟ ଓ ଅଭ୍ୟୁଦୟ ଆଣିବାକୁ ?

ଗୀତା ପାଠ ଶେଷରେ ପ୍ରତ୍ୟେକ ହିନ୍ଦୁ ପାଠକ, ସେହି ପ୍ରଶ୍ନ ନିଜକୁ ପଚାରିବା ଉଚିତ । ତୃତୀୟ ପାନିପଥ ଯୁଦ୍ଧରେ ମରାଠା ସେନାପତି ସଦାଶିବ ରାଓ ନିଜର ସୁସଜ୍ଜିତ ସେନାକୁ ଛଅମାସ କାଳ ଖାଲି ବସେଇ ରଖିଲା ତାର ଜ୍ୟୋତିଷୀ ଠାରୁ ଶୁଭ ମୁହୂର୍ତ୍ତ ଶୁଣିବା ଆଶାରେ । ଯେତେବେଳେ ଗଣକ ଶୁଭ ମୁହୂର୍ତ୍ତ ଜଣେଇଲା, ସେତେବେଳକୁ ସେଦିନର ଦୁର୍ଦ୍ଧର ମରାଠା । ସୈନ୍ୟସବୁ ନିରୁତ୍ସାହିତ ଓ ଏପରିକି କ୍ଷୁଧାଗ୍ରସ୍ତ ହୋଇସାରିଲେଣି । ଫଳରେ ବିଦେଶାଗତ ମୁସଲମାନ ବାହିନୀ ଅତି ସହଜରେ ମରାଠା-ଶକ୍ତିକୁ ପଦଦଳିତ କରିପାରିଲେ । ଅନ୍ଧବିଶ୍ୱାସ ବା ଅବିଚାରିତ କୁସଂସ୍କାର ବା ଅଜ୍ଞନତା କୌଣସି ଜାତିକି ବିଜୟଶ୍ରୀ ଦେଇ ନପାରେ । ସେହି କାରଣରୁ ନା ପବିତ୍ର ଜମ୍ବୁଦ୍ୱୀପର ଏକତୃତୀୟାଂଶ ଆଜି ଆଉ ହିନ୍ଦୁ ହୋଇ ନାହିଁ । କି ଦୁଃଖର ବିଷୟଯେ, ଏସବୁ ସତ୍ତ୍ୱେ ଆମେ ଗୀତାର ବାରମ୍ବାର ଉପଦିଷ୍ଟ "ବୁଦ୍ଧିଯୋଗର"ର ପଥ ଧରିବାକୁ ନାରାଜ । କାରଣ ମତାନ୍ଧତା, ଅଜ୍ଞତା ଓ ଅନ୍ଧବିଶ୍ୱାସ ପରି ସହଜପଥ ସେ ନୁହେଁ ।

ଇତି ଶ୍ରୀମହାଭାରତେ ଶତ ସହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍ ଭଗବଦ୍ ଗୀତା ସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନ ସଂବାଦେ ମୋକ୍ଷଯୋଗୋ ନାମ ଅଷ୍ଟାଦଶୋଽଧ୍ୟାୟଃ

# ଗୀତା ପାଠର ଶେଷ କଥା

ହିନ୍ଦୁଧର୍ମର ଶ୍ରେଷ୍ଠ ଶାସ୍ତ୍ର ବୋଲି କୁହାଯାଉଥିବା ଶ୍ରୀମଦ୍ ଭଗବଦ୍ ଗୀତା ଏହିଠାରେ ଶେଷ ହେଲା । ଏହିଠାରେ ଆମେ ପାଠକ ପାଠିକାମାନଙ୍କ ଠାରୁ ଶେଷ ବିଦାୟ ନେବୁ । ଆମ୍ଭେମାନେ ଗୀତାର ବିଶେଷ ବିଶେଷ ଅଧ୍ୟାୟର ବିଶେଷ ବିଶେଷ ଟାଇଟଲର କପରି କୌଣସି ହେଲେ ସୁସ୍ପଷ୍ଟ ଓ ଅପକ୍ଷପାତ୍ୟାତ୍ମା ତାତ୍ପର୍ଯ୍ୟ ଆଦୌ ନାହିଁ, ତାହା ଆଗରୁ ଆଲୋଚନା କରିସାରିଛୁ । ଏହି ଅଷ୍ଟାଦଶ ଅଧ୍ୟାୟଟି ଗୀତାର ପୂର୍ବତନ ସତରଟିଯାକ ଅଧ୍ୟାୟର ଏକପ୍ରକାର sum-up (ସଂକ୍ଷିପ୍ତ ସାର) ପରି ହୋଇଛି । ଅଥଚ, ଯାକୁ ମଧ୍ୟ ଅନ୍ୟ ଅନ୍ୟ ଅଧ୍ୟାୟମାନଙ୍କର ଟାଇଟଲ ସବୁପରି ବିଶେଷ ଭବରେ 'ମୋକ୍ଷ ଯୋଗ' କହିବାର ଯଥାର୍ଥତା ଏକାନ୍ତ ଅସ୍ପଷ୍ଟ । ତେବେ 'ମୋକ୍ଷ' ଯଦି ପାଠକଙ୍କର ଜୀବନାଦର୍ଶ ହୋଇଥାଏ, ଆମେ ଆଶା କରୁଛୁ ଯେ ସମୂହ ଭବରେ ଏହି ଶେଷ ଅଧ୍ୟାୟ ସହିତ ଗୀତାର ପୂର୍ବର ସତରଟିଯାକ ଅଧ୍ୟାୟ ମଧ୍ୟ ପାଠକଙ୍କୁ ତାର ପନ୍ଥା ଦେଖାଇ ପାରିବଣି । ଯଦି ନ ଦେଖାଇ ପାରିଛି ତେବେ "ମୋକ୍ଷ-ଯୋଗ" ନାମ ବହିଥିଲେ ହେଁ, କେବଳ ଏହି ଅଷ୍ଟାଦଶ ଅଧ୍ୟାୟଟି ହୁଏତ ତାହା ଦେବାରେ ଯଥେଷ୍ଟ କୃତକାର୍ଯ୍ୟତା ଦେଖାଇବ ବୋଲି ଆଶା ହେଉନାହିଁ । ତେବେ ଆମର ବିଶ୍ୱାସ ଏହି ଯେ କେବଳ ଅଷ୍ଟାଦଶ ବା ଶେଷ ଅଧ୍ୟାୟ ନୁହେଁ ଗୀତାର ପ୍ରତ୍ୟେକଟି ଅଧ୍ୟାୟରେ ହିଁ ଆଧ୍ୟାତ୍ମିକ ଉନ୍ନୟନର ଯଥେଷ୍ଟ ବ୍ୟଞ୍ଜନା ସୁସ୍ପଷ୍ଟ । ଅବଶ୍ୟ 'ମୋକ୍ଷ' 'ମୁକ୍ତି' 'ନିର୍ବାଣ' 'ବ୍ରହ୍ମ-ନିର୍ବାଣ' 'ବ୍ରହ୍ମ-ସ୍ପର୍ଶ' 'ବ୍ରହ୍ମୀଭବନ' 'ପରମପଦ ପ୍ରାପ୍ତି' ଓ ମଦ୍ ଭବମାଗତ'ଇତ୍ୟାଦି ପଦସବୁ ଯାହା ଓ ଯେପରି ଭବରେ ଗୀତାରେ ଯତ୍ର ତତ୍ର ବ୍ୟବହୃତ ହୋଇଛନ୍ତି, ସେଗୁଡ଼ିକର ପ୍ରକୃତ ତାତ୍ପର୍ଯ୍ୟ ଗୀତାର ତମ-ଆମ ପରି ପାଠକଙ୍କର ମାନସିତାହିଁ ହେବ ମାନସିକ ସାଧୁତା । ଏସବୁର ତାତ୍ପର୍ଯ୍ୟ ସାଧାରଣ ନରନାରୀର ବୁଦ୍ଧି ଓ ଚେତନାର ବହୁ ଊର୍ଦ୍ଧ୍ୱ ବା ବହୁ ଦୂରରେ । ଯାହା ଆମର ପାର୍ଥିବ ଦୈନନ୍ଦିନ ଜୀବନର ଧୂଳିଧୂସର ଜୀବନ ପ୍ରତି ଆରୋପ୍ୟ ନୁହେଁ, ସେପରି ଜୀବନାଦର୍ଶର, ଅନ୍ତତଃ ଏହି ଲେଖକ ପ୍ରତି କୌଣସି ଆକର୍ଷଣ ନାହିଁ । ଇତିହାସର ପୃଷ୍ଠପୃଷ୍ଠାରୁ ଓ ନିଜ ଜୀବନର ସ୍ୱକୀୟ ଦୀର୍ଘ, ନିରବଚ୍ଛିନ୍ନ ଅଭିଜ୍ଞତାରୁ ଏବଂ ଜୀବନକାଳ ଭିତରେ ନିଜ ଦେଶ ଓ ପୃଥିବୀର ବିଭିନ୍ନ ଦେଶରେ ଜୀବ ଓ ମନୁଷ୍ୟର ଯେଉଁ ପରିବ୍ୟାପ୍ତ ଦୁଃଶାନ୍ତ, ଦୁରପନେୟ, ମର୍ମଭେଦୀ ଯନ୍ତ୍ରଣାମୟ ଚିତ୍କାର ତାର ଆତ୍ମାର ସୂକ୍ଷ୍ମ; ଅଦୃଶ୍ୟ ହାହୁତ୍ୟ ଶ୍ରବଣ ଦେଇ ସେ ଶୁଣିଆସୁଛି; ସେଥିରେ ଲେଖକ ଏକ ବ୍ୟକ୍ତିତ୍ୱସଂପନ୍ନ, ପ୍ରେମ କରୁଣାମୟ ଈଶ୍ୱରଙ୍କର ଅବସ୍ଥିତିରେ

ଏପର୍ଯ୍ୟନ୍ତ ପୂର୍ଣ୍ଣ ବିଶ୍ୱାସ ସ୍ଥାପନ କରିପାରି ନାହିଁ ଏବଂ ଏହି ଏକାନ୍ତ ଅଧମ ଓ ଗୁଣହୀନ ଲେଖକକୁ ଜୀବନ ବହୁ ବିଶେଷ ଭାବରେ ସୁଖମୟ ଓ ଋଦ୍ଧିମନ୍ତ କରିଥିଲେ ହେଁ ସେ ବିଶେଷ ଭାବରେ ଏକ ଆର୍ତ୍ତ ଓ ଅସୁଖୀ ପ୍ରାଣୀ ହୋଇ ରହି ଆସିଛି ଏହି କାରଣରୁ ଯେ ଚତୁର୍ଦ୍ଦିଗରେ ଦେଖୁଥିବା ଜନ-ଜୀବ ଦୁଃଖ-ରାଶିର ଏକ ସାମାନ୍ୟତମ ଅଂଶ ମଧ୍ୟ ସେ ଅପସାରିତ କରିପାରି ନାହିଁ । ଲେଖକ ଭାଗ୍ୟବାନ ଯେ ସେ ତାର ଜୀବନକାଳ ଭିତରେ ମାନବେତିହାସର ଏକ ବିରଳ ବିରାଟ ମହାପୁରୁଷ ଗାନ୍ଧିଙ୍କୁ ସେ ସ୍ୱଚକ୍ଷୁରେ ଦେଖିଛି ଓ ତାଙ୍କ ବଚନ ଶୁଣିଛି । ତା'ଛଡ଼ା ପଣ୍ଡିଚେରୀର ଶ୍ରୀ ମା'ଙ୍କ ସମେତ ଏକାଧିକ ଯୋଗୀ ଋଷିଂକର ସାକ୍ଷାତ ମଧ୍ୟ ସେ ପାଇଛି । କିନ୍ତୁ ଏହି ସକଳ ଉନ୍ନତ ମହାନ୍ ଆତ୍ମାମାନଙ୍କର ପୃଥିବୀ ପୃଷ୍ଠରେ ଏକକାଳୀନ ସମାବେଶ ସତ୍ତ୍ୱେ ଆଜି ଏହି ପୁରାଣ ଭୂମି ଭାରତବର୍ଷର ରାଜନୈତିକ, ସାମାଜିକ, ଜାତୀୟ, ଶୈକ୍ଷିକ ଓ ସାଂସ୍କୃତିକ ଅବସ୍ଥା କ'ଣ ହୋଇଛି ପାଠକେ ? ଦେଶ ବିଭାଗ ଫଳରେ ଏକେ ତ ଏହି ଉପମହାଦେଶ ଶସ୍ତ୍ର ଭାବରେ ଚିରକାଳ ଲାଗି ଭଗ୍ନ ଜାନୁ ଓ ଭଗ୍ନ କଟି ହୋଇ ରହିଲା, ଦ୍ୱିତୀୟରେ ବିତାଡ଼ିତ-ଭୂମି-ବାସ, ଲକ୍ଷଲକ୍ଷ ଅସହାୟ ନରନାରୀମାନଙ୍କର କରୁଣ, ଅଶ୍ରୁଜର୍ଜ୍ଜର-ଦୁର୍ଦ୍ଦଶା ପାଠକେ କଳ୍ପନା କରନ୍ତୁ । ଆମେ ପୁଣ୍ୟଭୂମି ଭାରତବର୍ଷରେ ଦେଖିଲୁ ପୁଣି, ଗାନ୍ଧିଜୀ-ଦେଇ-ଯାଇଥିବା ସ୍ୱାଧୀନ-ଶାସନର ବୀଭତ୍ସ ବିଶ୍ୱରୂପ । ରାତାରାତି ଯେତେ ସବୁ ଠକ, ପ୍ରତାରକ, ମିଥ୍ୟାଚାରୀ, ଜୁଆଚୋର, ମିଥ୍ୟାବାଦୀ ସଂକୀର୍ଣ୍ଣ ବୁଦ୍ଧି, ତଣ୍ଟିକଟା, ବାଟମାରଣା ଥିଲେ, ଗାନ୍ଧି ଛାଡ଼ିଯାଇଥିବା ସ୍ୱାଧୀନ ଭାରତୀୟ ସମାଜରେ ସେହିମାନଙ୍କର ହିଁ ଘଟିଛି ଅକଳ୍ପନୀୟ ଅଭ୍ୟୁଦୟ । ବୁଦ୍ଧ-ଗାନ୍ଧିର ଭାରତ-ବର୍ଷରେ ଆଜି ସତ୍ୟ ନ୍ୟାୟ ଓ ଧର୍ମହିଁ ଘରେ ଘରେ କବାଟ କିଳି ଲୁଚି ରହିବାକୁ ବାଧ୍ୟ ଏବଂ ଧର୍ମ ନ୍ୟାୟ ଲେଶହୀନ ପାଷାଣ୍ଡ ସବୁ ମହାନ୍ ସ୍ଫୂର୍ତ୍ତିରେ ଅନବରତ ମୋଟର ଓ ଏରୋପ୍ଲେନ ଚଢ଼ି ବୁଲୁଛନ୍ତି ।

ଏପରି ପରିପ୍ରେକ୍ଷିତରେ ଈଶ୍ୱର ଓ ଧର୍ମପ୍ରତି ଅବିଶ୍ୱାସ ଏକ ସ୍ୱାଭାବିକ ଘଟଣା ।

କିନ୍ତୁ ଠିକ୍ ଏଇ କଳି-କଳୁଷ ଓ ଧୂଳି-ଧୂସର ପରିସ୍ଥିତିକି ଚାହିଁ ଗୀତାଙ୍କର କିଛି ଯଥାର୍ଥ ଉପଦେଶ ବାଣୀ ଆମପାଇଁ ଅଛି କି ?

ଲେଖକର ମନେହୁଏ ଯେ, ମନୁଷ୍ୟ ଜୀବନର ଶାଶ୍ୱତ ସଂକଟ (କ୍ରାଇସିସ୍ Crisis) ପାଇଁ ସମଗ୍ର ଭାବରେ ଗୀତାହିଁ ସମଗ୍ର ବିଶ୍ୱ ସାହିତ୍ୟରେ ସବୁଠାରୁ ଉତ୍ତମ ତାତ୍ପର୍ଯ୍ୟମୟ ସଂଦେଶ । ଏହା ଯେକୌଣସି ଏକ ମନୁଷ୍ୟର

ଘଟଣାବହୁଳ ଜୀବନରେ ସବୁଠାରୁ ଘୋରତମ ବୌଦ୍ଧିକ ସଂକଟରୁ ଉଦ୍ଭୂତ, ଏହା ଅତ୍ୟନ୍ତ ବ୍ୟଂଜନାପୂର୍ଣ୍ଣ । ସେ ସଂକଟ ହେଲା କର୍ତ୍ତବ୍ୟର ସଂକଟ । ଜୀବନର ଏକ ଏକ ପରିସ୍ଥିତିରେ ମନୁଷ୍ୟ ଏଟା କରିବ, ନା ସେଟା କରିବ, ନା ଆଉ କ'ଣ କରିବ ଏହା ସ୍ଥିର ହେବାହିଁ ତ ପ୍ରକୃତ ସଂକଟ ? ଏବେ ୟୁରୋପୀୟ ବୁଦ୍ଧିଜୀବୀ ମହଲରେ ଏଗ୍‌ଜିଷ୍ଟେନ୍‌ସିଆଲିଜିମ୍ (Existenciayism) ବା ସ୍ଥିତିବାଦ ବୋଲି ଯେଉଁ ଜୀବନ-ଦର୍ଶନ ବିଶେଷ ଭାବରେ ଆଲୋଚିତ ହେଉଛି ତାହା ମଧ୍ୟ ଏକ ପ୍ରକାର ଗୀତାର ଏଇ "କର୍ତ୍ତବ୍ୟ-ବାଦ" ମାତ୍ର । ଅର୍ଥାତ୍ ମନୁଷ୍ୟ ଏକ ପରିସ୍ଥିତିରେ ଏକାଧିକ କରଣୀୟ ଭିତରୁ ଯେଉଁଟାକୁ ବାଛନେବ ତାହାହିଁ ତାର ବ୍ୟକ୍ତିତ୍ୱ ଓ ବିଚକ୍ଷଣତାର କଷଟି ପଥର । ସେଇଥିରେ ସେ ଉଠିବ ବା ପଡ଼ିବ; ସାମାନ୍ୟ ହୋଇ ରହିବ ବା ମହତ ହେବ । ଗୀତାର ବାଣୀ ସେହିପରି ମୁଖ୍ୟତଃ କର୍ମ ବା କର୍ତ୍ତବ୍ୟ-ବାଦ । ଆମେ ଦେଖିଲୁ ଯେ ଗୀତା ଯାହାକୁ 'ଯୋଗ' ବୋଲି ବିସ୍ତରନ୍ତି ସେଥିରେ ନାକ-ଆଖି ବୁଜିବାର ପରାମର୍ଶ ଆଦୌ ନାହିଁ । ସେଠି 'ଯୋଗ' କେବଳ 'କର୍ମସୁ କୌଶଳଂ' । ଗୀତାର ଏହି 'କର୍ମ-କୌଶଳ' ହେଲା ଅନାସକ୍ତି ଓ ଅକର୍ତ୍ତୃତ୍ୱ ଭାବକୁ ଚିତ୍ତରେ ଦୃଢୀଭୂତ ରଖି 'ଲୋକ ସଂଗ୍ରହ' ବା ଏକ-କଥାରେ ସାମାଜିକ-ଉନ୍ନୟନ ବା ଜନସେବା ବା ଆହୁରି ବ୍ୟାପକ-ସର୍ବଭୂତ-ହିତ-ସାଧନରେ ନିଜକୁ ନିୟୋଜିତ କରିବା । ଅଥବା ଯଦି ଏକ ବ୍ୟକ୍ତିତ୍ୱ-ସଂପନ୍ନ ଓ ମନୁଷ୍ୟ-ଗୁଣଯୁକ୍ତ ଈଶ୍ୱରଙ୍କ ଅସ୍ତିତ୍ୱରେ ତୁମର ପୂର୍ଣ୍ଣ ବିଶ୍ୱାସ ଅଛିଥାଏ ତେବେ କେବଳ ସକଳ କର୍ମ ନୁହେଁ, ନିଜର ସମଗ୍ର ପ୍ରାଣ ଓ ଆତ୍ମାକୁ ମଧ୍ୟ ତାଙ୍କଠାରେ ନିଃଶେଷ ଓ ପରିପୂର୍ଣ୍ଣ ଭାବରେ ସମର୍ପଣ କର । ଏବେ ଏହାହିଁ ଶ୍ରୀ ଅରବିନ୍ଦଙ୍କ ପୂର୍ଣ୍ଣଯୋଗ ବୋଲି କୁହାଯାଉଛି । ସମସ୍ତ ଚେତନାକୁ ଈଶ୍ୱରଙ୍କ ହାତରେ ଛାଡ଼ିଦେବା, ସତ୍ୟରେ ଏକ ପରମ ସାଧନା ।

କର୍ମଯୋଗ ଭାବରେ ଗୀତା ଲୋକ ସଂଗ୍ରହ ଓ ସର୍ବଭୂତ ହିତକୁ ଆମର ଜୀବନାଦର୍ଶର ଅଂଗୀଭୂତ କରିଥିଲେ ହେଁ ଗୀତାର ଆଦର୍ଶ ଏକାନ୍ତରେ ବ୍ୟକ୍ତିସ୍ଥ । ପାରସ୍ପରିକ ଓ ପରିବେଶିକ ହିତପାଇଁ ଗୌତମ ବୁଦ୍ଧ "ସଂଘଂ ଶରଣଂ ଗଚ୍ଛାମି" ର ଉପଦେଶ ଦେଇଥିଲେ ହେଁ ସେହି ମହାମାନବଙ୍କର ଶେଷବୁଦ୍ଧ୍ୟମାନ ଶିଷ୍ୟବର୍ଗ ପାଇଁ ଶେଷ ଉପଦେଶ ହେଉଛି "ନିଜେଇ ନିଜର ପ୍ରଦୀପ ହୁଅ" । କେବଳ ଆଧ୍ୟାତ୍ମିକ ଜୀବନ ନୁହେଁ, ଜୀବନର ଯାହାକିଛି ବୈଶିଷ୍ଟ୍ୟ, ତାହା ମଧ୍ୟ ଏକାନ୍ତରେ ବ୍ୟକ୍ତିଗତ ସାଧନା ଓ ଅଭିଜ୍ଞତା । ଜାତୀୟ,ସାମାଜିକ ବା ରାଷ୍ଟ୍ରୀୟ ସଂକଟ ମଧ୍ୟ ସବୁ ଶେଷକୁ ଏକ ବ୍ୟକ୍ତିଗତ ସଂକଟ ହିଁ ହୋଇଉଠେ । ଅର୍ଥାତ, ଆମେ ପ୍ରତ୍ୟେକେ ନିଜକୁ ପ୍ରଶ୍ନ କରିବା ଉଚିତ "ଏହି ସମ୍ମୁଖ ସଂକଟରେ ମୋର

କର୍ତ୍ତବ୍ୟ କ'ଣ ? ମୁଁ କେଉଁଠାରେ ଥିବ ଏବଂ ଯାହା କରିବି ତାହା କେଉଁ ଲକ୍ଷ୍ୟରେ କରିବି ?"

ଗୀତା "ସ୍ୱାର୍ଥକେନ୍ଦ୍ରିକ" କାମଗୁଡ଼ିକୁ ବରାବର ଅକଲ୍ୟାଣକର ଘୋଷଣା କରି ଆମ ପ୍ରତ୍ୟେକଙ୍କୁ ନିଃସ୍ୱାର୍ଥପର ଏବଂ ଅକର୍ତ୍ତୃତ୍ୱାଭିମାନ ହୋଇ କାମ କରିବାକୁ ଉପଦେଶ ଦେଇ ଆସିଛନ୍ତି । ଅର୍ଥାତ ଗୀତା ଚାହାନ୍ତି ଯେ ପରିବ୍ୟାପ୍ତ ସଂକଟ ବା ପ୍ରଲୋଭନ ଭିତରେ ମଧ୍ୟ ଆମେ ନିଜର ଆତ୍ମା ଓ ବ୍ୟକ୍ତିତ୍ୱକୁ ନିଃସ୍ୱାର୍ଥପରତା ଦେଇ ଉଜ୍ଜ୍ୱଳ ଓ ପରିଶୁଦ୍ଧ ରଖୁଁ । ସମଗ୍ର ଜଗତ ଅନ୍ଧକାର ହୋଇଥିଲେ ମଧ୍ୟ ଆମେ ଆମ ସାମାନ୍ୟ କୁଡ଼ିଆଟିକୁ ଛୋଟ ଦୀପଟିଏ ଜାଳି ଆଲୋକିତ ନ ରଖିବା କାହିଁକି ? ସମଗ୍ର ସମାଜ ଅସାଧୁ ଓ ଅନାଚାରୀ ହୋଇ ପଡ଼ିଲେ ମଧ୍ୟ କୌଣସି ବ୍ୟକ୍ତି ଯଦି ଚାହେ ତେବେ ସେ ନିଶ୍ଚିତ ଭାବରେ ସାଧୁ ଓ ଶୁଦ୍ଧାଚାରୀ ରହିପାରେ । "ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ ।"

ଗୀତା କୌଣସିଠାରେ ମଧ୍ୟ କହିନାହାନ୍ତି ଯେ ମନୁଷ୍ୟ ସଂସାର ତ୍ୟାଗକରି, ଅକର୍ମା ହୋଇ ପରନ୍ନଜୀବୀ ହୋଇ ଧର୍ମ-ସାଧନ କରୁ । ଗୀତାଙ୍କ ମତରେ ସଂସାରରେ ଗୃହସ୍ଥ ରହି ଓ ଅନାସକ୍ତ ଭାବରେ କର୍ମ କରିବା ଦ୍ୱାରା ଆତ୍ମାକୁ ଶୁଦ୍ଧ-ଉନ୍ନତ ରଖି ଚାଲିବାହିଁ ପ୍ରକୃତ 'ଯୋଗ' ବା 'ସନ୍ନ୍ୟାସ' ବା ଯଜ୍ଞ ବା ତପସ୍ୟା । ଅର୍ଥାତ୍ ଆଧ୍ୟାତ୍ମିକ ସାଧନା ଏକାନ୍ତରେ ଏକ ଆଭ୍ୟନ୍ତରୀଣ ବ୍ୟାପାର । ହୋମ, ଦାନ, ତୀର୍ଥଯାତ୍ରା, ବ୍ରାହ୍ମଣ-ଭୋଜନାଦି କୌଣସି ପ୍ରକାର ବାହ୍ୟ ଅନୁଷ୍ଠାନ ଏଠାରେ ସମ୍ପୂର୍ଣ୍ଣ ଅର୍ଥହୀନ । ଗୀତା ଚାହଁନ୍ତିଯେ ଆମେ ପ୍ରତ୍ୟେକେ ଆମମାନଙ୍କ ଜୀବନର ସ୍ୱାଭବିକ ସଂକଟ ସବୁ ଭିତର ଦେଇ ହିଁ ଆମର ପ୍ରତ୍ୟେକଟି ଦୈନନ୍ଦିନ କର୍ମକୁ ଯଜ୍ଞାୟିତ ବା ତପସ୍ୟାୟିତ କରିଚାଲୁ । ସେହି ଯଜ୍ଞର ଫଳହିଁ ହେବ ପରମ ଚିତ୍ତଶାନ୍ତି, ଏବଂ ଆଣିଦେବ ସମ-ଦର୍ଶନର ଅନୁଭବ ଅର୍ଥାତ ବିଶ୍ୱ ସହିତ ବ୍ୟକ୍ତିର ଏକୀ ଭବନ ।

ପାଠକେ ପୁଣି ମନେରଖିବେ ଯେ ଏବେ ୟୁରୋପ ଓ ଆମେରିକାରେ ବଭବ-ବିଳାସର ଅକଳ୍ପନୀୟ ଉନ୍ନତି ଓ ପ୍ରାଚୁର୍ଯ୍ୟ ମଧ୍ୟ ସେଠାର ଲକ୍ଷ ଲକ୍ଷ ଆତ୍ମାକୁ ଶାନ୍ତ ଦେଇ ପାରୁ ନାହିଁ । ସେ ରାଜ୍ୟ ସବୁର କ୍ଷୁବ୍ଧ-ଅଶାନ୍ତ-ଆତ୍ମା ଦଳଦଳ 'ହିପି' ହୋଇ ପ୍ରାଚ୍ୟ ଦେଶରେ ବୁଲୁଛନ୍ତି ଆଜି ଆତ୍ମାର ଶାନ୍ତ ଖୋଜି । ସେ ଶାନ୍ତ ପାଇବାର ଏକମାତ୍ର ପନ୍ଥା ହେଉଛି; ଗୀତା ଯେପରି କହିଛନ୍ତି ସେହିପରି ଭାବରେ ଆମର ବ୍ୟକ୍ତିଗତ ଦୈନନ୍ଦିନ ଜୀବନକୁ "ଯଜ୍ଞାୟିତ"

କରିବା, ଅନ୍ୟେ ଯାହା କରନ୍ତୁ ବା ନ କରନ୍ତୁ । ଆତ୍ମାର ଶାନ୍ତି ଓ ସୁଖ ମିଳିଯିବନି, ନିଜକୁ କେବଳ ହିନ୍ଦୁ, ମୁସଲମାନ ବା ଖ୍ରୀଷ୍ଟିୟାନ ବା କମ୍ୟୁନିଷ୍ଟ ବା କଂଗ୍ରେସୀ ବୋଲି ପ୍ରଚ୍ଛର କଲେ । ଆତ୍ମାର ସୁଖ, ଶାନ୍ତି ଓ ଉନ୍ନୟନ ଏକାନ୍ତରେ ଉନ୍ନତ ଉଦାର ବ୍ୟକ୍ତିଗତ ଅଭିଜ୍ଞତା । ତାହା ଧନ, କ୍ଷମତା କେବଳ ନୁହେଁ, ନିଜର ପିତା, ମାତା, ସ୍ତ୍ରୀ ଓ ପୁତ୍ର କନ୍ୟା ମଧ୍ୟ ଦେଇପାରିବେ ନାହିଁ ।

ଆମ୍ଭେମାନେ ଏକାନ୍ତ କ୍ଷଣିକ ଓ ନଶ୍ୱର ଏକ ସଂସାରରେ ବାସ କଲେ ହେଁ, ମନେ ରଖିବାକୁ ହେବ ଯେ, ଏହା ମଧ୍ୟ ଅତ୍ୟନ୍ତ ରହସ୍ୟମୟ । ଆମେ କେଉଁଠୁ ଆସୁଛୁ, କାହିଁକି ଆସିଛୁ ଏବଂ କେଉଁଠାକୁ ଯିବୁ ତାହା ଆମକୁ

ଜଣା ନାହିଁ । ଅଥଚ ଏହି ଦୁଇଦିନର ନଶ୍ୱର ଆବାସ ଓ ପରିବେଶ ପାଇଁ ଆମ-ମାନଙ୍କର କି ଆସକ୍ତି ଯାକୁ କାମୁଡ଼ ଧରି କ ରକ୍ତାକ୍ତ ବୀଭତ୍ସ ହିଂସା, ଦ୍ୱେଷ ଓ ସଂଗ୍ରାମ ? ଆମ ଜୀବନର ଅଧିକାଂଶ ଦୁଃଖ ଯେ ଏହି ଆସକ୍ତିରୁ ଆସୁଛି; ଏହା ସାମାନ୍ୟ ଚିନ୍ତା କଲେଇ ବୁଝାପଡ଼ିବ । ଗୀତାରେ ଏହି ଆସକ୍ତିର ଅନ୍ୟ ନାମହିଁ "ପ୍ରକୃତି ଓ ମାୟା" । କିନ୍ତୁ "କ୍ଷଣିକ" ଆସୁଛି କେବଳ ଶାଶ୍ୱତର ନିତ୍ୟ ପ୍ରବହମାନତାରୁ । ଆମେ କେବଳ "କ୍ଷଣ" ପଛରେ ଧାଇଁ ଶାଶ୍ୱତକୁ ପାସୋରି ଯାଉ । ଗୀତାଙ୍କର ବାସ୍ତବ ଓ ଯୁକ୍ତିଯୁକ୍ତ ଉପଦେଶ ଏହି ଯେ; ତୁମକୁ "କ୍ଷଣ"କୁ ନେଇ ଅବଶ୍ୟ ବଞ୍ଚିବାକୁ ହେବ; କିନ୍ତୁ ତା ସାଥେ ସାଥେ ସ୍ମରଣ ରଖ ଯେ, ତାହା କେବଳ ଶାଶ୍ୱତର ଆଭାସ ମାତ୍ର । 'ମାମନୁସ୍ମର ଯୁଧ୍ୟ ଚ' । ସେହି ସ୍ମରଣ ହିଁ ତୁମର ଦୈନନ୍ଦିନ କର୍ମଜାଳକୁ ଯଜ୍ଞ ବା ଯୋଗରେ ପରିଣତ କରିବ ଏବଂ ତୁମେ ଆସ୍ତେ ଆସ୍ତେ ଶାଶ୍ୱତ ବା ବ୍ରହ୍ମ ବା ପୁରୁଷୋତ୍ତମ (ସବୁ ମୋଟାମୋଟି ଏକା କଥା) ର ପରିବ୍ୟାପ୍ତ ଅନୁଭବ ଲାଭ କରି, ଜନ୍ମ-ଜୀବନ-ଦୁଃଖ-ମୃତ୍ୟୁ-ରୂପକ ଯେଉଁ କ୍ଷଣିକର ଅଭିନୟ ତୁମେ ବାଧ୍ୟ ହୋଇ ଜନ୍ମଜନ୍ମାନ୍ତର ଦେଇ କରିଆସିଛ, ସେଥିରୁ ତୁମେ ମୁକ୍ତ ହେବ ।

ବେଶ୍ ଏଇ ହେଲା ମୋଟ ଉପରେ ଗୀତାର ସାଧାରଣ ନର ଓ ନାରୀ ପ୍ରତି ମେସେଜ (Message) । ଏହା ଏକାନ୍ତରେ ସୁଖ ଓ ଆନନ୍ଦର ଓ ଦୁଃଖ ମୁକ୍ତିର ବାର୍ତ୍ତା । ପୁଣି ଏଥିରେ କୌଣସି ବାଧ୍ୟବାଧକତା ନାହିଁ । ପାଠକ ଏହା ଗ୍ରହଣ କରି ପାରନ୍ତି, ନକରି ପାରନ୍ତି । କିନ୍ତୁ କଲେ କ'ଣ ଲାଭ ହେବ, ତାର ଉଜ୍ଜ୍ୱଳ ଦୃଷ୍ଟାନ୍ତହିଁ ଗାନ୍ଧିଜୀ । ଯେ ସକଳ ବ୍ୟର୍ଥତା ଭିତରେ ମଧ୍ୟ ମହାତ୍ମା ଭାବରେ କୋଟି କୋଟି ଜନର ଶ୍ରଦ୍ଧାଭାଜନ ଥିଲେ ଏବଂ ଯେଉଁ କୌପୀନବନ୍ତ ବୈରାଗୀର ଆହ୍ୱାନ ଏକ ବିରାଟ ଉପମହାଦେଶକୁ ସହସ୍ର ବର୍ଷର ଜଡ଼ତା ପରେ କରାଇ ଉଠିଲା, ଅଭୟ ସଂଗ୍ରାମୀ ଓ କର୍ମଠ ।

# ଗୀତାରେ ବୌଦ୍ଧ ପ୍ରଭାବ

ଗୀତାର ବହୁ ସ୍ଥାନରେ 'ବିଶେଷ ଭଷା' ଭିତରେ ଗୀତା ବହୁଳ ଭବରେ ବୌଦ୍ଧଭବ ପ୍ରଭବିତ ହୋଇଥିବାର ଆମେ କହିଛୁ । ଆମେ କହିଛୁ ଯେ, ଗୀତା ଅନେକ ସ୍ଥାନରେ, ବ୍ରାହ୍ମଣ୍ୟଧର୍ମ ଶେଷରେ ବ୍ରାହ୍ମଣ୍ୟତାର ପରମ ବିରୋଧୀ ଗୌତମ ବୁଦ୍ଧଙ୍କୁହିଁ ଏକ ବ୍ରାହ୍ମଣ୍ୟ ଦେବତା ବିଷ୍ଣୁଙ୍କର ଏକ ଅବତାର ବୋଲି ଗ୍ରହଣ କରିନେଲା ପର, ବୌଦ୍ଧମତର ଅନେକ ଯୁକ୍ତିଯୁକ୍ତ ଉତ୍ତମ ପ୍ରସ୍ତାବ ସବୁକୁ ମଧ୍ୟ ଗ୍ରହଣ କରିନେଇଛନ୍ତି ଏବଂ ଗୀତାକୁ ସମଗ୍ର ଭବରେ ଦେଖିଲେ, ଏହା ବୌଦ୍ଧ ନିରୀଶ୍ୱରତା-ଓ-ଅନାତ୍ମ-ବାଦର ଏକ ପ୍ରଚଣ୍ଡ ବୈଦିକ-ବ୍ରାହ୍ମଣ୍ୟ ପ୍ରତିବାଦ ଛଡ଼ା ଆଉ କିଛି ନୁହେଁ । ଆମେ ଏହା ମଧ୍ୟ କହିଛୁ ଯେ, ଏହି ମହାନ୍ ଗ୍ରନ୍ଥ ଯାହା ଆଦ୍ୟରେ କେବଳ ମାତ୍ର ଏକ 'ବ୍ରହ୍ମୋପନିଷଦ' ଥିଲା କିନ୍ତୁ ପରେ ତା ଭିତରେ ଏକ ବ୍ୟକ୍ତିତ୍ୱସଂପନ୍ନ ଈଶ୍ୱର ଏବଂ ସେ ପୁଣି ଏ ଗ୍ରନ୍ଥକୁ ଯିଏ କହୁଛନ୍ତି ସେପରି ଜଣେ ରକ୍ତମାଂସଧାରୀ ରଥ ଚାଳକ ମାନ୍ତ୍ରଙ୍କୁ ଗୁଁଜି, ସେହି ଉଦାର ବ୍ରହ୍ମୋପନିଷଦର ମହିମା, ଯୁକ୍ତିଯୁକ୍ତତା ଓ ସାର୍ବଜନୀନତାକୁ ଅନେକ ପରିମାଣରେ ଖର୍ବ କରାଯାଇଛି ।

ମହାଜ୍ଞାନୀ ବୌଦ୍ଧମାନଙ୍କର ପରିବ୍ୟାପ୍ତ ବ୍ୟକ୍ତିଗତ-ବୁଦ୍ଧ-ଉପାସନା ବିପରୀତରେ କିଛି କାର୍ଯ୍ୟକାରୀ ପ୍ରତିରୋଧ ଠିଆ କରେଇବାକୁ ବୈଦିକ-ବ୍ରାହ୍ମଣ୍ୟ ସଂସ୍ଥା ଯେଉଁ ଅକ୍ଲାନ୍ତ ଚେଷ୍ଟା କରିଥିଲା, ତାହାରି ମନୋଜ୍ଞ ଫଳହିଁ, ଶିବ-କେନ୍ଦ୍ରିକ ଶ୍ୱେତାଶ୍ୱେତର ଉପନିଷଦ ଓ କୃଷ୍ଣ-କୃଷ୍ଣ-କେନ୍ଦ୍ରିକ ଭଗବଦ୍ ଗୀତା । କିନ୍ତୁ ମନନ ଦ୍ୱାରା ଉଭୟ ମନୋଜ୍ଞ ଗ୍ରନ୍ଥ ସେମାନଙ୍କର ଯଥାର୍ଥ ସାର୍ବଜନୀନତା ଅନେକ ପରିମାଣରେ ହରାଇଛନ୍ତି ।

ଅନେକ ଯୁକ୍ତି-ପାଇଁ-ପ୍ରସ୍ତୁତ-ନଥିବା ନୈଷ୍ଠିକ ହିନ୍ଦୁ ପାଠକ ଏଥିରେ ଆମ ପ୍ରତି ବିରକ୍ତ ହୋଇ ପାରନ୍ତି । ସେମାନଙ୍କୁ ଆଉ ଅଧିକା କିଛି ନକହି ଖୋଦ୍ ଭାରତ ସରକାରଙ୍କ ତରଫରୁ ସମଗ୍ର ଧରଣୀରେ ପରିବେଷଣ ପାଇଁ ପ୍ରକାଶିତ ଏକ ପ୍ରସିଦ୍ଧ ଗ୍ରନ୍ଥରୁ (The way of the Buddha) ଏ ସଂପର୍କରେ କିଛି ମତ ଏଠାରେ ଉଦ୍ଧାର କରିଦେଉଛୁ, ସେମାନଙ୍କର ସୁବିଧାର ପାଇଁ ।

"କେବଳ କେତୋଟି ଅଂଚଳ ଛାଡ଼ିଦେଲେ ଦ୍ୱାଦଶ ଓ ତ୍ରୟୋଦଶ ଶତାବ୍ଦୀ ବେଳକୁ ବୌଦ୍ଧଧର୍ମ ଭାରତବର୍ଷରୁ ଚାଲିଗଲାଣି କହିଲେ ଚଳେ । କିନ୍ତୁ ଯାର ଅର୍ଥ ନୁହେଁ ଯେ ତାର ଜନ୍ମ-ମାଟିରୁ ଏ ଧର୍ମର ଆତ୍ମା ମଧ୍ୟ ଉଭେଇ ଗଲା, ଯେପରି ସାଧାରଣତଃ ଲୋକ ଭବିଥାନ୍ତି । ଅଥଚ ଆଜି ହିନ୍ଦୁଧର୍ମ କହିଲେ ଯାହା

ବୁଝାଯାଏ, ତାହା ସେପରି କେବଳ ତା’ ଉପରେ ବୌଦ୍ଧଧର୍ମର ଗଭୀର ପ୍ରଭାବ ମିଶିଯାଇ ଥିବାରୁ । ଐତିହାସିକ ସର ଚାର୍ଲସ ଇଲିୟଟ ଯଥାର୍ଥରେ କହିଛନ୍ତି ଯେ "ଏବେ ହିନ୍ଦୁ ଧର୍ମର ଅଧିକାଂଶ ଗୋଷ୍ଠୀ ଯେ ଦେବାରାଧନା ଉଦ୍ଦେଶ୍ୟରେ ପଶୁ-ବଳି ପ୍ରତ୍ୟାଖ୍ୟାନ କରିଛନ୍ତି, ତାହା ଏକାନ୍ତରେ ବୌଦ୍ଧ ପ୍ରଭାବ । ସେହି ବୌଦ୍ଧ ପ୍ରଭାବରୁହିଁ ମଧ୍ୟ ହିନ୍ଦୁଧର୍ମରେ ଦେଖାଦେଇଛି, ଜୀବେ ଦୟା ଓ ମଠ ଓ ଆଶ୍ରମାଦିର ଉଦ୍ଭବ ଏବଂ ଧର୍ମୀୟ ଶୃଙ୍ଖଳା ।"

ଉପନିଷଦମାନଙ୍କରେ ଓ ଭଗବଦ୍ ଗୀତାରେ ବୈଦିକ ଯାଗଯଜ୍ଞ ବିରୁଦ୍ଧରେ ଯେଉଁ ପ୍ରତିବାଦ ଆମେ ଦେଖିବାକୁ ପାଉଁ, ତାହା ବୁଦ୍ଧ ଗୌତମହିଁ ସ୍ପଷ୍ଟ ଓ ଦୃଢ଼ ଭାବରେ ଆରମ୍ଭ କରିଯାଇଥିଲେ । ବୁଦ୍ଧ ଗୌତମଙ୍କର ଆଧ୍ୟାତ୍ମିକ ସାଧନା ଭାବରେ ସତ୍ୟ ଓ କରୁଣାର ଉପଯୋଗୀତା କ୍ରମେ ଭାରତୀୟ ଜନଚେତନାରେ ଏପରି ଗଭୀର ପ୍ରଭାବ ବିସ୍ତାର କଲା ଯେ ଷଷ୍ଠ-ସପ୍ତମ ଶତାବ୍ଦୀ ବେଳକୁ ସେ ଆଉ ବ୍ରାହ୍ମଣ୍ୟ ଧର୍ମର ଶତ୍ରୁ ବୋଲି ଗଣା ନହୋଇ ବିଷ୍ଣୁନାରାୟଣଙ୍କର ଏକ ଅବତାର ବୋଲି ଯେ ଗୃହୀତ ହୋଇ ସାରିଥିଲେ ତାର ପ୍ରଚୁର ପ୍ରାମାଣ ରହିଛି ଭାରତୀୟ ସାହିତ୍ୟ ଓ ସ୍ଥାପତ୍ୟରେ ।

ବହୁ ହିନ୍ଦୁ ଗୋଷ୍ଠୀଙ୍କ ମତବାଦକୁ ବୌଦ୍ଧ ଦର୍ଶନ ମଧ୍ୟ ଯେ ଗଭୀର ଭାବରେ ପ୍ରଭାବିତ କରିଛି ଏଥିରେ ଅତିରଞ୍ଜନ ନାହିଁ । ଗୌଡ଼ପାଦ, ବୌଦ୍ଧ ଶୂନ୍ୟବାଦ ଓ ବିଜ୍ଞାନବାଦ, ଉଭୟକୁ ଗ୍ରହଣ କରିନେଇ ନିଜର ମତ ଠିଆ କରିଛନ୍ତି । ଶଂକର ତାଙ୍କର ଅଦ୍ୱୈତ ମତକୁ ଉପନିଷଦମାନଙ୍କ ଉପରେ ଠିଆ କରାଇଥିଲେହେଁ ତାଙ୍କର ଦାର୍ଶନିକ ବ୍ୟାଖ୍ୟାର କେତେକ ମୁଖ୍ୟ ବିନ୍ଦୁରେ ସେ ବୌଦ୍ଧ ମହାଯାନୀ ଚିନ୍ତାଧାରାକୁ ସ୍ପଷ୍ଟ ସ୍ମରଣ କରାଇଥାନ୍ତି ଏବଂ ସେହି କାରଣରୁହିଁ ତାଙ୍କୁ ବର୍ଣ୍ଣନା କରାଯାଇଥାଏ 'ପ୍ରଚ୍ଛନ୍ନ ବୌଦ୍ଧ' ବୋଲି । ସର୍ ଚାର୍ଲସ୍ ଇଲିୟଟ ପୁଣି କହିଛନ୍ତି "ମହାଯାନୀଦର୍ଶନ ଓ ଶଙ୍କରଙ୍କ ଅଦ୍ୱୈତ, ଉଭୟେ ଅନପେକ୍ଷ ସତ୍ୟ ଓ ଆପେକ୍ଷିକ ସତ୍ୟ ଏପରି ଦୁଇଟି ଭାବ-କଳ୍ପକୁ ମାନୁଛନ୍ତି । ଉଭୟ ଦର୍ଶନରେ ଅନପେକ୍ଷ ବା ଅନାସକ୍ତ ସତ୍ୟ, ଅବର୍ଣ୍ଣନୀୟ ଏବଂ ବ୍ରହ୍ମ ବା ଧର୍ମକାୟ ବା ଶୂନ୍ୟତା ଇତ୍ୟାଦି ଶବ୍ଦ ଦେଇ ଆମେ ତାକୁ ବର୍ଣ୍ଣିବାକୁ ଗଲେ ମଧ୍ୟ ତାହା ଖ୍ରୀଷ୍ଟିୟାନ ବା ମୁସଲମାନର ମନୁଷ୍ୟ ଗୁଣଧାରୀ ଈଶ୍ୱର ସହିତ ସମାନ ନୁହେଁ । ଅଦ୍ୱୈତ ବେଦାନ୍ତୀ ଯେପରି ଘୋଷଣା କରିପାରେ ଯେ, ଜ୍ଞାନର ଉଚ୍ଚତମ ସ୍ତରରେ ବ୍ୟକ୍ତିତ୍ୱସଂପନ୍ନ ଏକ ଈଶ୍ୱର ବା ଏକ ଆତ୍ମା କାହାର ହେଲେ ଅସ୍ତିତ୍ୱ ନାହିଁ । ବୌଦ୍ଧ ମାଧ୍ୟମିକ ସୂତ୍ର ମଧ୍ୟ ସେହିପରି ଘୋଷଣା କରିପାରେ ଯେ, ବୁଦ୍ଧ ମଧ୍ୟ ସତ୍ୟରେ ଅସ୍ତିତ୍ୱହୀନ । ମହାଯାନୀମାନେ 'ମାୟା' ଶବ୍ଦ

ବ୍ୟବହାର ନ କଲେ ହେଁ ସେମାନଙ୍କ ମତରେ ପରିଦୃଶ୍ୟମାନ ସଂସାର ସତ୍ୟରେ ଅବାସ୍ତବ ଏବଂ ତାହାର ବାସ୍ତବତା ଓ ତା'ପ୍ରତି ଆକର୍ଷଣ ଆସେ କେବଳ ମନୁଷ୍ୟର ଅନ୍ତର୍ନିହିତ ଅବିଦ୍ୟା ବା ଅଜ୍ଞାନରୁ ।''

ପରେ ହିନ୍ଦୁଧର୍ମରେ ଦେଖାଦେଇଥିବା ଭକ୍ତିବାଦ ଓ ଅବତାରବାଦ ମହାଯାନୀ ବୋଧିସତ୍ତ୍ୱ ଅବଲୋକିତେଶ୍ୱରଙ୍କର ଦୁଃଖାର୍ତ୍ତ ଜୀବମାନଙ୍କ ପ୍ରତି କରୁଣା ଓ ଉଦ୍ଧରଣ-ଚେଷ୍ଟାରୁ ହିଁ ଯେ ଆସିଛି ଏହା ଧରିନେବାରେ ଯଥେଷ୍ଟ ଯଥାର୍ଥତା ଅଛି । ଯେପରି ମନେହୁଏ ଗୌତମ ବୁଦ୍ଧ ତାଙ୍କର ମହାନ୍ ବାଣୀ ସବୁକୁ ଭାରତୀୟ ଇତିହାସରେ ଏକ ଆଧ୍ୟାତ୍ମିକ ଓ ସାଂସ୍କୃତିକ ଟ୍ରଷ୍ଟ ବା ନ୍ୟାସ ରୂପେ ଜମା କରି ଯାଇଥିଲେ । ସେହି ଟ୍ରଷ୍ଟରେ ଜମାଥିବା ଚିନ୍ତା-ସଂପଦକୁ ଲୁଟି ନେଇ ଧର୍ମର ଭିନ୍ନ ଭିନ୍ନ ଶାଖାସବୁ ନିଜ ନିଜକୁ ବୁଦ୍ଧିମନ୍ତ କରାଇ ନେଲାପରେ ଯେତେବେଳେ ଦେଖାଗଲା ଯେ ଟ୍ରଷ୍ଟଟି ଶୂନ୍ୟ ସେତେବେଳେ ବୌଦ୍ଧଧର୍ମ ବୋଲି ଏକ ସ୍ୱତନ୍ତ୍ର ସଂସ୍ଥା ରଖିବାର ହୁଏତ କୌଣସି ଆବଶ୍ୟକତା ଆଉ ରହିଲା ନାହିଁ । ସମଗ୍ର ଭାରତୀୟ ଚିନ୍ତା ଜଗତରେ ବୁଦ୍ଧ ଗୌତମଙ୍କର ଗଭୀର ପ୍ରଭାବ ବୁଦ୍ଧ-ପରବର୍ତ୍ତୀ ସକଳ ଭାରତୀୟ ସନ୍ଥ ମହାତ୍ମାମାନଙ୍କ ଜୀବନୀ ଓ ପ୍ରବଚନରେ ସୁପରିସ୍ଫୁଟ ।

ଖୋଦ୍ ଭାରତ ସରକାରଙ୍କର ପ୍ରକାଶନ-ବିଭାଗ-ପରିବେଷିତ ଏହି ଐତିହାସିକ ସତ୍ୟ ପଢ଼ିସାରିଲା ପରେ ଆଶାକରୁ ଯେ ନୈଷ୍ଠିକ ହିନ୍ଦୁ ପାଠକେ ଆମପ୍ରତି ଆଉ ବିଦ୍ୱେଷଯୁକ୍ତ ହେବେ ନାହିଁ ।

କିନ୍ତୁ ଆମର ଶେଷ ମନ୍ତବ୍ୟ ଏହିକି ଯେ, ଗୀତା ଗ୍ରନ୍ଥଟି କେବଳ ଦାର୍ଶନିକ ବା ଐତିହାସିକ ଆଲୋଚନାର ବସ୍ତୁ ନୁହେଁ । ଏହା ମୁଖ୍ୟତଃ ଆତ୍ମା ଓ ଚିତ୍ତର ଖାଦ୍ୟ ଓ ଭେଷଜ । ଗୀତାର ପ୍ରଥମ ସାର୍ଥକତା ଏହିଠାରେ । ଭାରତ ଓ ଭାରତ ବାହାରେ କୋଟି କୋଟି ନରନାରୀଙ୍କ ପ୍ରାଣରେ ଗୀତା ଶାନ୍ତି, ଆଶା ଓ ଉର୍ଦ୍ଧ୍ୱଗମନର ବାର୍ତ୍ତା ନେଇ ପହଁଞ୍ଚଇ ପାରିଛି । ଗୀତାର ଏହି ସଂସ୍କରଣ ନାନା ଐତିହାସିକ ଓ ବୌଦ୍ଧିକ ଆଲୋଚନା ଭିତର ଦେଇ ପାଠକମାନଙ୍କ ଚିତ୍ତରେ ଗୀତାର ଐତିହାସିକ ଓ ମାନବିକ ଆପେକ୍ଷିକତା ସ୍ପଷ୍ଟୀକୃତ କରିବା ସାଥେ ସାଥେ ପାଠକ ପାଠିକାଙ୍କର ଆଧ୍ୟାତ୍ମିକ ଅଭୀପ୍ସା ଓ ଅନ୍ୱେଷଣରେ ମଧ୍ୟ ଯଦି କିଛି ସହାୟକତା କରିପାରିଥାଏ, ତେବେହିଁ ଏହାର ପ୍ରକୃତ ସାର୍ଥକତା ।

ପାଠକ-ପାଠିକା ମନେ ରଖିବେ ଯେ ବୁଦ୍ଧ-ରାମକୃଷ୍ଣ-ଗାନ୍ଧି-ଓ-ଗୀତା ଭାରତବର୍ଷର ଶାଶ୍ୱତ ଆତ୍ମାର ଗୁଣ ଓ ସ୍ୱର ଦିଗରୁ ଏକ ଓ ଅଭିନ୍ନ ଅଭିଜ୍ଞତା

ପ୍ରସୂତ ପରମ ଓ ଚରମ ଜୀବନ-ଦର୍ଶନ ପ୍ରତ୍ୟେକ ଭାରତୀୟ ନର ଓ ନାରୀ, ତରୁଣ ଓ ତରୁଣୀ ବଂଚିବାର ପୂର୍ଣ୍ଣୀ ଭବନର ପରମ ଆଦର୍ଶ ଓ ପରମ ସନ୍ତୋଷ ଏଇମାନଙ୍କଠାରେ ହିଁ ପାଇବେ, ନିଶ୍ଚୟ ପାଇବେନି ମାର୍କସ-ଲେନିନ-ମାଓଙ୍କ ଏକାନ୍ତ ଭାବରେ ଜାନ୍ତବ, ଆସୁରିକ ଓ ଈଶ୍ୱରହୀନ ମାର୍ଗରେ ।

## ପ୍ରଜ୍ଞା ପାରମିତା

ପୃଥିବୀର ଶ୍ରେଷ୍ଠ ପ୍ରଜ୍ଞାପାରମିତା ପ୍ରାକ୍‌ଟିକାଲ ଫିଲ ସଫର ହେଉଛନ୍ତି ଗୌତମ ବୁଦ୍ଧ । ସେ ସତ୍ୟର ସଂଧାନ ପାଇଁ କେବଳ ଚରମ ଦୈହିକ ଓ ମାନସିକ କ୍ଳେଶ ବରଣ କରି ନଥିଲେ । ସାଧାରଣ ନର ନାରୀ ମଧ୍ୟ ସେ ସତ୍ୟ କିପରି ଲାଭ କରିପାରିବେ ତାହା ସେ ନିର୍ବୈ୍ୟକ୍ତିକ ଭାବରେ ବତାଇ ଯାଇଛନ୍ତି । ବୁଦ୍ଧ ପ୍ରବର୍ତ୍ତିତ ଧର୍ମ ହେଉଛି ଏକମାତ୍ର ଧର୍ମ ଯେଉଁଠି ପ୍ରବର୍ତ୍ତକ ମୁଖ୍ୟ ନୁହେଁ, ମୁଖ୍ୟ ତାର ଆବିଷ୍କାର । ବୁଦ୍ଧଂକୁ ଉପାସନା କରି କେହି ବୁଦ୍ଧ ହୋଇ ଯାଇ ନପାରେ । ବୁଦ୍ଧତ୍ୱ କେତେଗୁଡ଼ିଏ ଗୁଣର ସମାହାର ମାତ୍ର ଏବଂ ଯେପରି ଡାକ୍ତର ବା ଇଂଜିନିୟର ହେବାକୁ ନାନା ଗୁଣର ଆୟତ୍ତୀକରଣ ଏକାନ୍ତ ଅପରିହାର୍ଯ୍ୟ ସେହିପରି ମଧ୍ୟ ବୁଦ୍ଧତ୍ୱ ପାଇଁ । ଗୌତମ ବୁଦ୍ଧ ଦାନ, ଶୀଳ, ନୈଷ୍କର୍ମ୍ୟ (ସନ୍ନ୍ୟାସ), ପ୍ରଜ୍ଞା, ବୀର୍ଯ୍ୟ, କ୍ଷମା, ସତ୍ୟ, ଅଧିଷ୍ଠାନ, ମୈତ୍ରୀ, ଉପେକ୍ଷା ଏହିପରି ଦଶଟି ଗୁଣର ସାଧାରଣ ନାମ ଦେଇଥିଲେ, ପ୍ରଜ୍ଞା ପାରମିତା । ଅର୍ଥାତ୍ କେବଳ ଜାଣିଗଲେ ହେବନି, ବୁଦ୍ଧତ୍ୱାଭିଳାଷୀ ସାଧକକୁ ଏହି ପ୍ରତ୍ୟେକଟି ଗୁଣର ସବୁ ଦିଗରୁ ଶେଷ ବା ପାରକୁ ଯିବାକୁ ହେବ ।

ବୌଦ୍ଧ-ଶୈବ-ଶାକ୍ତ-ବୈଷ୍ଣବ ଇତ୍ୟାଦି ଭାରତର ସର୍ବବିଧ ଆଧ୍ୟାତ୍ମିକ ସାଧନାକୁ ଆମେ ମୋଟାମୋଟି ଭାବରେ ମଧ୍ୟ ବର୍ଣ୍ଣନା କରିପାରିବା, 'ପ୍ରଜ୍ଞା ପାରମିତା' । ଗୀତାର ଜୀବନ-ଦର୍ଶନ ମଧ୍ୟ ସେହିପରି 'ପ୍ରଜ୍ଞାପାରମିତା' । ଋଗବେଦ କାଳରୁ ଗାନ୍ଧିଯାଏଁ ଭାରତର ଅନ୍ତରାତ୍ମା ଆହ୍ୱାନ କରିଆସୁଛି, ଆମେ ସମସ୍ତେ ପ୍ରଜ୍ଞାପାରମିତା ହେଉ । ଅର୍ଥାତ ଅଜ୍ଞତାର ଜାଲ କାଟି ପ୍ରଜ୍ଞାର ଆଲୋକକୁ କେବଳ ଆବିଷ୍କାର କରୁ ନୁହେଁ; ତାର ଶେଷ ଓ ଶୀର୍ଷକୁ ଯାଉ, ଆମର ଦୈନନ୍ଦିନ ଜୀବନର ସହସ୍ର ଜଂଜାଳ ଓ ପ୍ରଲୋଭନ ଦେଇ । ତାହାହିଁ ଗୀତାର କର୍ମଯୋଗ; ଯଜ୍ଞଯୋଗ ଓ ବୁଦ୍ଧିଯୋଗ । ପ୍ରତ୍ୟେକଟି ଅଧ୍ୟାୟ ଦେଇ ଗୀତା ଆମକୁ ଭାରତାତ୍ମାର ସେହି ଶାଶ୍ୱତ ସଂଦେଶ 'ପ୍ରଜ୍ଞା ପାରମିତା'ର ବାର୍ତ୍ତାହିଁ ଶୁଣାଇ ଚାଲିଛି ।

ବର୍ତ୍ତମାନ ପାଠକ-ପାଠିକାଂକ ସମ୍ମୁଖରେ ପରମହଂସଦେବଂକର ପ୍ରଜ୍ଞାପାରମିତାର ପରମ ପରିପୋଷକ ଆଉ କଣ ଯଥାର୍ଥ ଓ ପରମ ମଂଗଳ

ଜୀବନ ସତ୍ୟ ପରିବେଷଣ କରି ଆମେ ସେମାନଂକଠାରୁ ଶେଷ ବିଦାୟ ନେବୁ ।



ପଥର ଯେତେକାଳ ପାଣିରେ ବୁଡ଼ ରହିଲେ ମଧ୍ୟ ତା' ଭିତରେ ବୁନ୍ଦାଏ ମଧ୍ୟ ପାଣି ପଶିପାରିବ ନାହିଁ । ପାର୍ଥିବ ବିଷୟରେ ସେହିପରି ବୁଡ଼ରହିଥିବା ଲୋକର ହୃଦୟ ଭିତରେ ଆଧ୍ୟାତ୍ମିକତା ଆଦୌ ପଶିପାରେ ନାହିଁ ।



ଦୁଧରେ ବତୁରି ଯାଇଥିବା ମୁଢ଼ିପରି ଯେଉଁଲୋକ କର୍ଜଳ ଓ ଦୁର୍ବଳ ସେ ଲୋକ କେଉଁ କାମର ନୁହେଁ । ସେପରି ଲୋକ ଜୀବନରେ କୌଣସି ସିଦ୍ଧି ଲାଭ କରି ପାରିବନ । ଯେ ମନରେ ସାହସୀ ଓ ଦେହରେ ଟାଣୁଆ ସେଇତ ବୀର । ସେ ଜୀବନରେ ଯାହା ଚାହେ ତାହା ପାଏ ।



ତୁମ ମନକୁ ଯାହା ଠିକ୍ ବୋଲି ଆସୁଛି ତାହାହିଁ କହ । ତୁମ ବାକ୍ୟ ଓ କର୍ମ ମଧ୍ୟରେ ଯେପରି ବିରୋଧ ଦେଖା ନଦିଏ । ଯାର ଚିନ୍ତା, ବାକ୍ୟ ଓ କର୍ମରେ ସବୁବେଳେ ଅମେଳ, ସେ ଲୋକ ଜୀବନରେ କିଛି ସିଦ୍ଧି ଲାଭ କରିବାର ଆଶା କରନିବନ ।



ଦୁର୍ବଳଲୋକ ଛୋଟିଆ ବୋଝଟିଏ ମୁଣ୍ଡରେ ଧରି ଅଳ୍ପଦୂର ମଧ୍ୟ ଯାଇ ପାରିବ ନାହିଁ । କିନ୍ତୁ ଜଣେ ଟାଣୁଆ ଲୋକ ଦୁଇମହଣିଆ ବୋଝ ମୁଣ୍ଡରେ ବୋହି ବହୁ ଦୂର ଚାଲି ଚାଲି ଆସିଥିଲେ ମଧ୍ୟ; ସେ ସେହି ବୋଝକୁ ମୁଣ୍ଡରେ ଧରି ନିଶ୍ଚିନ୍ତରେ ବାଟରେ ହେଉଥିବା କୁସ୍ତି-କସରତ୍ ଦେଖୁଥିବ । ଯେଉଁମାନଂକର ଦେହ ଟାଣ ଓ ମନ ଟାଣ ସେମାନଂକର ଜୀବନରେ ସମସ୍ୟା କମ୍ ।



ସମୁଦ୍ରରେ ଜାହାଜରେ ଯେଉଁ ଦିଗରେ ଯାଉନା କାହିଁକି, କମ୍ପାସର ସୂଚୀ ସବୁବେଳେ ଉତ୍ତରକୁ ଦେଖାଉଥିବ । ସେହିପରି ଜୀବନରେ ଯାହା

ଘଟିଚାଲିଥାଉ ନା କାହିଁକି, ଜ୍ଞାନୀ ତାର ଚିତ୍ତ ରଖିଥିବ ତାର ଜୀବନର ଲକ୍ଷ୍ୟ ଉପରେ ।

—

ଶାଗୁଣା ଆକାଶରେ ଯେତେ ଉଚ୍ଚକୁ ଉଡ଼ିଲେ ମଧ୍ୟ ତାର ଆଖି ଥାଏ ତଳେ ମଡ଼ ଉପରେ । ବେଦ-ବେଦାଙ୍ଗରେ ପଣ୍ଡିତ ହେଲେ କ ହେଲା, ସେ ଲୋକର ମନ ଯଦି ଇନ୍ଦ୍ରିୟ-ଭୋଗରେ, ତେବେ ସେ ତ ଏକ ଶାଗୁଣା ମାତ୍ର । କାମ ଓ ଲୋଭ ଯା'ଠୁ ଯାଇନ, ସେଠି ଆଧ୍ୟାତ୍ମିକ ଆଲୋକ ପଶି ପାରିବନ ।

—

ଜାହାଜ ପାଣିରେ ଭସି ଚାଲିବ, କିନ୍ତୁ ଜାହାଜ ଭିତରକୁ ପାଣି ପଶିବନ । ମଣିଷ ସେହିପରି ସଂସାରରେ ରହିବ, କିନ୍ତୁ କୌଣସି ପାର୍ଥିବ ଲାଳସା ତାକୁ ଯେପରି ଢ଼ବତ ନକରେ ।

—

ହିମାଳୟର ଗୁହାରେ ସାଧନା କରୁଥିବା ଯୋଗୀର ମନ ବେଳେ ବେଳେ ଅବାଞ୍ଛିତ ଚିନ୍ତା ଛବୁ କରିପାରେ । ଅନ୍ୟପକ୍ଷରେ ସହରର ଛକ ରସ୍ତାର ଏକ କୋଣରେ ଏକ ମୋଚି ବସି ଜୋତା ମରମତି କରୁଛି— ଷରିପଟେ ଚାଲିଥିବା ଲୋକଗହଳି, ଯାନବାହନ, କାହାରିକି ସେ ଅନାଉନ । ସେହି ମୋଚିହିଁ ଅଧିକ ଉତ୍ତମ ଯୋଗୀ ।

—

ନାଶଶୀଳ ସଂସାର ଦେଇ ଅବିନାଶୀ ବ୍ରହ୍ମକୁ ଜାଣ ।

—

ଈର୍ଷା, କ୍ରୋଧ, ଭୟ ଯା'ଠୁ ଯାଇ ନାହିଁ ସେ ଆଧ୍ୟାତ୍ମିକ ପାହାଡ଼ ଉଠି ପାରିବ ନାହିଁ ।

—

ମହି ପକାଇ ସାରିଲାପରେ ଦୁଧକୁ ଗୋଟିଏ ଜାଗାରେ ରଖିଦେଲେଇ ଦହି ଭଲ ବସେ । ସେହିପରି କେବଳ ଈଶ୍ୱର'କଠାରେ ଚିତ୍ତ ରଖିଦେଲେଇ, ମନ ଶାନ୍ତ ଓ ପବିତ୍ର ହୋଇ ଆସିବ ।

—

ଟୋକା ଘୋଡ଼ାକୁ ମଣେଇବାକୁ ହେଲେ ତା'ର ଆଖିରେ ଠୁଳି ବାନ୍ଧିବାକୁ ହୁଏ । ଈଶ୍ୱରଂକୁ ପାଇବାକୁ ହେଲେ ମନରୁ ଇତର ଭାବନା ସବୁକୁ ତଡ଼ିବାକୁ ହେବ । ଚିତ୍ତଶୁଦ୍ଧି, ସଂଯମ, ଅନାସକ୍ତି, ଏପରିସବୁ ଦୈବ ଗୁଣରେ ଚିତ୍ତ ପୂର୍ଣ୍ଣ ହେଲେ ନା, ଈଶ୍ୱର ଅନ୍ତରରେ ବିରାଜିତ ହେବେ ?



ହସ୍ପିଟାଲରେ ଯେଉଁମାନେ ଭର୍ତ୍ତି ହୁଅନ୍ତି, ଭଲ ନ ହେବା ପର୍ଯ୍ୟନ୍ତ ସେମାନଙ୍କୁ ହସ୍ପିଟାଲରୁ ମୁକ୍ତି ମିଳେନା । ଭଲ ହେବା ପରେ ସେମାନଂକର ହସ୍ପିଟାଲ୍‌ରେ ରହିବା ଆଉ ଦରକାର ପଡ଼େନା । ଆବିଦ୍ୟା-ରୋଗରେ ପୀଡ଼ିତ ଜୀବସବୁ ପ୍ରକୃତିର ହସ୍ପିଟାଲ୍‌ରେ ଆସି ଚିକିତ୍ସିତ ହେଉଛନ୍ତି । ନାନା କର୍ମ ଦେଇ ସେମାନଂକୁ ନୂତନ ଜ୍ଞାନ ଦିଆଯାଉଛି । ବ୍ରହ୍ମ-ଜ୍ଞାନ ପାଇଲାମାତ୍ରେ ସେମାନେ ହସ୍ପିଟାଲ୍ ଛାଡ଼ିବେ । ତା'ପରେ ସେମାନଂକ ପ୍ରତି କର୍ମ ଅନାବଶ୍ୟକ ହୋଇ ପଡ଼ିବ ।



ମନୁଷ୍ୟ-ଜନ୍ମ କଷ୍ଟରେ ମିଳେ । ଏ ଜନ୍ମକୁ ଯଦି ଈଶ୍ୱର-ଲାଭରେ ନ ଲଗାଯାଏ, ତେବେ ତା ବୃଥା ହେଲା ବୋଲି ଜାଣ ।



ଆମେ ସଂସାରର ଧନ୍ଦା ଜଂଜାଳ ଭିତରେ ଭଗବାନଙ୍କ ସହିତ ମଧ୍ୟ କିପରି ସଂପର୍କ ରଖିପାରିବା ? ଦେଖ ଯାଇ କେଉଟର ବୋହୂକୁ । ଚୂଡ଼ା ପାଇଁ ସେ ଢେଙ୍କି-ଗାତକୁ ଉଜାଧାନ ଗୋଟେ ହାତରେ ଠେଲୁଛି । ଆଉ ହାତରେ ପିଲାକୁ ଧରି ଦୁଧ ଖୁଆଉଛି । ତେଣେ ଗରାଖ ଆସିଲେ ତାଂକ କଥା ମଧ୍ୟ ବୁଝୁଛି ଏବଂ ଏସବୁ କାମ ଭିତରେ ତାର ଲକ୍ଷ୍ୟ ରହିଛି ଯେପରିକି ଢେଙ୍କି ପାହାର ତା' ହାତରେ ନ ପଡ଼ିଯାଏ । ସଂସାରର ସକଳ କର୍ମ ଭିତରେ ଆମକୁ ସେହିପରି ଈଶ୍ୱରଂକ ଠାରେ ନଜର ରଖିବାକୁ ହେବ । କୌଣସି ହେଲେ ସାଂସାରିକ କର୍ମପାଇଁ ଈଶ୍ୱର-ପଥରୁ ବିଚଳିତ ହେବାର ନୁହେଁ ।



ପିଆଜକୁ ଛଡ଼େଇ ଚାଲିଲେ ଶେଷରେ ଯେପରି ଆଉ କିଛିହିଁ ରହେନା, ବସ୍ତୁର ଉପରେ ବିଚାର କରି ଚାଲିଲେ ଆମେ ଦେଖିବା ଯେ, ମନୁଷ୍ୟର ଅହମିକାଟା ମଧ୍ୟ ଶେଷ ହେବ କେବଳ ଶୂନ୍ୟରେ ।



କାମ ଓ ଦ୍ୱେଷ ମନୁଷ୍ୟର ସବୁଠାରୁ ବଡ ଶତ୍ରୁ । କିପରି ସେମାନଙ୍କୁ ଧ୍ୱଂସ କରଯାଇ ପାରିବ ? ମନୁଷ୍ୟର ଏସବୁ ହେଲେ ସହଜାତ ପ୍ରବୃତ୍ତି । ସାଂସାରିକ ବିଷୟରେ ସେମାନଙ୍କୁ ଲଗେଇଲେ, ସେମାନେ ମନୁଷ୍ୟର ଶତ୍ରୁବତ୍ କାମ କରିଥାନ୍ତି । କିନ୍ତୁ ମନୁଷ୍ୟ ଈଶ୍ୱରଙ୍କୁ ଖୋଜିଲେ ସେମାନେ ତା'ର ବନ୍ଧୁ ଓ ସହାୟକ ହୋଇ ଉଠନ୍ତି । ମନୁଷ୍ୟର ସାଂସାରିକ ବିଷୟସବୁ ପ୍ରତି ପ୍ରଲୋଭନକୁ ତେଣୁ ଈଶ୍ୱର-ପ୍ରଲୋଭନରେ ପରିଣତ କରେଇ ହେଲା । ଈଶ୍ୱର କାହିଁକି ଦେଖା ଦେଉନାହାନ୍ତି, ସେଥିପାଇଁ ମନୁଷ୍ୟ ତାଙ୍କୁ ରାଗୁ, ତାଙ୍କୁ ଗାଳିଦେଉ । କାମ, କ୍ରୋଧ ପ୍ରଭୃତି ପୁରାପୂରି ନଷ୍ଟ ହୋଇ ପାରନ୍ତନି । କିନ୍ତୁ ସେମାନଙ୍କୁ ପରିବର୍ତ୍ତିତ କରଯାଇପାରେ । ତେବେ ସେମାନେ ଆଉ ଅନିଷ୍ଟ କରନ୍ତି ନାହିଁ ।

—

ସାମାନ୍ୟ ଖଣ୍ଡେ ମେଘ ବିରାଟ ସୂର୍ଯ୍ୟଙ୍କୁ ଘୋଡେଇ ପକାଏ । ସେହିପରି ମାୟାରୂପୀ କାମ ଅମତ୍ୱ ଈଶ୍ୱରଙ୍କୁ ଘୋଡାଇ ପକାଏ । ମେଘ ଖସିଗଲେ ଆମେ ସୂର୍ଯ୍ୟଙ୍କୁ ପୁଣି ଯେପରି ଦେଖୁ ଆମ ଚିତ୍ତରୁ ସେହିପରି କାମ ଖସିଗଲେ, ଈଶ୍ୱର ଆପେ ପ୍ରକଟିତ ହୋଇ ଉଠନ୍ତି ।

—

ଘର ଲୋକେ ଚୋରକୁ ଦେଖିପାରିଲା ମାତ୍ରେ ସେ ପଳାଏ । ସେହିପରି ମାୟାକୁ ତୁମେ ଉତ୍ତମ ରୂପେ ଜାଣିପାରିଲେ, ସେ ଆପେ ତୁମକୁ ଛାଡ ପଳେଇବ ।

—

ଯେଉଁମାନେ ଆଧ୍ୟାତ୍ମିକ ଉନ୍ନତ ଚାହାନ୍ତି; ଈଶ୍ୱରଙ୍କୁ ପାଇବାକୁ ଇଚ୍ଛା କରନ୍ତି, ସେମାନେ ସର୍ବାଦୌ ସେମାନଙ୍କର ମନକୁ ସବୁ ପ୍ରକାର ଅନୁଚିତ କାମନା-ବାସନାରୁ ମୁକ୍ତ କରିବାକୁ ଚେଷ୍ଟା କରିବେ । ଚିତ୍ତ-ଶୁଦ୍ଧି ବିନା କୌଣସି ପ୍ରକାର ସମ୍ମାନଜନକ ସିଦ୍ଧି ଅସମ୍ଭବ ।

—

ସମାଜ ଓ ସଂସାରରେ ଐକ୍ୟ ଦେଖିବାହିଁ ଜ୍ଞାନ, ଏକ ଅନ୍ୟଠୁ ଭିନ୍ନ ବୋଲି ମନେକରିବା ହିଁ ଅଜ୍ଞାନ ।

—

ପ୍ରକୃତ ସାତ୍ତ୍ୱିକ ଗୁଣୀ ଲୋକ ନିଜ ସାଧନାର କଥା କହି ହେବେନି କି ଦେଖାଇ ହେବେନ । ଯେତେଦୂର ସମ୍ଭବ ସେ ତାଙ୍କ ସାଧନାକୁ ଲୋକଦୃଷ୍ଟିରୁ ଦୂରେଇ ରଖନ୍ତି । ଲୋକେ ରାତିରେ ନିଦରେ ଘୁଁଘୁଡ ମାରୁଥିଲା ବେଳେ, ସେ ହୁଏତ ମଶାରି ଭିତରେ ଇ ଆସନରେ ବସି ଜପ-ଧ୍ୟାନ କରୁଥିବେ ।

—

ମନ୍ଦ ଅହଂକାର କିମିତ ଦେଖାଦିଏ ଜାଣ ? ବହୁଲୋକ କହିବାର ଶୁଣିବ- "ମୁଁ କିଏ ଜାଣିନୁ ? ମୋର କେତେ ଟଙ୍କା ଅଛି ତତେ କି ଜଣା ? କ'ଣ, ମୋଠୁ ବଡ଼ ଆଉ କିଏ ଅଛି ଏ ଅଞ୍ଚଳରେ ?"

ଏହି ପ୍ରକାର କଥା ମନ୍ଦ ଅହଂକାରର ଚିହ୍ନ ବୋଲି ଜାଣିବ ।



ବହୁ ତପସ୍ୟାର ଫଳରେ ହିଁ ମନୁଷ୍ୟ ଚିତ୍ତରୁ କୃପଣତା ଓ କପଟତା ଦୂରୀଭୂତ ହୋଇଥାଏ । କେବଳ ନିଷ୍କପଟ ଅମାୟିକ ଲୋକ ହିଁ ଈଶ୍ୱର-ଦର୍ଶନ ପାଇଥାନ୍ତି । କିନ୍ତୁ ସରଳ ହେବା ଅର୍ଥ ନୁହେଁ ଯେ ମଣିଷ ବୋକା ହେବ । ଭକ୍ତ ହେବା ଯେପରି ଭଲ, ବୋକା ହେବା ସେହିପରି ଖରାପ । ଭଲ-ମନ୍ଦର ବିବେଚନା କରି ଯାହା ଉଚିତ ତାହାହିଁ କରିବାର ଶକ୍ତି ତୁମର ରହିବା ଉଚିତ ।

ଗୋଡ଼, ପଥର, କଂକର ଆଦି ନଥିବ ଏବଂ କଅଁଳିଆ ହୋଇଥିବ ଯେଉଁ ମାଟି ସେଠି ମଞ୍ଜି ସବୁ ସହଜରେ ଗଜା ହୁଅନ୍ତି । ସେହିପରି ଯେଉଁ ଭକ୍ତର ଚିତ୍ତ ଅହଂକାରହୀନ ଓ ଅନୈତିକ-ଚିନ୍ତା-ଶୂନ୍ୟ ସେହିପରି ଉତ୍ତମ ମାଟିରେ ହିଁ ଭଗବାନ ଆପେ ପ୍ରକଟିତ ହୋଇ ଉଠନ୍ତି ।



ଚତୁର୍ଯ୍ୟ କୌଣସି ବଡ଼ ଗୁଣ ନୁହେଁ । କୁଆଠୁ ଆଉ ଅଧିକ ଚତୁର କିଏ ? ଛୋଟ ପିଲାଙ୍କର ଅସହାୟତା ଜାଣିପାରି ତାଙ୍କଠୁ ମଧ୍ୟ ଖାଇବା ଜିନିଷ ଛଡ଼ାଇ ନିଏ । କୁଆ ଧରାପଡ଼ିବାର ଶୁଣା ନାହିଁ । ଏସବୁ ସତ୍ତ୍ୱେ କାଉ ଖାଲି ମଇଳା, ପଚା-ସଢ଼ା ଜିନିଷ ଖାଏ । ବହୁ ମଣିଷ ଠିକ କାଉର ସ୍ୱଭାବ-ଚରିତ୍ର ଅଣିଥାନ୍ତି । ସେମାନେ କପଟାଚାରୀ, ନିଜ-ସ୍ୱାର୍ଥ-ନେଇ-ଗଣନାଶୀଳ ଏବଂ ଚତୁର । କିନ୍ତୁ ସେମାନଙ୍କର ଚିନ୍ତାରାଜ୍ୟର ଭାବନା ହେଲା—ଖାଲି ଇତର ନୀଚ ଓ ଖରାପ ଜିନିଷ ସବୁକୁ ନିଜାୟତ୍ତ କରିବା । ଏପରି ଲୋକମାନଙ୍କ ପକ୍ଷରେ ଆଧ୍ୟାତ୍ମିକ ଚିନ୍ତାହିଁ ଅସମ୍ଭବ ।

—

ବିରାଟ ଜାଲ ପକାଇ ପାଣିରୁ ମାଛ କାଢ଼ିଆଣିଲେ ଦେଖାଯିବ ଯେ, ଅଧିକାଂଶ ମାଛ ସେଇମିତ ପଡ଼ ରହନ୍ତି । କେତେକ ପାଣିକୁ ଫେରିଯିବାକୁ ଚେଷ୍ଟା କରନ୍ତି, କିନ୍ତୁ ପାରନ୍ତି ନାହିଁ । ଅଥଚ କେତେକ କୌଣସିମତେ ଜାଲରୁ ଖସି ପଳାନ୍ତି । ସେହିପରି ମଧ୍ୟ ସଂସାରରେ ଆମେ ତିନି ଶ୍ରେଣୀର ଲୋକ ଦେଖିବା । (୧) ଯେଉଁମାନେ ମୋକ୍ଷର କଥା ଭାବନ୍ତି ହିଁ ନାହିଁ । (୨) ସେହି କେତେକ ଯେଉଁମାନେ ମୋକ୍ଷପାଇଁ ଚେଷ୍ଟା କରନ୍ତି । (୩) ମୁକ୍ତିମେୟ ମୁକ୍ତ ଆତ୍ମା ।

—

ବର୍ଷାଜଳ ଉଁଚା ଜାଗାରେ ଜମାହୋଇ ପାରେନା । ତାହା ଯାଇ ଖାଲ ଜାଗାମାନଙ୍କରେ ଜମାହୁଏ । ସେହିପରି ଗର୍ବୀ ଓ ଅହଂକାରୀ ଲୋକଙ୍କଠାରେ

ଈଶ୍ୱରଙ୍କର ଅନୁଗ୍ରହ ପଡ଼େନା, ପଡ଼େ ବିନୟୀ ଓ ନିରହଂକାର ଲୋକଙ୍କ ଉପରେ ।

—

ଯେଉଁ ପାତ୍ରରେ ରସୁଣ ଥାଏ, ସେ ପାତ୍ରଟାଇ ରସୁଣିଆ ଗନ୍ଧେଇବ । ବାରମ୍ବାର ଧୋଇଲେ ବି ସେ ଗଂଧ ଯିବନି । ମନୁଷ୍ୟର ଅହଂକାର ଏଇ ରସୁଣର ଗଂଧ ପରି । ଏହା ଚେଷ୍ଟା ସତ୍ତ୍ୱେ, ସହଜରେ ମଣିଷର ମନରୁ ଯାଏନା ।

—

'ମୁଁ କରୁଛି' 'ମୁଁ କରିଛି' ଭାବ ଯଦି ତୁମର ହୃଦୟକୁ ଅଧିକାର କରି ବସେ, ତେବେ ସେଠୁ ଈଶ୍ୱର ଦୂରେଇ ଯାଆନ୍ତି । ଯେଉଁଠି ଅହମିକା, ଈଶ୍ୱର ସେଠି ନିଜକୁ ଲୁକ୍‌କାୟିତ ରଖନ୍ତି ।

—

ସବୁବେଳେ ବା ମରିବା ପର୍ଯ୍ୟନ୍ତ କାମ କରି ଚାଲିବା ଜୀବନର ଲକ୍ଷ୍ୟ ହେବାର କଥା ନୁହେଁ । ମନୁଷ୍ୟକୁ ଈଶ୍ୱରଙ୍କ ଆଡ଼କୁ ଟାଣିନେବାର ଏକ ଉପାୟହିଁ ହେଉଛି କର୍ମ । ଅନାସକ୍ତ କର୍ମ ହିଁ ଆମକୁ ଈଶ୍ୱରଙ୍କ ଆଡ଼କୁ ନେଇ ଚାଲେ । ସାଧନକୁ ଲକ୍ଷ୍ୟ ବୋଲି ମନେ କରି ନିଅନ । ସହରରେ ପହଁଚିବାର ରାସ୍ତା ଓ ସହର ଏକା କଥା ନୁହେଁ ।

—

ତୁମକୁ ଯଦି ଈଶ୍ୱର ଦେଖା ଦିଅନ୍ତି, ତେବେ ତୁମେ ତାଙ୍କୁ କ'ଣ ମାଗିବ ? ତୁମେ କ'ଣ ତାଙ୍କୁ ମାଗିବ ତୁମ ହାତରେ ଯଥେଷ୍ଟ ଟଙ୍କା ଜମା ରହୁ, ଯେଉଁଥିରେ ତୁମେ ସ୍କୁଲ, ଡାକ୍ତରଖାନା ଓ କୂଅ ପୋଖରୀ କରିଥିବା ସଦାବର୍ତ୍ତ ଠିଆ କରେଇବ ? ଆମେ ଯେପର୍ଯ୍ୟନ୍ତ ଈଶ୍ୱରଙ୍କଠାରୁ ଦୂରରେ ଥିବା, ସେ ପର୍ଯ୍ୟନ୍ତ ଆମ ଆଖିକି ଏହିସବୁ ତଥାକଥିତ ଜନକଲ୍ୟାଣକର କର୍ମ ବଡ଼ ଦେଖାଯାଉଥିବ । କିନ୍ତୁ ଈଶ୍ୱର-ସାକ୍ଷାତ ଘଟିଲେ ଏସବୁ କୁଆଡ଼େ ଉଭେଇଯିବ । ତେଣୁ ଆମେ ଈଶ୍ୱରଙ୍କୁ ଜଗତର ଉପକାର କରିବା ଅପେକ୍ଷା ତାଙ୍କ ସହିତ ପୁନର୍ମିଳନ ପାଇଁ ହିଁ ପ୍ରାର୍ଥନା କରିବା । ଆମେ ତାଙ୍କୁ ପ୍ରାର୍ଥନା କରିବା, ବିବେକ, ବୈରାଗ୍ୟ ଓ ଭକ୍ତି ପାଇଁ । ଈଶ୍ୱରଙ୍କ ପ୍ରତି ଅନୁରାଗ ହିଁ ଆମକୁ ମନୁଷ୍ୟ ସ୍ତରରୁ ଦେବତା-ସ୍ତରକୁ ଉଠାଏ ।

—

ପାଣିରେ ବୁଡ଼ିଲା ଲୋକ ପବନ ପାଇଁ ଛଟପଟ ହୁଏ । ପ୍ରକୃତ ଈଶ୍ୱର-ସଂଧାନୀ ଲୋକ ସଂସାରରେ ସେହିପରି ଈଶ୍ୱରଙ୍କୁ ପୁଣି ଫେରି ପାଇବା ପାଇଁ ଛଟପଟ ଛଟପଟ ହେବାର କଥା ।

●